✵ କବି ସମ୍ରାଟ ଉପେନ୍ଦ୍ର ଭଞ୍ଜଙ୍କ କୃତ ✵

# ବୈଦେହୀଶ ବିଳାସ



କବି ସମ୍ରାଟ ଉପେନ୍ଦ୍ର ଭଞ୍ଜ ବିରଚିତ

# ସଚିତ୍ର




## ଦ୍ୱିତୀୟ ଖଣ୍ଡ

( ବିଜୟବୈଜୟନ୍ତୀ ଟୀକା ସହ )

ସମ୍ପାଦକ ଓ ଟୀକାକାର :—

ଶ୍ରୀ ଉଦୟନାଥ ଷଡ଼ଙ୍ଗୀ

ପ୍ରକାଶକ :—

ନାରାୟଣ-ପୁସ୍ତକାଳୟ

ଶ୍ରୀ ନାରାୟଣ ଚନ୍ଦ୍ର ଦାସ

ପୋ: ବୃନ୍ଦାନାଟେଶ୍ୱକ, କଟକ

* ତୃତୀୟ ସଂସ୍କରଣ *

ମୂଲ୍ୟ ୪ ୵ ୧ ଅଢ଼େଇ ଟଙ୍କା ମାତ୍ର

# ଭୂମିକା

---

ମହାକାବ୍ୟ 'ବୈଦେହୀଶବିଳାସ' ଅମର କବି ଉପେନ୍ଦ୍ର ଭଞ୍ଜଙ୍କର ଶ୍ରେଷ୍ଠ ଅବଦାନ । ଭାବର ଗାମ୍ଭୀର୍ଯ୍ୟରେ, ଭାଷାର ମାଧୁରୀରେ, ଛନ୍ଦର ଲାଳିତ୍ୟରେ, ଅପରୂପ ଶବ୍ଦ ବିନ୍ୟାସ ଓ ଅଳଙ୍କାରିକ ଶୈଳୀରେ ଏହା ପ୍ରାଚୀନ ଓଡ଼ିଆ ସାହିତ୍ୟର ଏକ ଅମୂଲ୍ୟରତ୍ନ । ଏହା ଉତ୍କଳ ସାହିତ୍ୟ କାହିଁକି, ବିଶ୍ୱ ସାହିତ୍ୟରେ ଯେ ଏହାର ସ୍ଥାନ ଅତି ଉଚ୍ଚରେ,—ଏହା ସମସ୍ତେ ମୁକ୍ତ କଣ୍ଠରେ ସ୍ୱୀକାର କରିବେ ।

କବିଙ୍କର ଦୁର୍ଭାଗ୍ୟ ଯେ, ସେ ଏହି ଉତ୍କଳ ପ୍ରଦେଶରେ ଜନ୍ମ ଗ୍ରହଣ କରିଥିଲେ । ପାଶ୍ଚାତ୍ୟ ଦେଶ ତାଙ୍କର ଜନ୍ମଭୂମି ହୋଇଥିଲେ, ସେ ବର୍ତ୍ତମାନ ଯେ କୌଣସି ବିଶ୍ୱବିଖ୍ୟାତ କବିଙ୍କର ସମାନ ଆସନରେ ପୂଜା ପାଉଥାନ୍ତେ;—ଏହା ଗତ 'ବିଜୁଳି' 'ଇନ୍ଦ୍ରଧନୁ' କଳହ ସମୟରେ ତାଙ୍କର ନିତାନ୍ତ ଶତ୍ରୁପକ୍ଷ ମଧ୍ୟ ସ୍ୱୀକାର କରି ଯାଇ ଅଛନ୍ତି । ଆଧୁନିକ ତଥାକଥିତ ଶିକ୍ଷିତ ତାଙ୍କର କେତେକ ଲେଖାରେ ଅଶ୍ଳୀଳତାର ଦୋଷ ଦେଖାଇଥାନ୍ତି, ମାତ୍ର 'ବୈଦେହୀଶ-ବିଳାସ' ଏ ଦୋଷରୁ ଏକାବେଳକେ ମୁକ୍ତ ।

ଏହି କାବ୍ୟରେ ଛନ୍ଦମାନ ଅନେକ ସ୍ଥଳରେ ସହଜବୋଧ ନ ହେଲେ ମଧ୍ୟ ଗାଆଁ ଗଣ୍ଡାର ଅର୍ଦ୍ଧଶିକ୍ଷିତ, ଅଶିକ୍ଷିତଙ୍କ ମନକୁ ଏପରି ଅଧିକାର କରି ରଖିଛି ଯେ, ଗାଈଜଗୁଆଳ ପିଲା ମୁଖରୁ ବି 'ବତଳରୁ ଅଲଙ୍ଗନ' ଛାନ୍ଦ କେତେ ସମୟରେ ଶୁଣାଯାଏ; ଛନ୍ଦମାନଙ୍କର ମନ ମୋହନ କରିବାର କ୍ଷମତା ଏଥିରୁ ବେଶ୍ ସୂଚିତ ହେଉଅଛି ।

ଏହା ପୂର୍ବରୁ ସଟୀକ ବୈଦେହୀଶବିଳାସ କେତେଥର ପ୍ରକାଶିତ ହୋଇଥିଲା, ମାତ୍ର ତାହାର ଟୀକା ପୂର୍ଣ୍ଣତା ପ୍ରାପ୍ତ ନୁହେଁ କିମ୍ବା ଛନ୍ଦର ମାଧୁରୀ ଠିକ୍ ରଖାଯାଇ ନାହିଁ । ଅନେକ ସ୍ଥାନରେ ମଧ୍ୟ ଛନ୍ଦର ପଦକୁ ଅଯଥା ପୀଡ଼ିତ ଓ ବିକଳାଙ୍ଗ କରାଯାଇଅଛି । ଏହି ସବୁ ଅଭାବ ଦେଖି, ଏହି କାବ୍ୟର ଯଥାସାଧ୍ୟ ପୂର୍ଣ୍ଣ ଓ ଦୋଷ ରହିତ 'ବିଜୟବୈଜୟନ୍ତୀ' ଟୀକା ଦୁଇଜଣ ବିଜ୍ଞ ସାହିତ୍ୟିକଙ୍କଦ୍ୱାରା କରାଇ ପୁସ୍ତକ ପ୍ରକାଶ କଲୁ । ଅବ ମଧ୍ୟ ଏହାକୁ ଭକ୍ତରଞ୍ଜନ

ଓ ସର୍ବାଙ୍ଗସୁନ୍ଦର କରିବା ପାଇଁ କେତେଗୋଟି ମନୋହର ଛନ୍ଦ ଏବଂ ଗଞ୍ଜାମ ଜନ୍ମିତ କବିମାନଙ୍କର ସୁଗମ ପରିଚୟ ଦେବା ପାଇଁ କନ୍ଦର ନକ୍ସାମାନ ଏଥିରେ ଦିଆଯାଇଛି । ଏହାଦ୍ୱାରା ଏ ମହାକାବ୍ୟର ଉପାଦେୟତା ଯେ କେତେ ବଢ଼ି ପାଇଛି, ତା ପାଠକମାନେ ବିବେଚନା କରିବେ ।

ପରିଶେଷରେ ନିବେଦନ, ଯେତେପ୍ରକାର ଚେଷ୍ଟା ଓ ପରିଶ୍ରମ କରାଗଲେ ମଧ୍ୟ 'ବୈଦେହୀଶବିଳାସ' ପରି ମହାକାବ୍ୟର ଟୀକା କରିବାରେ ଯେ ତ୍ରୁଟି ନ ରହିବ, ଏହା ଦୃଢ଼ତାର ସହିତ କୁହାଯାଇ ନ ପାରେ । ତେଣୁ ଏଥିରେ ସ୍ଥାନେ ସ୍ଥାନେ ଦୋଷ ରହିଯାଇଥିବା ଅସମ୍ଭବ ନୁହେଁ । ସହୃଦୟ ରସଜ୍ଞ ପାଠକମାନେ ଦୟା କରି ତ୍ରୁଟିମାନ ଦର୍ଶାଇ ଦେଲେ, ଉପଯୁକ୍ତ ବିବେଚିତ ହେଲେ ପରସଂସ୍କରଣରେ ତାହା ସଂଶୋଧନ କରି ନେବି ।

ଶ୍ରୀ ଉଦୟନାଥ ଷଡ଼ଙ୍ଗୀ



# ସୂଚୀପତ୍ର








# ଦ୍ୱିତୀୟ ଖଣ୍ଡ

## ଚତୁର୍ଦ୍ଦଶ ଛାନ୍ଦ

### ରାଗ—ମଙ୍ଗଳଗୁଜ୍ଜରୀ

ବୈହରଣ ଭଙ୍ଗି ବିଭାଧାନ ମୂଳ କରୁ ।
ବିଶୁଦ୍ଧ ତାର ଲଗ୍ନକୁ ଜ୍ୟୋତିଷେ ବିସ୍ତୁରି ଯେ ।୧।
ବର୍ଦ୍ଧକୀଚୟ କି ମୟ ବିଶ୍ୱକର୍ମା ଗୁରୁ ।
ବେଦିକାମଣ୍ଡପ କଲେ ଅତିଶୟ ରୁଚୁ ଯେ ।୨।

---

୧ମ ପଦ—ବୈହରଣ—ସଭା । ବିଶୁଦ୍ଧ—ନିର୍ଦ୍ଦୋଷ ବା ଉତ୍ତମ । ତାର—ନକ୍ଷତ୍ର ।

୨ୟ ପଦ—ବର୍ଦ୍ଧକୀଚୟ—ବଢ଼ାଇମାନେ ।

---

## ଚତୁର୍ଦ୍ଦଶ ଛାନ୍ଦ

୧ମ ପଦ—କନ୍ୟା ଦେଖା ପରେ ସଭା ଭଙ୍ଗେ ଜ୍ୟୋତିଷମାନଙ୍କ ସହିତ ବିଶ୍ୱର ବର ବିବାହ ପାଇଁ ଶୁଭ ଲଗ୍ନ, ଶୁଭଚନ୍ଦ୍ର ଓ ଭଲ ଦିନ ସ୍ଥିର କଲେ ।

୨ୟ ପଦ—ବଢ଼ାଇମାନେ ବେଦୀ ଓ ବିଭାମଣ୍ଡପ ଅତ୍ୟନ୍ତ ସୁନ୍ଦର ରୂପେ ନିର୍ମାଣ କଲେ । ତାହା ଦେଖି ମନେ ହେଲା, ସେମାନେ ମୟଦେବ ଓ ବିଶ୍ୱକର୍ମା ଏ ଦୁହିଙ୍କର ଗୁରୁ ଅଟନ୍ତି କି ? ( ଏ ଦୁହେଁ ପ୍ରସିଦ୍ଧ ଶିଳ୍ପୀ, ମାତ୍ର ମଣ୍ଡପନିର୍ମାତା ବଢ଼େଇମାନଙ୍କ ଅପେକ୍ଷା ନ୍ୟୂନ ଅଟନ୍ତି )।

ବଇକୁଣ୍ଠପୁରୁ ରଥ ପଡ଼ଇ କି ଖସି ।
ବଇକୁଣ୍ଠ-ପୁରସଭା ଶୋଭନକୁ ହସି ।୩।
କନକରଚିତ ହରିତବସନେ ହୋଇଛନ୍ତି ।
କଳଗନ ତଳରେ ଉପରେ ରମ୍ଭା ସ୍ଥିତି ଯେ ।୪।
ଭ୍ରମିଲ ଶତ୍ରୁ ଛାୟାମଣ୍ଡପକୁ ଚାହିଁ ।
ବେଢ଼ି ରହିଲା କି ସୁରସଭା ଆସି ତହିଁ ଯେ ।୫।
ବିନମ୍ର ତ ସୁମନମାଳାରେ ଅବିରତ ।
ବାଞ୍ଛା-କଳ୍ପଦ୍ରୁମ ପରି ଫଳରେ ପୂରିତ ଯେ ।୬।

---

୩ୟ ପଦ—ବୈକୁଣ୍ଠପୁର—ସ୍ୱର୍ଗପୁର ବା ବିଷ୍ଣୁପୁର । ବଇକୁଣ୍ଠପୁର-ସଭା—ସୁଧର୍ମା ସଭା ।

୪ର୍ଥ ପଦ—ହରିତବସନ—ହଳଦିଆ ଲୁଗା, ବସ୍ତ୍ର । ରମ୍ଭା—ରମ୍ଭାନାମ୍ନୀ ସ୍ୱର୍ଗ ବେଶ୍ୟା, କଦଳୀ ଗଛ ।

୫ମ ପଦ—ଛାୟାମଣ୍ଡପ—ଛାମୁଣ୍ଡିଆ । ସୁରସଭା—ଦେବସଭା ।

---

୩ୟ ପଦ—ସେହି ବେଦୀର ମଣ୍ଡପର ଶୋଭା ଦେଖି ମନେ ହେଲା, ବୈକୁଣ୍ଠ ଭୁବନରୁ ବିଷ୍ଣୁରଥ ମହୀକୁ ଖସି ପଡ଼ିଲା କି ? ଇନ୍ଦ୍ରଙ୍କର ସୁଧର୍ମାସଭାର ସୌନ୍ଦର୍ଯ୍ୟକୁ ମଧ୍ୟ ସେ ମଣ୍ଡପର ଶୋଭା ଉପହାସ କଲା ।

୪ର୍ଥ ପଦ—ବିଷ୍ଣୁରଥ ନାରାୟଣଙ୍କ ସହିତ ଶୋଭିତ ହୋଇଥାଏ, ସେହିପରି ଏ ବେଦୀ ରାମ ସୀତାଙ୍କସହ ଶୋଭା ପାଇଲା । ସୁଧର୍ମାସଭାରେ ଦିଗମ୍ବର ମାନେ ବିହାର କରୁଥାନ୍ତି, ଏ ମଣ୍ଡପରେ ବନ୍ଧା ହୋଇଥିବା ହଳଦିଆବର୍ଣ୍ଣ ଲୁଗା ସବୁ ପବନ ଯୋଗେ ଦୋହଲି ଅଛନ୍ତି । ସେହି ସଭାରେ ରମ୍ଭା ଅପ୍ସରା ଥାଏ, ସେହିପରି ଏ ସଭାରେ ତଳ ଉପର ହୋଇ କଦଳୀଗଛ ସବୁ ପୋତା ଯାଇଅଛି ।

୫ମ ପଦ—ଛାମୁଣ୍ଡିଆକୁ ଚାହିଁ ଚିତ୍ତରେ ଭ୍ରମ ଜାତ ହେଲା, ମନେ ହେଲା ଦେବସଭା ଆସି ଏଠାରେ ବେଢ଼ି ରହିଲା କି ?

୬ଷ୍ଠ ପଦ—ଦେବସଭାରେ ଦେବତାମାନେ ଅନବରତ ବିନମ୍ର ବା ନମ୍ର ହୋଇଥାନ୍ତି, ସେହିପରି ଏ ଛାୟାମଣ୍ଡପରେ ଫୁଲମାଳ ସବୁ ସର୍ବଦା 'ବିନମ୍ର' ହୋଇ ଝୁଲୁଅଛି । ସେ ଛାୟାମଣ୍ଡପ କଳ୍ପଦ୍ରୁମ ସମ ବୋଧ ହେଲା । କଳ୍ପଦ୍ରୁମ ବାଞ୍ଛିତ ଫଳରେ ଯେପରି ପୂର୍ଣ୍ଣ ହୋଇଥାଏ, ଏ ମଣ୍ଡପ ସେହିପରି ଗୁଆ, ନଡ଼ିଆ ଆଦି ଫଳରେ ପରିପୂର୍ଣ୍ଣ ହୋଇଅଛି ।

ବରଣ ବରୁଣାଳୟ ପ୍ରାୟ ବେଷ୍ଟନାରେ ।
ବିଶାଳ ଶଙ୍ଖ ମକର ଗଙ୍ଗା ଯମୁନାରେ ଯେ ।୭।
ବେନି ନରେଶ୍ୱରଙ୍କର ମଣ୍ଡିତ ନଗରେ ।
ବିହାଇଲେ ଗନ୍ଧପଣ ମହା ଉତ୍ସବରେ ଯେ ।୮।
ବ୍ରାହ୍ମଣୀ ସାତ ସଅଳଙ୍କାର କରି ତହୁଁ ।
ବସ୍ତ୍ର ପାଟେ ଲଲାଟେ ସିନ୍ଦୂର ଟିକା ଦେଇ ଯେ ।୯।
ବିଯୋଟିଲେ ଚନ୍ଦ୍ର ଧାମମାନ କୁମ୍ଭରାଶି ।
ବନ୍ଧୁରତାରେ ଧନିଷ୍ଠା ହୋଇ ପ୍ରଶଂସି ଯେ ।୧୦।

---

୭ମ ପଦ—ବରଣ—ପ୍ରାଚୀର । ବରୁଣାଳୟ—ସମୁଦ୍ର । ଝଷ—ଶକୁଳମାଛ ।

୮ମ ପଦ—ନଗର—ପୁର । ଗନ୍ଧପଣ—ଚନ୍ଦନ, କର୍ପୂର ସୁଗନ୍ଧ ଦ୍ରବ୍ୟ ।

୯ମ ପଦ—ସଅଳଂକାର—ଅଳଙ୍କାରଭୂଷିତ ।

୧୦ମ ପଦ—ଚନ୍ଦ୍ର—ସୁବର୍ଣ୍ଣ, ଚନ୍ଦ୍ର । କୁମ୍ଭରାଶି—ସ୍ୱର୍ଣ୍ଣକଳସମୂହ, ରାଶି ବିଶେଷ । ଧନିଷ୍ଠା—ଧନିଷ୍ଠା ନକ୍ଷତ୍ର ।

---

୭ମ ପଦ—ସମୁଦ୍ର ପୃଥ୍ୱୀକୁ ବେଷ୍ଟନ କରି ରହିଥିବା ପ୍ରାଚୀର ଏ ସବୁକୁ ଘେରି ରହିଅଛି । ସମୁଦ୍ରରେ ଗଙ୍ଗା ଯମୁନା ନଦୀ ପତିତ ହୋଇ ଅଛନ୍ତି ଓ ମକର, ମତ୍ସ୍ୟ ପ୍ରଭୃତି ଜଳଚର ପ୍ରାଣୀ ତହିଁରେ ବିହାର କରନ୍ତି, ସେହିପରି ପ୍ରାଚୀରରେ ଗଙ୍ଗା ଯମୁନା ଓ ମତ୍ସ୍ୟ ମକର ଚିତ୍ରଙ୍କର ଓଡ଼ ଅଙ୍କିତ ହୋଇଅଛି ।

୮ମ ପଦ—ଦଶରଥ ଓ ଜନକଙ୍କର ମଣ୍ଡିତ ପୁରରେ ପରିଚାରିକା-ମାନେ ମହୋତ୍ସବରେ ଗନ୍ଧପଣ ବିଧାନକୁ ବିହିଲେ ( ଅନେକ ସୁଗନ୍ଧ ଗନ୍ଧଚନ୍ଦନାଦି ଦ୍ୱାରା ପୁରକୁ ସୁବାସିତ କରାଇଲେ ) ।

୯ମ ଓ ୧୦ମ ପଦ—ତତ୍ପରେ ସାତଜଣ ବ୍ରାହ୍ମଣ କନ୍ୟାକୁ ଅଳଙ୍କାର ମଣ୍ଡିତ କରି ଓ ପଟ୍ଟବସ୍ତ୍ର ପିନ୍ଧାଇ ଲଲାଟରେ ସିନ୍ଦୂର ଟିକା ଭୂଷିତ କରାଇ, ସେମାନଙ୍କ ହାତରେ ସ୍ୱର୍ଣ୍ଣ ନିର୍ମିତ ଘଟସବୁ ଦେଲେ । ଯେପରି ଚନ୍ଦ୍ର କୁମ୍ଭ ରାଶିରେ ଯୁକ୍ତ ହୋଇ ଧନିଷ୍ଠା ନକ୍ଷତ୍ର ସହିତ ବନ୍ଧୁତା କଲେ ନିଜକୁ ପ୍ରଶଂସିତ ମନେ କରେ, ସେହିପରି ସେ ସମୟରେ କନ୍ୟା ଲୋକମାନେ ଅତିବଡ଼ ହୋଇ ନିଜକୁ ଭାଗ୍ୟବନ୍ତ ବୋଲି ପ୍ରଶଂସା କଲେ ।

ବଣମେଷ୍ଟ ସୂର୍ପ୍ୟୁକ୍ତ ନାସ୍ତିକେଳଛରେ ।
ବରହଣୀ ପ୍ରାୟ ଦରାକାର୍ଗି-ନାସ୍ତି ଧରେ ଯେ । ୧୧ ।
ବନ୍ଧୁଲଳ ପାଶେ ଯେ ସରୂତଲେଶ ସର ।
ବେଶ୍ୟାବାର ସଙ୍ଗୀତମନ୍ଦର ଶୋଭା ଧର ଯେ । ୧୨ ।
ବୀଣାଦଣ୍ଡ ପୟୋଧର ମର୍ଦ୍ଦିଳ ସଜାତ ।
ବସ୍ତାର ନୃତ୍ୟ ନର୍ତ୍ତକୀ ନେତ୍ର ଖ୍ୟାତ ଗୀତ ଯେ । ୧୩ ।
ବାହାରୁଁ ଯେ ମୁଖର-ରସନା ସ୍ୱନ କଲେ ।
ବସ୍ତରେ ଅନ୍ତଃପୁରସ୍ଥା ହ୍ୱି ଶବ୍ଦ ମଙ୍ଗଳେ ଯେ । ୧୪ ।

---

୧୧ଶ ପଦ—ବଣମେଷ୍ଟ—କନ୍ଦର୍ପ । ସୂର୍ପ—କୁଲ୍ଲ । ଦରା କାର୍ଗିନାସ୍ତି—ଭଣ୍ଡାରୁଣୀ ।
୧୨ଶ ପଦ—ସରୂତଲେଶ—ସମୁଦ୍ର । ବେଶ୍ୟାକାର—ବେଶ୍ୟାସମୂହ ।
୧୩ଶ ପଦ—ପୟୋଧର—ସ୍ତନ ।
୧୪ଶ ପଦ—ମୁଖର—ଶବ୍ଦାୟମାନ । ରସନା—କଙ୍କିଣୀ । ମୁଖର ରସନା—ହୁଳହୁଳ ଶବ୍ଦ ।

---

୧୧ଶ ପଦ—କନ୍ଦର୍ପ ଯେପର ରତିଦେବୀ ସହିତ ଯୁକ୍ତ ଥାଏ, ସେହିପର କୁଲ୍ଲ ନଡ଼ିଆ ଓ କାଣ୍ଡରେ ଏ ଦୁଇ ପଦାର୍ଥରେ ଯୁକ୍ତ ହୋଇଅଛି । ବରହଣୀ ନାସ୍ତି ଯେପର କାମ ବକାରକୁ ଧରିଥାଏ, ଭଣ୍ଡାରୁଣୀ ସେହିପର ଏ କୁଲ୍ଲକୁ ଧରିଅଛି ।

୧୨ଶ ପଦ—ପୁଣି ସେ କୁଲ୍ଲ ସମୁଦ୍ର ପ୍ରାୟ ହୋଇଅଛି । ସମୁଦ୍ର ଯେପର ଦ୍ୱୀପମାନଙ୍କରେ ଶୋଭିତ ହୋଇଥାଏ, କୁଲ୍ଲ ସେହିପର ପ୍ରସ୍ତାପମାନ ଜଳବା ହାର ଶୋଭା ପାଉଅଛି । ବେଶ୍ୟାମାନେ ସଙ୍ଗୀତ ଗୃହର ଶୋଭାକୁ ଧାରଣ କର ଅଛନ୍ତି ।

୧୩ଶ ପଦ—ସଙ୍ଗୀତ ଗୃହ ବୀଣା ଆଉ ମର୍ଦ୍ଦଳରେ ମଣ୍ଡିତ ହୋଇଥାଏ ତଦ୍ରୂପ ଏହ ବେଶ୍ୟାଗଣ ବୀଣା ତୁଲ୍ୟ କଣ୍ଠ ସ୍ୱରରେ ଓ ମର୍ଦ୍ଦଳ ତୁଲ୍ୟ ସ୍ତନ ଯୁଗଳରେ ମଣ୍ଡିତ ହୋଇ ଅଛନ୍ତି । ପୁଣି ସଙ୍ଗୀତ ଗୃହରେ ନର୍ତ୍ତକୀସବୁ ନୃତ୍ୟ କରନ୍ତି । ଏଠାରେ ବେଶ୍ୟାମାନଙ୍କର ଭ୍ରୂଭଙ୍ଗୀ ନେତ୍ର ଗୃଳନା ସହିତ ନୃତ୍ୟ ଓ ଗୀତ ଖ୍ୟାତ ଲଭିଅଛି ।

୧୪ଶ ପଦ—ନର୍ତ୍ତକୀମାନେ ସଙ୍ଗୀତଶାଳାରୁ ବାହାରିବା ବେଳେ ଯେପର ସେମାନଙ୍କର କଟୀସ୍ଥ କଙ୍କିଣୀର ସ୍ୱନ ଶୁଣାଯାଏ, ସେହିପର ଏମାନେ ଅନ୍ତଃପୁରରୁ ବାହାରିବା ବେଳେ ସ୍ତ୍ରୀମାନେ ମଙ୍ଗଳ ସୂଚକ ହୁଳହୁଳ ଶବ୍ଦ କଲେ ।

ଦ୍ୱାସ୍ଥସନ ନଳ ପ୍ରାପ୍ତ ନିଷେଧ ଅଧିପ ।
ବାଜିବାରେ ସଜ୍ଜ ବାଦ୍ୟ ସାଦଙ୍କ ସ୍ୱରୂପ ଯେ । ୧୫ ।
ବନ୍ଧୁସ୍ୱଏ ଗୃହୁଁ ଛନ୍ତି ଘଣ୍ଟିମୁଖ ଟଳି ।
ଅଣିଷ୍ଟଭବନଜନ୍ୟ ଶମ୍ବରକୁ ଧରି ଯେ । ୧୬ ।
ବନ୍ଦିଲେ ଦେବୀ ଦେବଙ୍କୁ ପରସ୍ପରେ ଯାଇ ।
ଧରି କନ୍ୟା ଗନ୍ଧପିଲେ ଗନ୍ଧପୁଷ୍ପ ଦେଇ ଯେ ।୧୭ ।
କପୋତ ନିଦ୍ରାରେ ଭୃତ୍ୟେ ନିଶା ଥାଇଁ ଯାମେ ।
ବୁଢ଼ ବନ୍ଧ ପରଭୃତ ପରକୃତ ନାମେ ଯେ । ୧୮ ।

---

୧୫ଶ ପଦ—ଦ୍ୱାସ୍ଥସନ—ଦ୍ୱାରୀ । ବାଜିବାରେ—ବାଜିବାକୁ, ପକ୍ଷୀମାନଙ୍କରେ । ସଜ୍ଜ—ସମ୍ପୂର୍ଣ୍ଣ, ଶୋଭି ପାଇ । ସାଦ—ଅଶ୍ୱାରୋହୀ ।
୧୮ଶ ପଦ—ଯାମ—ପ୍ରହର । ପରଭୃତ—କୋକିଳ ।

---

୧୫ଶ ପଦ—ସେ ସମୟରେ ଦ୍ୱାରପାଳମାନେ ନଳରାଜାଙ୍କ ପ୍ରାପ୍ତ ହେଲେ । ନଳରାଜା ନିଷଧ ଦେଶର ଅଧିପତି, ସେହିପରି ଦ୍ୱାରପାଳମାନେ ନିଷେଧ ଅର୍ଥାତ୍ ବାରଣ କରିବାରେ ଅଧିପତି ଅଟନ୍ତି । ବାଦ୍ୟସମୂହ ବାଜିବାରୁ ତାହା ଅଶ୍ୱାରୋହୀଙ୍କ ସ୍ୱରୂପ ହେଲା । ଅଶ୍ୱାରୋହୀମାନେ 'ବାଜୀବାରେ' ଅଶ୍ୱ ସମୂହରେ ଶୋଭିତ ହୋଇଥାନ୍ତି—ଏ ବାଜିବାରୁ ଶୋଭିତ ।

୧୬ଶ ପଦ—ମୃଗମାନେ ବ୍ୟାଧର ଘଣ୍ଟି ଶବ୍ଦ ଶୁଣି ଗୃହଁ ଲଟେ ବନ୍ଧୁ ସ୍ତ୍ରୀମାନେ ଏ କନ୍ୟାମାନଙ୍କୁ ହୁଳହୁଳି ଶବ୍ଦ ଶୁଣି ଗୃହୁଁ ଅଛନ୍ତି । ବନରେ ବ୍ୟାଧମାନେ ଅତି ଶୋଭାଯୁକ୍ତ ବନଜାତ ସମ୍ବର, ମୃଗ ଧରିଲାପରି ଏଠାରେ ରମଣୀମାନେ ପ୍ରଧାନ ପ୍ରଧାନ ଘରୁ ଜଳ ସଂଗ୍ରହ କରି ଧଇଲେ, ( ବାବୁଅ ପାଣି ଗ୍ରାମର କେତେକ ଘରୁ ସଂଗ୍ରହ କରାଯାଇ ଥାଏ ।

୧୭ଶ ପଦ—ତାହାପରେ ( ଜଳ ତୋଳା ସରିଲାପରେ ) ଜଣେ ଜଣେ ଯାଇ 'ଦେବଦେବୀମାନଙ୍କୁ ପୂଜା କଲେ ଓ ବର କନ୍ୟାଙ୍କୁ ଗନ୍ଧପୁଷ୍ପ ଦେଇ ମଙ୍ଗୁଳିଲେ ।

୧୮ଶ ପଦ—ଭୃତ୍ୟମାନେ ରାତ୍ର ପ୍ରହରରେ ଥାଇଁ ନିଦ୍ରା ଡେଇ ଉଠେ କୋକିଳର ପ୍ରାକୃତ ନାମ ବୁଢ଼ାକୁ ବନ୍ଧିଲେ । ( ବରକନ୍ୟାଙ୍କୁ କୋଇଲି ବୁଢ଼ା କରାଇଲେ ) ।

ବିଜନ ସ୍ଥାନେ ପୂଜାଇ ଲବଣରୁମସୀ ।
ବ୍ରୀଡାଗୃହୀ ସବ ନବ ଗୃହ ସୁକୁମାରୀ ଯେ । ୧୯ ।
ବେଗେ ଯାଉ ଦିବସ ଏ ବଶ ବର କନ୍ୟା ।
ବିରକ୍ତ ହେଇଁ ଏ ରକ୍ତବନ୍ତେ ଭାନୁ ଧନ୍ୟା ଯେ । ୨ ।
ବ୍ୟାସକ୍ତ ଅନୁରାଗରେ ସବିତା ଏକାଳେ ।
ବଳିପୁଷ୍ଟ ବୋଲି ନିଜ ନିବାସକୁ ଚଳେ ଯେ । ୨୧ ।
ବୁଡ଼ାଇ କି ସିନ୍ଧୁଜଳେ ତାମ୍ରପାତ୍ର ରବି ।
ବଳି ସୀତା ରାମର ନିକଟ ଧାତା ଭାବି ଯେ । ୨୨ ।
ତାରଧ୍ୱଜ ଉଦେ ଅଙ୍କ ଦୁର୍ବାଦଳ ଭରି ।
ବନ୍ଦାଇବ ରୂପାସ୍ଥାଳୀ ପ୍ରାଚୀନାରୀ ଧରି ଯେ । ୨୩ ।

---

୧୯ଶ ପଦ :—ଲବଣରୁମସୀ—ଲୁଣଚଉଁରୀ । ବ୍ରୀଡାଗୃହୀ—ବ୍ରୀଡା-ବଲମ୍ବିନୀ ।

୨୧ଶ ପଦ :—ସବିତା—ସୂର୍ଯ୍ୟ । ବଳିପୁଷ୍ଟ—କୁଅ ।

୨୩ଶ ପଦ :—ତାରଧ୍ୱଜ—ଚନ୍ଦ୍ର । ଅଙ୍କ—କଳଙ୍କ । ପ୍ରାଚୀନାରୀ—ପୂର୍ବଦିଗରୂପ ରମଣୀ ।

---

୧୯ଶ ପଦ—ତଦନନ୍ତର ସୀତା ପ୍ରଭୃତି ଗୃହ କୁମାରୀଙ୍କୁ ବ୍ରୀଡାଗୃହିଣୀ ସବୁ ନିର୍ଜନ ସ୍ଥାନରେ ଲବଣଚଉଁରୀ ପୂଜାଇଲେ ।

୨୦ଶ ପଦ—'ଶୀଘ୍ର ଦିନ ଶେଷ ହେଉ' ଏହି କଥାରେ ବଶ ହୋଇ ବର କନ୍ୟା ବିରକ୍ତି ପ୍ରକାଶ କରନ୍ତେ, ସୂର୍ଯ୍ୟ ତାହା ଜାଣିପାରି ଅସ୍ତ ହୋଇଗଲେ । ତେଣୁ ସେ ବର କନ୍ୟା ପ୍ରଶଂସ୍ୟା ଅଟନ୍ତି । ( ସୂର୍ଯ୍ୟ ମଧ୍ୟ ତାଙ୍କ ମନ କଥା ଜାଣି ଶୀଘ୍ର ଅସ୍ତ ହୋଇଗଲେ । )

୨୧ଶ ପଦ—ସୂର୍ଯ୍ୟ ଅନୁରାଗରେ ରକ୍ତବର୍ଣ୍ଣ ପ୍ରତି ସ୍ନେହ ପ୍ରକାଶ କରିବାର ଦେଖି କାକଗଣ 'ସ୍ନେହରେ ବିଶେଷରେ ଆସକ୍ତ ହୁଅ' ଏହା ସମସ୍ତଙ୍କୁ କହି ନିଜ ନିଜ ବସାକୁ ଉଡ଼ିଗଲେ ।

୨୨ଶ ପଦ—ସୂର୍ଯ୍ୟ ବୁଡ଼ିଯିବାର ଦେଖି ବୋଧହେଲା, 'ସୀତା ରାମଙ୍କ ନିକଟ ହେଉ' ଏହା ଭାବି ବିଧାତା ରବି ରୂପ ତାମ୍ରପାତ୍ରକୁ ସମୁଦ୍ର ଜଳରେ ବୁଡ଼ାଇଲେ କି ?

୨୩ଶ ପଦ—ସେହି ସମୟରେ ଚନ୍ଦ୍ର ଉଦିତ ହେଲେ । ତାହା ଦେଖି ମନେହେଲା, ପୂର୍ବଦିଗରୂପା ସ୍ତ୍ରୀ କଳଙ୍କରୂପ ଦୁର୍ବାଦଳକୁ ରଖି ରାମ ସୀତାଙ୍କୁ ବନ୍ଦାଇବ ବୋଲି ରୂପା ଥାଳି ଧାରଣ କରିଅଛି କି ? ( ଚନ୍ଦ୍ର ରୂପାଥାଳି ଓ ତନ୍ମଧ୍ୟସ୍ଥ କଳଙ୍କ ଦୁର୍ବାଦଳ ସହିତ ଉପମିତ । )

ତଉବେ ଉତ୍ସବ ହେଲା ଦେଖି ଝଙ୍କାଦ୍ୱାରେ ।
ବର୍ଷାଋତୁ ମୂର୍ତ୍ତିମନ୍ତେ ହେବା ଅନୁସରେ ଯେ । ୨୪ ।
ବୃନ୍ଦ ବୃନ୍ଦ ଦିଶିଲେ ଜଳଦ ଦନ୍ତୀବର ।
ବ୍ୟୋମ-ପୂର୍ଣ୍ଣ ସ୍ତନିତ ପଟହ ନାଦ ତାହିଁ ଯେ । ୨୫ ।
ବଗଳିତ ଜଳଧାରା ଯହିଁ ଦାନଜଳ ।
ବଜ୍ରନିର୍ଘୋଷ ନାଗର ବାଦନ ଚହଳ ଯେ । ୨୬ ।
ବ୍ୟୂହ ଭୟାକୁଳ ଅଶ୍ୱ ଚଞ୍ଚଳ ହୁଅନ୍ତି ।
ବୈଶମ୍ପାୟନଙ୍କ ଶନ୍ତ୍ରୀ ମାଗଧଙ୍କ ସ୍ତୁତି ଯେ । ୨୭ ।

---

୨୫ଶ ପଦ—ଜଳଦ—ମେଘ । ବ୍ୟୋମ—ଆକାଶ । ସ୍ତନିତ—ମେଘ ଗର୍ଜନ । ପଟହ—ବାଦ୍ୟ ବିଶେଷ ।

୨୭ଶ ପଦ—ବ୍ୟୂହ—ସମୂହ । ମାଗଧ—ସ୍ତୁତି ପାଠକ ବା ଭାଟ ।

---

୨୪ଶ ପଦ—ଦଶରଥ ଓ ଜନକଙ୍କ ଦ୍ୱାରରେ ଆଡମ୍ବର ସହିତ ଉତ୍ସବ ହେଲା । ତାହାଦେଖି ବୋଧ ହେଲା, ବର୍ଷାଋତୁ ମୂର୍ତ୍ତିମନ୍ତ ହୋଇ ସେଠାରେ ଉପସ୍ଥିତ ହେଲା କି ?

୨୫ଶ ପଦ—ଯୂଥ ଯୂଥ ହୋଇ ଯାଉଥିବା ଶ୍ରେଷ୍ଠ ହସ୍ତୀସବୁ ମେଘମାଳା ପରି ଦେଖା ଗଲେ । ମେଘ ଗର୍ଜନ ତୁଲ୍ୟ ପଟହ ପ୍ରଭୃତି ବାଦ୍ୟନାଦରେ ଆକାଶ ପୂର୍ଣ୍ଣ ହେଲା ।

୨୬ଶ ପଦ—ହସ୍ତୀମାନଙ୍କର ଗଣ୍ଡ ସ୍ଥଳରୁ ଝରୁଥିବା ମଦବାରିସବୁ କନ୍ୟା ବିବାହ ଯୋଗୁ ଦାନ ଦେବାପାଇଁ ବ୍ରାହ୍ମଣମାନଙ୍କ ହାତକୁ ଠେକ ଦେଉଥିବା ଜଳସବୁ ବର୍ଷାଧାରା ପରି ଦେଖାଗଲା ଏବଂ ବାଜୁଥିବା ନାଗରାର ଚହଳ ବଜ୍ର ନିର୍ଘୋଷ ପରି ବୋଧ ହେଲା ।

୨୭ଶ ପଦ—ବଜ୍ର ନିର୍ଘୋଷରେ ଭୟାତୁର ଘୋଡାମାନେ ଚଞ୍ଚଳ ହେଲା ପରି, ବାଦ୍ୟର ଅତ୍ୟୁଚ୍ଚ ନାଦରେ ଘୋଡା ସବୁ ଚଞ୍ଚଳ ହେଲେ । ବଜ୍ର ଭୟରୁ ରକ୍ଷା ପାଇବା ପାଇଁ ଲୋକେ ବୈଶମ୍ପାୟନଙ୍କ ନାମ ଜପିଲା ପରି ଏଠାରେ ଭାଟମାନଙ୍କର ସ୍ତୁତି ପାଠ ଉଚ୍ଚ ହେଲା ।

ବଲ୍ମୀକ ନଳଙ୍କ ଇନ୍ଦ୍ରକୋଦଣ୍ଡ ହାବେଳି ।
ବହ୍ନିକଣା କାନ୍ତ କି ଖଦ୍ୟୋତ ଧଏ ଝଳି ଯେ । ୨୮ ।
ଝଦ୍ୟୋକ ଚଞ୍ଚଳ ପୀତ-ଶବଳ ମୂଚଳି ।
ଝଭ୍ରମେ ସ୍ଥିତକ ପନ୍ତି ଚ୍ୟୁତ ତୋରଣମେଳ । ୨୯ ।
ବକ ଶଙ୍ଖ ଦାତ୍ୟୁହ ମଧୁସ୍ୱୀ କଙ୍କ ଭେସ୍ୱୀ ।
ବର୍ଷାଭ୍ରୂ ଟମକ ନାଦେ ଦଣଦଣ ପୂର ଯେ । ୩୦ ।
ବ୍ୟାଖ୍ୟାନ ଶାମ୍ବୁକ ନାଦ ଦାସୀ ହୁଳହୁଳି ।
ବଳସିତା ଇନ୍ଦ୍ରଗୋପ ବେଶ୍ୟା ପାଟଶ୍ରୀଳ ଯେ । ୩୧ ।

---

୨୮ଶ ପଦ—ବଲ୍ମୀକ—ସ୍ତୂପମେଘ । କୋଦଣ୍ଡ—ଧନୁ । ଇନ୍ଦ୍ରକୋଦଣ୍ଡ—ଇନ୍ଦ୍ରଧନୁ । ବହ୍ନିକଣା — ଅଗ୍ନିକଣା । ଖଦ୍ୟୋତ—ଜୁଳୁଜୁଳା ପୋକ ।
୩୦ଶ ପଦ—ଦାତ୍ୟୁହ— ଡାହୁକ । ବର୍ଷାଭ୍ରୂ—ବେଙ୍ଗ ।
୩୧ଶ ପଦ—ଇନ୍ଦ୍ରଗୋପ—ସାଧବବୋହୂ ବା ଲାଲ ବର୍ଣ୍ଣ କୀଟ ବିଶେଷ ।

---

୨୮ଶ ପଦ—ସ୍ତୂପ ମେଘରୁ ଇନ୍ଦ୍ରଧନୁ ଜାତ ହେଲାପରି ନଳୀମାନଙ୍କରୁ ହାବେଳୀ ବାଣ ପ୍ରକାଶ ପାଇଲା । (ଗାଢ଼ ମେଘ କୃଷ୍ଣ ବର୍ଣ୍ଣ ଓ ଲୁହାନଳୀ କୃଷ୍ଣ ବର୍ଣ୍ଣ ) । ସେହି ହାବେଳୀରୁ ଜାତ ଅଗ୍ନିକଣା ସବୁ ଜୁଳୁଜୁଳା ପୋକପରି ସବୁ ଜାଗାକୁ ଉଜ୍ଜ୍ୱଳ କଲେ । । (ସେହି ବାଣ ଫୁଟିବାରୁ ସବୁଆଡ଼ ଉଜ୍ଜ୍ୱଳ ଦେଖାଗଲା ।
୨୯ଶ ପଦ— ଧ୍ୱଜଦଅ ପତାକା ସବୁ ପବନ ଯୋଗେ ଉଡୁଥିବାରୁ ଝଟକ ବିଜୁଳି ପ୍ରାୟ ଦେଖାଗଲା । ଅମ୍ବ ପତ୍ରର ତୋରଣ ଗୃଧ୍ରକ ପକ୍ଷୀ ଏଣେ ତେଣେ ଉଡ଼ିଲା ପରି ଇତସ୍ତତଃ ଦୋହଲିବାକୁ ଲାଗିଲା ।
୩୦ଶ ପଦ—ଶଙ୍ଖରୂପ ବଗ, ମହୁରୀ ରୂପ ଡାହୁକ,ଭେରୀରୂପ କଙ୍କପକ୍ଷୀ,ଟମକ ରୂପ ବେଙ୍ଗଙ୍କର ନାଦରେ ଦଣଦଣ ପୂରିଗଲା । (ବର୍ଷାଦିନେ ବଗ,ଡାହୁକ,କଙ୍କ ଓ ବେଙ୍ଗଙ୍କ ଶବ୍ଦରେ ଦଣଦଣ ପୂରି ଉଠେ, ସେହିପରି ଏଠାରେ ଶଙ୍ଖ, ମହୁରୀ, ଭେରୀ ଓ ଟମକ ନାଦରେ ଦଣଦଣ ପୂରିଉଠିଲା ।)
୩୧ଶ ପଦ—ଦାସୀମାନଙ୍କର ହୁଳହୁଳି ନାଦ ଶାମ୍ବୁକର ନାଦ ପରି ଶୁଣାଗଲା ଓ ନୃତ୍ୟଲୀଳା କରୁଥିବା ବେଶ୍ୟାମାନଙ୍କର ପାଟ କାନ୍ଥିଲା ସାଧବବୋହୂ ପୋକପରି ଦେଖାଗଲା । (ବର୍ଷାଦିନେ ଶାମ୍ବୁକା ନାଦ ଶୁଣାଯାଏ ଓ ବହୁତ ଗାଢ଼ ଲାଲବର୍ଣ୍ଣ ସାଧବ ବୋହୂ ପୋକ ଦେଖାଯାନ୍ତି । ସେହିପରି ଏଠାରେ ହୁଳହୁଳି ଶବ୍ଦ ଶୁଣାଗଲା ଓ ନୃତ୍ୟକାରିଣୀମାନଙ୍କର ଲାଲବର୍ଣ୍ଣର କାନ୍ଥିଲା ସାଧବବୋହୂ ପୋକ ପରି ପ୍ରତୀୟମାନ ହେଲା ) ।

ଶରଦ ଶିଳୀନ୍ଧ୍ର ଛତ୍ର ସନ୍ଧକେ ଦିଶିଲେ ।
ବାଣାଦି ଜାଣି ଯୂଥି ତ ସତ ଫୁଟିଗଲେ ଯେ । ୩୨ ।
ବରହଣ ନର୍ତ୍ତକ ନର୍ତ୍ତନ ପ୍ରକଟିତ ।
ବ୍ୟାପେ ଦୁର୍ଦ୍ଦିନ କୁହୁକ ଜାଲିକରେ ସତ ଯେ । ୩୩ ।
ବର୍ଣ୍ଣୋପଳ ପାତ ଦାତା ରଜତ ପ୍ରଦାନ ।
ବାହାର ପୁର-ଗିରିରୁ ହେଲେ ଝର-ସୈନ୍ୟ ଯେ । ୩୪ ।
ସବର୍ଦ୍ଧନ ରାଜମାର୍ଗ ନଦୀ ହେଲା ତହିଁ ।
ଭଟଗଣ ଉଷ୍ଣୀଷ ଡିଣ୍ଡୀରମାନ ଯହିଁ ଯେ । ୩୫ ।

---

୩୨ଶ ପଦ—ଶରଦ—ଶୁକ୍ଳବର୍ଣ୍ଣ । ଶିଳୀନ୍ଧ୍ର—କଦଳୀ ।

୩୩ଶ ପଦ—ବରହଣ ( ବର୍ହିଣ )—ମୟୂରସମୂହ । ଦୁର୍ଦ୍ଦିନ—ମେଘ ଘୋଡ଼ାଇଥିବା ଦିନ । ଜାଲିକ—ଯେ କୁହୁକ ଦେଖାଏ ।

୩୪ଶ ପଦ- ବର୍ଣ୍ଣୋପଳ—କୁଆପଥର ।

---

୩୨ଶ ପଦ—ଶୁକ୍ଳବର୍ଣ୍ଣ ଛତ୍ରସବୁ କଦଳୀ ପୁଷ୍ପ ପ୍ରାୟ ଦିଶିଲେ । ବାଣ ସବୁ ଫୁଟିବାରୁ ତାହା, ଯୂଥି ଫୁଲ ଫୁଟିଲା ପ୍ରାୟ ଦେଖାଗଲା । ( ବର୍ଷା ଦିନେ ଗାଲବାଣ ପ୍ରଭୃତି ତାଇ ଯୂଥି ଫୁଲ ଫୁଟନ୍ତି ) ।

୩୩ଶ ପଦ—ନର୍ତ୍ତକମାନେ ମୟୂର ପ୍ରାୟ ହୋଇ ନୃତ୍ୟ କଲେ । ଇନ୍ଦ୍ରଜାଲିକ ( କୁହୁକ କଲା ବାଜି )ର କୁହୁକ ମେଘାଚ୍ଛନ୍ନ ଦିବସ ପ୍ରାୟ ଅସ୍ପଷ୍ଟ ଦେଖାଗଲା । (ବର୍ଷାଦିନେ ମୟୂରମାନେ ନୃତ୍ୟ କରନ୍ତି, ମେଘାଚ୍ଛନ୍ନ ହେତୁ ଦିନ ସ୍ପଷ୍ଟ ଦେଖାଯାଏ ନାହିଁ, ସେହିପରି ନର୍ତ୍ତକମାନେ ଏଠାରେ ନୃତ୍ୟ କରୁଛନ୍ତି ଏବଂ ଐନ୍ଦ୍ରଜାଲିକର କୁହୁକ କୌଶଳ ସ୍ପଷ୍ଟ କେହି ବୁଝି ପାରୁ ନାହାନ୍ତି) ।

୩୪ଶ ପଦ—ଦାତାମାନଙ୍କର ( ଦଶରଥ ଓ ଜନକ ଦୁଇରାଜାଙ୍କର ) ରୌପ୍ୟ ମୁଦ୍ରା କରକା ପାତ ପ୍ରାୟ ଦୃଶ୍ୟମାନ ହେଲା । ନଗର ରୂପ ପର୍ବତରୁ ସୈନ୍ୟମାନେ ଝରଣା ସଦୃଶ ବହିର୍ଗତ ହେଲେ ।

୩୫ଶ ପଦ—ସେ ସୈନ୍ୟରୂପ ଝରଣା ଦ୍ୱାରା ରାଜପଥରୂପ ନଦୀ ବର୍ଦ୍ଧିତ ହେଲା । ସୈନ୍ୟମାନଙ୍କର ମସ୍ତକର ପାଗ ସବୁ ପାଣିର ଫେଣ ରୂପେ ପୂର୍ଣ୍ଣଭାବରେ ଦେଖାଗଲା ।

ବୀରତରୁ ପୁଷ୍ପବନ୍ତ ହୋଇ ସମଧୂପ ।
ବେଣୀକୂଳ ବେଣୀପାଶେ ସ୍ଥିତ ବୃକ୍ଷଦୀପ ଯେ । ୩୬ ।
ବୀଚି ବେଗରେ ଗମନ ଇଭଙ୍କ ସେ ଶାନ୍ତି ।
ବନ୍ଧ ସିଂହଦ୍ୱାରରେ ଏମନ୍ତ ବ୍ୟୂହପଣ ଯେ । ୩୭ ।
ବିଦେଶୀ ପାନ୍ଥପଥେ ନ ଜନତରୀ ଜାନ ।
ବହନ ତେଜି ଚଳେ ସେ ସଦନ ଗମନ ଯେ । ୩୮ ।
ବେଶ୍ମସ୍ଥା ମୃଦୁସ୍ୱଲ୍ପୀବ ମାଞ୍ଜଇଁାଇ ଅନ୍ୟ ।
ବରିଲେ ବର ଶାଳକେ ଧରିଲେ ତେସନ ଯେ । ୩୯ ।

---

୩୬ଶ ପଦ—ବୀରତରୁ—ଅର୍ଜୁନ ବୃକ୍ଷ ।
୩୭ଶ ପଦ—ବୀଚି—ଲହରୀ ।
୩୮ଶ ପଦ—ପାନ୍ଥ—ପଥିକ । ତରୀ—ନୌକା ।
୩୯ଶ ପଦ—ବେଶ୍ମସ୍ଥା—ଗୃହବାସିନୀ ସ୍ତ୍ରୀ ।

---

୩୬ଶ ପଦ—ଜର୍ଯୋଧନେ ଅର୍ଜୁନ ବୃକ୍ଷମାନେ ପୁଷ୍ପବନ୍ତ ଓ ଭ୍ରମରଯୁକ୍ତ ହୋଇ ନଦୀର ବେଣୀ କୂଳରେ ରହିଥାନ୍ତି; ସେହିପରି ଏ ରାଜପଥ ରୂପ ନଦୀର ଉଭୟ ପାର୍ଶ୍ୱରେ ବୃକ୍ଷଦୀପମାନେ ଫୁଲ ଝୁଡ଼ି ଶୋଭିତ ଓ ମଦ୍ୟପ ଶବରଙ୍କ ଯୁକ୍ତ ହୋଇ ଠିଆ ହୋଇ ଅଛନ୍ତି ।

୩୭ଶ ପଦ—ନଦୀ ତରଙ୍ଗଯୁକ୍ତ ହୋଇ ବେଗରେ ଯେମନ ବହୁ ବହୁ ବନ୍ଧ ପାଇଲେ ସ୍ଥିର ହୋଇଯାଏ । ସେହିପରି ହସ୍ତୀମାନେ ଅଳ୍ପ ବେଗରେ ଯାଇ ( ଶୋଭାଯାତ୍ରାରେ ଯାତ୍ରୀଗଣ ଧୀରେ ଧୀରେ ଯାନ୍ତି ) ସିଂହଦ୍ୱାର ରୂପ ବନ୍ଧକୁ ପାଇ ସ୍ଥିର ହୋଇ ରହିଲେ ।

୩୮ଶ ପଦ—ବିଦେଶୀ ପଥିକମାନେ ନଦୀ ପାର ହୋଇ ଆସିଲେ ନୌକା ଛାଡ଼ି ନିଜ ନିଜ ଗୃହକୁ ଗମନ କରନ୍ତି । ସେହିପରି ବିବାହ ଯାତ୍ରୀ ହୋଇଥିବା ଶ୍ରେଷ୍ଠବ୍ୟକ୍ତିମାନେ ଗଜାଦି ଉତ୍କଟ ଯାନ ସବୁକୁ ତ୍ୟାଗ କରି ନିଜ ନିଜ ବାସ ଗୃହକୁ ଗଲେ ।

୩୯ଶ ପଦ—ତାହାପରେ ପୁର ମଧ୍ୟରେ ଥିବା ମୃଦୁସ୍ୱଲ୍ପୀମାନେ ରାମଙ୍କୁ ଅନ୍ଧାଳୀରେ ବନ୍ଦାପନା କଲେ, ଶ୍ୟାଳକମାନେ ବରଙ୍କୁ ବରଣ କରି ନେଲାବେଳେ ପ୍ରଧାନ ବନ୍ଧୁମାନଙ୍କୁ ବରଣ କରି ନେଲା ପ୍ରାୟ ଦେଖାଗଲା ।

ବିବାହ ସ୍ଥାନରେ ବରବେଶେ ବସାଇଲେ ।
ବ୍ରହ୍ମା ଅଗ୍ରଯାଁ ବେଦବେ ଯୁଗଯୁଗ ହେଲେ । ୪୦।
ବଶିଷ୍ଠ ଶତାନନ୍ଦ, କାଶ୍ୟପ କଉଶିକ ।
ବାମଦେବ ଗଉତମ, ଜାବାଳି ବାଲ୍ମୀକ ଯେ । ୪୧।
ବନ୍ଧୁ ବିରଞ୍ଚି ଶାଳେ ଧୂଆଇଲେ ପଦ ।
ବହୁତ ଗମନାଳେ ଚମସ୍ତ୍ରୀ ବିନୋଦ ଯେ । ୪୨।
ବିଦୃଷ୍ଟି ଅନ୍ତର ପାଟ କୁଜ୍ଝଟି ବଣରେ ।
ବିମ୍ବବସୁ ପଦ୍ମିନୀର ହୋଏ ପରସ୍ପରେ ଯେ । ୪୩।
ବରଗିଲେ ସୂପଶୋଭାନ୍ତ ଦୂତୀ ତହିଁ ।
ବିପ୍ରଲବ୍ଧା ହୋଇଥିଲେ ଅଣିଲେ ବୋଧାଇ । ୪୪।

---

୪୦ଶ ପଦ—ବେଦବେ—ପ୍ରତି ବେଦରେ । ଯୁଗ ଯୁଗ—ଦୁଇ ଦୁଇ ।
୪୩ଶ ପଦ—ବିମ୍ବବସୁ— ସୂର୍ଯ୍ୟ ।
୪୪ଶ ପଦ—ବିପ୍ରଲବ୍ଧା—ନାୟିକା ବିଶେଷ ଅର୍ଥାତ୍ ଅଠପ୍ରକାର ନାୟିକାଙ୍କ ମଧ୍ୟରୁ ଗୋଟିଏ, ମାନିନୀ ସ୍ତ୍ରୀ ।

---

୪୦ଶ ପଦ—ତଦନନ୍ତର ବରମାନଙ୍କୁ ବରବେଶରେ ବିବାହ ସ୍ଥାନରେ ବସାଇଲେ, ପ୍ରତି ବେଦରେ ବ୍ରହ୍ମା ଓ ଅଗ୍ରଯାଁ ଏହିପରି ଦୁଇ ଦୁଇଜଣ ବରଣ ହେଲେ ।

୪୧ଶ ପଦ—ବଶିଷ୍ଠ—ଶତାନନ୍ଦ, କାଶ୍ୟପ—କୌଶିକ, ବାମଦେବ—ଗୌତମ, ଏବଂ ଜାବାଳି—ବାଲ୍ମୀକି ଏହିପରି ପ୍ରତିବେଦରେ ବ୍ରହ୍ମା ଓ ଅଗ୍ରଯାଁ ହୋଇ ବସିଲେ ।

୪୨ଶ ପଦ—ପୁରୋହିତମାନେ ବିଧି ବିଧାନ ଅନୁସାରେ ଶାଳକମାନଙ୍କ ଦ୍ୱାରା ବରମାନଙ୍କର ପାଦକୁ ଧୂଆଇଲେ । ଚମସ୍ତ୍ରୀମୃଗ ପବନରେ କ୍ରୀଡ଼ାରତ ହୋଇ ଆମୋଦ ଲଭିଲା ପରି, ସେ ବର କନ୍ୟାମାନେ ଲବଣ ଗୃମସ୍ତି ବିଧାନରେ ଆନନ୍ଦ ଉପଭୋଗ କଲେ ।

୪୩ଶ ପଦ—ବର କନ୍ୟାଙ୍କର ଦେଖା ଦେଖି ନ ହେବା ପାଇଁ ପାଟର ଅନ୍ତର କାନ୍ଥ ମଧ୍ୟରେ ପକାଇଲେ । କୁହୁଡ଼ି ଯୋଗୁ ସୂର୍ଯ୍ୟ ଓ ପଦ୍ମଙ୍କର ଯେପରି ଦେଖାଦେଖି ହୋଇ ନ ପାରେ, ସେହିପରି ଅନ୍ତର ପାଟ ଯୋଗୁ ସୂର୍ଯ୍ୟବଂଶ ଜାତ ରାମଚନ୍ଦ୍ରଙ୍କର ଓ ପଦ୍ମିନୀ ସ୍ତ୍ରୀ ସୀତାଙ୍କର ଦେଖାଦେଖି ହୋଇ ପାରିଲା ନାହିଁ ।

୪୪ଶ ପଦ—ଉତ୍ତମ ଯଜ୍ଞସୂତ୍ର (ମନ୍ତ୍ରୀତ ହୋଇଥିବା ଅଷ୍ଟାଡ଼ିଆ ସୂତା) ଦୂତୀରୂପେ ବରମାନଙ୍କଠାରୁ ସଙ୍କେତ ନେଇ କନ୍ୟାମାନଙ୍କ ପାଖକୁ ପଠାଇବାରୁ କନ୍ୟାମାନେ ଆସିଲେ । ସେ କନ୍ୟାମାନେ ବିପ୍ରଲବ୍ଧା ହୋଇଥିଲେ,

ବାଞ୍ଛାକଳ୍ପଦ୍ରୁମ ପାଶେ କାମ ଧେନୁ ମିଳେ ।
ବାମନେତ୍ରା ଦକ୍ଷିଣ କରାଇ ବସାଇଲେ । ୪୫ ।
ବସୁନ୍ଧରା ପ୍ରାୟେ ସେ ଅଙ୍ଗଣ ନବଖଣ୍ଡେ ।
ଉଡୁବର୍ଗ ତ ଅମ୍ବରେ ତାରାପନ୍ତି ଭୁଣ୍ଡେ ଯେ । ୪୬ ।
ବୃକ୍ଷସ୍ତମ୍ଭେ ରାଜେ ଫଳବନ୍ତ ହୋଇ ସେହୁ ।
ବାନ୍ଧବ-କୁମୁଦର ତ ପ୍ରଭା ସୁଧା ବହୁ ଯେ । ୪୭ ।

---

୪୬ଶ ପଦ—ବସୁନ୍ଧରା—ପୃଥିବୀ । ଅଙ୍ଗଣ—ଅଗଣା । ଅମ୍ବର—ଆକାଶ, ବସ୍ତ୍ର । ତାରାପନ୍ତି—ନକ୍ଷତ୍ର ସମୂହ, ମୁକ୍ତାପନ୍ତି ।

୪୭ଶ ପଦ—ସୁଧା—ଚୂନ, ଅମୃତ ।

---

ତାଙ୍କୁ ବୋଧ କରାଇ ଆଣିଲେ । (ଦୂତୀମାନେ ମାନିନୀ ନାୟିକାଙ୍କୁ ପ୍ରବୋଧ କରାଇ ସଙ୍କେତ ସ୍ଥଳକୁ ମଣାଇ ନେଲାପରେ, ଅଙ୍ଗାଡୁଆ ମୂର୍ତ୍ତା ଗିବାରୁ ସୀତ ପଦ୍ମଶ୍ରୀ ମଣାଇ ବେଦୀ ଉପରକୁ ଆସିଲେ )।

୪୫ଶ ପଦ—ବାଞ୍ଛାପୂର୍ଣ୍ଣକାରୀ କଳ୍ପତରୁ ରୂପ ବରଙ୍କ ନିକଟରେ କାମଧେନୁ ରୂପୀ କନ୍ୟାମାନେ ଆସି ମିଳିତ ହେବାରୁ ପୁରୋହିତମାନେ ବାମଲୋଚନା କନ୍ୟାମାନଙ୍କୁ ଦକ୍ଷିଣ ହାତରେ ବସାଇଲେ ।

୪୬ଶ ପଦ—ସେହି ଅଗଣା ବସୁନ୍ଧରା ପ୍ରାୟ ହୋଇଅଛି । ବସୁନ୍ଧରା ନବଖଣ୍ଡ ହେଲା ପ୍ରାୟ ଅଗଣା ଚାରି ଗୋଟି ବେଦୀ ପାଞ୍ଚ ଗୋଟି ଅନ୍ତର ସ୍ଥାନ ଯୋଗେ ନବ ଖଣ୍ଡ ହୋଇଅଛି । ରାତ୍ରରେ ଆକାଶରେ ନକ୍ଷତ୍ର ଶ୍ରେଣୀ ଦୃଶ୍ୟ ହୋଇ ଶୋଭା ପାଇଲା ପରି, ସେ ଅଗଣାରେ ଟଣା ହୋଇଥିବା ଚନ୍ଦ୍ରାତପ ସୁନ୍ଦର ଦିଶୁଅଛି । ( ଏଠାରେ ଚନ୍ଦ୍ରାତପ ଆକାଶ ଓ ଚନ୍ଦ୍ରାତପରେ ଖଞ୍ଜିତ ହୋଇଥିବା ମଣିମୁକ୍ତାଦି ନକ୍ଷତ୍ର ସହିତ ଉପମିତ )।

୪୭ଶ ପଦ—ସେହି ଅଗଣାରେ ପୋତା ହୋଇଥିବା ସ୍ତମ୍ଭସବୁ ବୃକ୍ଷ ହେଲେ । ବୃକ୍ଷସବୁ ଫଳଦ୍ୱାରା ଶୋଭିତ ହେଲା ପ୍ରାୟ ସ୍ତମ୍ଭ ସବୁ ଗୁଆ ନଡ଼ିଆ ଇତ୍ୟାଦି ଫଳରେ ଭୂଷିତ ହୋଇ ଅଛନ୍ତି । ପୁଣି ସେ ସ୍ତମ୍ଭ ଚୂନ ଲିପ୍ତ ହୋଇ ଥିବାରୁ ଅମୃତର ଶୁଭ୍ର ଛଟା ଧାରଣ କରିଥିବା ଚନ୍ଦ୍ର ପ୍ରାୟ ଦୃଶ୍ୟମାନ ହୁଏ ।

ବ୍ରହ୍ମା ଆନନକୁ ଯେ ହୋଇଲା ସମରୂପ ।
ବେଦବାକ୍ୟ ପୂର୍ଣ୍ଣ ହୋଇ ଚତୁର ମଣ୍ଡପ ଯେ । ୪୮ ।
ବିପ୍ର ଲକ୍ଷିତ ହୋଇଲେ ତାଙ୍କ କର ସଙ୍ଗେ ।
କୁଶର ତାମ୍ର ସ୍ରୁପାତ୍ରୀ ସ୍ରୁକ ସ୍ରୁବ ଯୋଗେ ଯେ । ୪୯ ।
ବରକନ୍ୟାଙ୍କୁ ବୋଲନ୍ତି ଈଶ୍ୱର ପାର୍ବତୀ ।
ବାନ୍ଧିଲେ ସେ ମୁକୁଟ କରି କି ଏହି ମତି ଯେ । ୫୦ ।
କହୁତ ପୁଣ ଏ ଗୋତ୍ରବଂଶବର ଖ୍ୟାତ ।
ବିଶୀର୍ଣ୍ଣ ହିମାଦ୍ରି ହୋଏ ତାପର ଉଦ୍ଧତ ଯେ । ୫୧ ।
ବୈଶାଳେଶ ଶୂଳ ଭରମ ଉପୁଜି ତା ଥିବ ।
ବଳା ଡମ୍ବରୁ ନାଦକୁ ଶୁଣି ପଳାଇବ ଯେ । ୫୨ ।

---

୫୧ଶତ୍ ପଦ—ଗୋତ୍ର ବଂଶଧର—'ଗୋତ୍ର' ପର୍ବତମାନଙ୍କ ମଧ୍ୟରେ ପ୍ରଧାନ ଅର୍ଥାତ୍ ହିମାଳୟ ପର୍ବତ, ପ୍ରଧାନ ସୂର୍ଯ୍ୟବଂଶ । ବିଶୀର୍ଣ୍ଣ—ଚ୍ୟୁତଭୟ ।

---

୪୮ଶ ପଦ—ସେହି ଗୃହଗୋଷ୍ଠି ମଣ୍ଡପ ବ୍ରହ୍ମାଙ୍କର ଗୃହ ମୁଖ ସହିତ ସମାନ ହେଲା । ଚତୁରାନନ ବେଦରେ ପୂର୍ଣ୍ଣ ହେଲା ପରି ଏ ଗୃହ ମଣ୍ଡପ ବ୍ରାହ୍ମଣ ମୁଖ ନିଃସୃତ ବେଦ ବାକ୍ୟରେ ପୂର୍ଣ୍ଣ ହୋଇଅଛି ।

୪୯ଶତ୍ ପଦ—ସେହି ବ୍ରାହ୍ମଣଙ୍କ ହସ୍ତ ସହିତ ବିପ୍ରମାନେ ( ବ୍ରହ୍ମା ଓ ଅଗ୍ରଜମାନେ ) ଲକ୍ଷିତ ହେଲେ । ବ୍ରହ୍ମାଙ୍କ ହସ୍ତରେ କୁଶ ମୁଷ୍ଟି, ତମ୍ବାପାତ୍ରୀ, ସ୍ରୁକ, ସ୍ରୁବ ବିଦ୍ୟମାନ ଥିଲା ପ୍ରାୟ, ଏହି ବ୍ରାହ୍ମଣମାନଙ୍କ ହସ୍ତରେ କୁଶମୁଷ୍ଟି ତମ୍ବାପାତ୍ରୀ, ସ୍ରୁକ, ସ୍ରୁବ ରହିଅଛି ।।

୫୦ଶତ୍ ପଦ—ବର କନ୍ୟାଙ୍କୁ ଈଶ୍ୱର- ପାର୍ବତୀ କହନ୍ତି ( ଉମା ପାଶୁପତୋଃ); ସେହି ହେତୁରୁ ସେମାନେ ବର କନ୍ୟାଙ୍କ ମସ୍ତକରେ ମୁକୁଟ ବାନ୍ଧିଲେ କି ?

୫୧ଶତ୍ ପଦ—ବିବାହ ସମୟରେ ଗୋତ୍ର ବଂଶ ପ୍ରବର କଥିତ ହେବା ବିଧି; ପୁଣି କନ୍ଦର୍ପ ପର୍ବତ ଶ୍ରେଷ୍ଠ ହିମାଳୟରେ ବାସ କରୁଥିବା ମହାଦେବଙ୍କୁ ଦେଖି ଭୀତ ହେଲା ପରି ସୂର୍ଯ୍ୟବଂଶରେ ଜାତ ବରମାନଙ୍କୁ ଦେଖି ବିଶେଷ ଭାବରେ ଭୟ ପ୍ରାପ୍ତ ହେଲା ।

୫୨ଶତ୍ ପଦ—ସେହି କନ୍ଦର୍ପର କେଶୀ ଜଙ୍ଘରେ ପୋତା ହୋଇଥିବା ବହ୍ନିଶିଖା ଦର୍ଶନରେ ମହାଦେବଙ୍କ ଶୂଳ ବୋଲି ଭ୍ରମ ଉପୁଜିଥିବ । ପୁଣି କନ୍ୟାମାନଙ୍କର ବଳା ଶବ୍ଦକୁ ସେ ମହାଦେବଙ୍କ ଡମ୍ବରୁ ଶବ୍ଦ ବୋଲି ମନେକରି ବିସ୍ମୟ ପଳାଇ ଯିବ ।

ବୀତହୋତ୍ରେ ଲାଜା ହୋମ କଲୁ ଲଜ୍ଜାବଳୀ ।
ବଳିରେ ବଳୁର ବାହୁଁ ହୋଇବ ସମ୍ଭାଳି ଯେ । ୫୩ ।
ବନ୍ଧାଇଲେ ଦୁହଙ୍କର କର ସେ ବୋଧବେ ।
ବାମା ପୁଂସ ଏକ କରି ସେ ଦମ୍ପତି ସବେ ଯେ । ୫୪ ।
ବିପ୍ର ଦୁହିତାଏ ତହିଁ ପ୍ରବେଶ ହେଲେ ।
ବସନ ପାଶ ଫିଟିଲା ପାଇଁ ଫିଟାଇଲେ ଯେ । ୫୫ ।
ବାହାରିଲେ ଘଣ୍ଟି ଅଳ ଅଳଂକୃତ ହୋଇ ।
ବସ୍ତେଜକୁ ରଣାରମ୍ଭେ କି ସେ ଶାଢ଼ୀ ପାଇ ଯେ । ୫୬ ।
କପର୍ଦ୍ଦେ ଅନ୍ତପୁରେ ଦ୍ୟୂତ ଖେଳାଇଲେ ।
ବଳବନ୍ତ ଅବଳା ଧରିଣି ନପାରିଲେ ଯେ । ୫୭ ।

---

୫୩ଶତ ପଦ—ବୀତହୋତ୍ର—ଅଗ୍ନି । ଲାଜା—ଲିଆ ।
୫୭ଶତ ପଦ—କପର୍ଦ୍ଦ—କଉଡ଼ି ।

---

୫୩ଶତ ପଦ—ଅଗ୍ନିରେ ଲାଜା ହୋମ କରିବାରୁ (ବିବାହ ବେଳେ ଅଗ୍ନିରେ ଲିଆ ପୋଡାଯାଏ, ତାହାକୁ ଲାଜା ହୋମ ବା ଲଜ୍ଜା ହୋମ କହନ୍ତି) ଲଜ୍ଜାସବୁ ବିଚାରି କଲେ, "ଆମ୍ଭେ ଆଉ କେଉଁଠି ସମ୍ଭାଳି ହୋଇ ରହିବା ?"

୫୪ଶତ ପଦ—ବରଣ ହୋଇଥିବା ବ୍ରହ୍ମା ଓ ଆଗ୍ନି ବର କନ୍ୟା ଦୁହଙ୍କର ହସ୍ତସବୁ ବାନ୍ଧିଲେ । (ବ୍ରାହ୍ମଣେ ପଢାଇଲେ) । ତଦ୍ଵାରା ସେ ବର ଓ କନ୍ୟା ଦୁହଙ୍କୁ ଦମ୍ପତି (ଜାୟା ଓ ପତି) ପଦରେ ଏକତ୍ର କରିଦେଲେ ।

୫୫ଶତ ପଦ—ତତ୍ପରେ ବ୍ରାହ୍ମଣ କନ୍ୟାମାନେ ସେଠାରେ ପ୍ରବେଶ ହେଲେ । ବାମ ବପଣ୍ଡୁ ନୂପ ପାଶ ଏବେ ଫିଟିଲା—ଏଥିପାଇଁ ସେ ବ୍ରାହ୍ମଣଙ୍କୁ ଫିଟାଇ ଦେଲେ ।

୫୬ଶତ ପଦ—ବର, କନ୍ୟା ଘଉଁଠାଳ ବସ୍ତ୍ରରେ ଭୂଷିତ ହୋଇ ବାହାରିଲେ । ତାହା ଦେଖି ମନେ ହେଲା,—କନ୍ଦର୍ପ ସହିତ ଯୁଦ୍ଧାରମ୍ଭ କରିବା ପାଇଁ ଏମାନେ ଶାଢ଼ୀ ପାଇଲେ କି ?

୫୭ଶତ ପଦ—ଅନ୍ତଃପୁରରେ ବର କନ୍ୟାଙ୍କୁ କଉଡ଼ିରେ ଜୁଆ ଖେଳାଇଲେ । ବଳିଷ୍ଠ ବୀର ରାମଚନ୍ଦ୍ରାଦି ବରମାନେ ଅବଳା କନ୍ୟାମାନଙ୍କୁ ଜୟ କରି ପାରିଲେ ନାହିଁ । (ଅର୍ଥାତ୍ କନ୍ୟାମାନଙ୍କ ହାତରୁ କଉଡ଼ି ଛଡ଼ାଇ ପାରିଲେ ନାହିଁ) ।

ବୃଦ୍ଧି ନଦୀ ତଟତରୁ ଉପାଟି ଭସାଇ ।
ବେତସ ମଧ୍ୟରେ କିଛି କରି ନ ପାରଇ ଯେ ।୫୮।
ତହୁଁ ପଞ୍ଚଗ୍ରାସୀ ହସ୍ତ ଥାଳିରୁ ନ ଚଳା ।
ବଳୟସ୍ଥ ରାମମୂର୍ତ୍ତି ଦର୍ଶନେ ମୈଥିଲୀ ଯେ ।୫୯।
ବାରି ଚନ୍ଦ୍ର ବିମ୍ବ ଯଥା ଚକୋର ସୁନ୍ଦରୀ !
ବସି ପତ୍ରାଚ୍ଛନ୍ନ ବୃକ୍ଷେ ଟେକି ନ ଅନାଇଁ ଯେ ।୬୦।
ସରିଲା ଏ ବିଧାନ ଶାଶୁଏ ବନ୍ଦାଇଲେ ।
ବିତରଣ ଅମୂଲ୍ୟ ରତନମାନ କଲେ ଯେ ।୬୧।
ବୀରବର ଭଞ୍ଜ ସୀତା ରାମଙ୍କୁ ଧ୍ୟାଇଲା ।
ବାଷଠି ପଦେ ଏ ଛାନ୍ଦ ଶେଷକୁ ବହିଲା ଯେ ।୬୨।

---

୫୮ତମ ପଦ—ବଢ଼ିଥିବା ନଈ ତାର ତୀରରେ ଥିବା ବଡ଼ ବଡ଼ ବୃକ୍ଷମାନଙ୍କୁ ଉପାଡ଼ି ଭସାଇ ନିଏ, ମାତ୍ର ମଧ୍ୟରେ ଥିବା ବେତକୁ କିଛି କରି ପାରେ ନାହିଁ । ( ସେହିପରି ବଳିଷ୍ଠ ବୀରମାନେ ବଡ଼ ବଡ଼ ବୀରଙ୍କୁ ହରାଇ ପାରନ୍ତି, ମାତ୍ର ଅବଳା ନିକଟରେ ହାରିଲେ ) ।

୫୯ ଓ ୬୦ ତମ ପଦ—ଯେପରି ଚକୋର ପକ୍ଷୀ ପତ୍ରାଚ୍ଛାଦିତ ବୃକ୍ଷରେ ବସି ଜଳ ମଧ୍ୟରେ ପଡ଼ିଥିବା ଚନ୍ଦ୍ରର ପ୍ରତିବିମ୍ବ ଦେଖିଲେ ତହିଁ ପ୍ରତି ସ୍ନେହଶୀଳ ହୋଇ ଆଉ ଉପରକୁ ( ଚନ୍ଦ୍ରକୁ ) ଅନାଏ ନାହିଁ, ସେହିପରି ସୀତା ପଞ୍ଚଗ୍ରାସୀ ସମୟରେ ହସ୍ତରେ ପିନ୍ଧିଥିବା କଙ୍କଣାଦି ଅଳଙ୍କାରରେ ରାମଙ୍କର ପ୍ରତିମୂର୍ତ୍ତି ଦେଖି ଥାଳିରୁ ଆଉ ହସ୍ତ ଚଳାଇଲେ ନାହିଁ । ( ପ୍ରତିମୂର୍ତ୍ତି ଦେଖି ଏପରି ତନ୍ମୟ ହୋଇ ଯାଇଥିଲେ ଯେ, ହାତ ଆଉ ଚଳିଲା ନାହିଁ । କିମ୍ବା ଥାଳିରୁ ହାତ ଉଠାଇଲେ ଆଉ ରାମଚନ୍ଦ୍ରଙ୍କ ପ୍ରତିମୂର୍ତ୍ତି ଦିଶିବ ନାହିଁ,—ଏ ଆଶଙ୍କା ହେବାରୁ ହାତ ଚଳାଇଲେ ନାହିଁ ) ।

୬୧ତମ ପଦ—ଏ ପାଞ୍ଚଗ୍ରାସୀ ଯଥାବିଧିରେ ଶେଷ ହେଲା । ଶାଶୁମାନେ ବର କନ୍ୟାଙ୍କୁ ବନ୍ଦାପନା କଲେ ଓ ଅମୂଲ୍ୟ ରତ୍ନମାନ ବିତରଣ କଲେ ।

୬୨ତମ ପଦ—ବୀରବର ଭଞ୍ଜ ସୀତା ରାମଙ୍କୁ ଧ୍ୟାନ କରି ଏ ଛାନ୍ଦ ବାଷଠି ପଦରେ ଶେଷ କଲେ ।

---

## ପଞ୍ଚଦଶ ଛାନ୍ଦ

### ରାଗ—କେଦାର, ଚକ୍ରକେଳି ବାଣୀ

ଚିତ୍ରିତ ଚିତ୍ରରେ ହୋଇଥିଲେ । ବାମା ମଧୁଶଯ୍ୟାକୁ ମଣ୍ଡାଇଲେ ।
ବପୁବନ୍ତରୁ ହୋଇଛନ୍ତି ରଞ୍ଜନ । ବ୍ୟକ୍ତ ସୁନେତ୍ର ସେହିତ ଖଞ୍ଜନ ।୧
ଚପଳନ ଯେ ପଲଙ୍କ ପଲକ । ବେଣୀ ରତ୍ନପ୍ରଦୀପରେ ଅଧିକ ।
ବେଣୀ ଶୋଭା ଅଗୁରୁ ଧୂମ ଧାର । ବହିଅଛି ଅଳକା ମନୋହର ।୨।
ବକ୍ତ୍ର ଦର୍ପଣ ଚନ୍ଦ୍ରାତପେ ଶୋଭେ । ଛନୋଦକୁ ପ୍ରକାଶିବାରେ ସ୍ନେହୀ ।
ବହୁ ପୁରେ ରୂପକ ଶ୍ଳେଷ ଛନ୍ଦ । ତାହେ ଦମ୍ପତି ହେବେ ବନ୍ଦାବନ୍ଦ ।

---

୧ମ ପଦ—ଖଞ୍ଜନ—ଭଦଭଦଳିଆ ପକ୍ଷୀ । ବପୁବନ୍ତରେ—ଶୋଭାରେ ।
୨ୟ ପଦ—ପଲକ—ପକ୍ଷ୍ମପାତ । ଅଳକ—ଚୂର୍ଣ୍ଣକୁନ୍ତଳ, କୁବେରଙ୍କ ପୁର ।
୩ୟ ପଦ—ବକ୍ତ୍ର—ମୁଖ । ଚନ୍ଦ୍ରାତପ—ଚାନ୍ଦୁଆ । ଦମ୍ପତି—ସ୍ୱାମୀ ଓ ସ୍ତ୍ରୀ ।

---

## ପଞ୍ଚଦଶ ଛାନ୍ଦ

୧ମ ପଦ—ନାନାବର୍ଣ୍ଣ ଚିତ୍ରରେ ଚିତ୍ରିତ ହୋଇଥିବା ଓ ପଟ୍ଟବସ୍ତ୍ରରେ ଭୂଷିତ ହୋଇଥିବା ମଧୁଶଯ୍ୟା ଗୃହକୁ ମଣ୍ଡାଇଲେ । ରମଣୀମାନଙ୍କ ପରି ସେ ମଧୁଶଯ୍ୟା ଗୃହ ଲାବଣ୍ୟବନ୍ତରୁ ଅନୁରାଗ ଜନକ ହୋଇଛି । ତନ୍ମଧ୍ୟରେ ଚିତ୍ରିତ ହୋଇଥିବା ମତ୍ସ୍ୟମାନେ, ଖଞ୍ଜନ ପକ୍ଷୀ ମୀନନୟନା ଓ ଖଞ୍ଜନାକ୍ଷୀ ରମଣୀମାନଙ୍କ ଉତ୍ତମ ନେତ୍ର ସଦୃଶ ହୋଇ ଅଛନ୍ତି । (ବାମାମାନେ ଚନ୍ଦନାଦିରେ ଚର୍ଚ୍ଚିତ ହୋଇଥାନ୍ତି, ବସ୍ତ୍ରାଦିରେ ଭୂଷିତ ହୋଇଥାନ୍ତି ଏବଂ ତାଙ୍କ ନେତ୍ର ମୀନ ଓ ଖଞ୍ଜନ ପକ୍ଷୀର ନେତ୍ରପରି ହୋଇଥାଏ, ସେହିପରି ଏ ବାସର ଗୃହ ଚିତ୍ରିତ ହୋଇଅଛି । ନାନାପ୍ରକାର ପାଟବସ୍ତ୍ର ଦ୍ୱାରା ଆବୃତ ହୋଇଅଛି ଓ ସେଥିରେ ମୀନ, ଖଞ୍ଜନାଦି ଅଙ୍କିତ ହୋଇ ଅଛନ୍ତି )।

୨ୟ ପଦ—ବାସର ଗୃହରେ ପଡ଼ିଥିବା ପଲଙ୍କ ରମଣୀଙ୍କ ନେତ୍ରର ପଲକ ସଦୃଶ ଅଟେ । ବାମାମାନେ ନାନା ରତ୍ନରେ ବେଶ ଭୂଷା ହୋଇଥିଲାପରି ଏ ଗୃହ ବହୁ ରତ୍ନ ପ୍ରଦୀପରେ ଭୂଷିତ ହୋଇଅଛି । ଗୃହର ଅଗୁରୁ ଧୂମର ଶିଖା ବାମାଙ୍କର ବେଣୀର ଶୋଭା ଧାରଣ କରିଅଛି । ଯେପରି ବାମାମାନେ ଅଳକା ଅର୍ଥାତ ଚୂର୍ଣ୍ଣ କୁନ୍ତଳ ଧାରଣ କରିଥାନ୍ତି ସେହିପରି କୁବେର ପୁରୀ ପ୍ରାୟ ସେ ଗୃହ ମନୋହର ହୋଇ ଥିବାରୁ ଅଳକା ପୁରୀ ନାମ ବହିଅଛି ।

୩ୟ ପଦ—ବାମାମାନଙ୍କ ମୁଖ ଜ୍ୟୋତି ଯେପରି ଦର୍ପଣ ପ୍ରାୟ ଶୋଭାପାଏ; ସେହିପରି ଏ ବାସର ଗୃହ ଦର୍ପଣ ଖଚିତ ଚାନ୍ଦୁଆଦ୍ୱାରା ଶୋଭା ପାଉଅଛି । ପୁଣି ବାମାମାନେ [illegible]ଭାବେ ସ୍ନେହ ହେଲାପରି ଏ ଗୃହ ଛନୋଦ

ବସୁ ତହିଁ ରାମା ହେଲେ ସ୍ୱଧବ । ବିଧିରେ ତ ବାସକସଜ୍ଜା ଭାବ ।
ବିଲୋକିତ କାନ୍ତା ନିର ଅଗତ । ବଳ ଶବ୍ଦଦ୍ୱାରେ ରହିଁ ଅରତେ ।୪।
ବିରହରେ ଉତ୍କଣ୍ଠିତା ପ୍ରକାଶି । ବହିବାକୁ ସୁରସ ମାନ ଘୋଷି ।
ବିମ୍ବାଧରେ ଦେଇବାକୁ ଖଣ୍ଡିତା । ବେଗ ବେଗ ହୋଇଅଛି ମମତା ।୫।
ବଚନରେ ଏଣୁ ସିଦ୍ଧ ତହିଁ । ବ୍ୟାକରଣେ ରାମ ରାମା କହି ।
ବହୁ ଏଣୁ ଗୀତେ ଯୋଷା ସ୍ୱରୂପା । ବୋଲନ୍ତି ପାଶ୍ଚାତ୍ୟେ ଶ୍ରୀରାମା ରାମା ।୬।
ବିଲକ୍ଷିତ ହୋଇବ କି ଏ କଲେ । ବିରେଚନ ମୋହନେ ରାମ ହେଲେ ।
ବିପ୍ରୁସୀଏ ଏକାଳେ ସୁଲକ୍ଷଣୀ । ବଳେ କରାଇଲେ ତାଙ୍କୁ କଙ୍କଣୀ ।୭।

---

ରାତକୁ ଦେହର ସନ୍ଧ୍ୟା କହୁଅଛି ( ମନୋହର ହୋଇଅଛି )। ସେ ଗୃହରେ ସ୍ତ୍ରୀ ପୁରୁଷ ଦୁହେଁ କାହାରିକୁ ଛନ୍ଦାଛନ୍ଦ ହେବେ ବୋଲି ଏରୂପ ବେଶରେ ଗୃହର ବର୍ଣ୍ଣନା ରଚନା କରାଗଲା ।

୪ର୍ଥ ପଦ—ବାସକସଜ୍ଜା ନାୟିକା ବାମାରୂପ ହୋଇ ବେଶଭୂଷା ସହିତ ଉଦ୍‌ବିଗ୍ନ ଚିତ୍ତରେ ନିଜର ସ୍ୱାମୀ ଆସିବା ପଥକୁ ଗୃହେ ବସି ରହିଲା ପରି, ରାମଚନ୍ଦ୍ର ମଧୁଶଯ୍ୟା ଗୃହରେ ବସି ବାମାର୍ଥି ଚିତ୍ତରେ ସୀତାଙ୍କ ଆଗମନ ଅପେକ୍ଷାରେ ଗୃହେ ରହିଲେ । ( ଏଠାରେ ରାମଚନ୍ଦ୍ର ବାସକସଜ୍ଜା ରମଣୀ ସହିତ ଉପମିତ ) ।

୫ମ ପଦ—ରାମଚନ୍ଦ୍ର କାନ୍ତାଙ୍କ ବିରହରେ ଅକୁଳିତ ହୋଇ ବିରହୋତ୍କଣ୍ଠିତା ନାୟିକା ପ୍ରାୟ ଉତ୍ତମ ରସ କଥାମାନ ଘୋଷି ହେଲେ । ( ବିରହୋତ୍କଣ୍ଠିତା ନାୟିକା ଗୁଣ ପ୍ରକାଶ ପାଇଲା ) । ପୁଣି ସୀତାଙ୍କର ବିମ୍ବୋ-ଷ୍ଠରେ ଅତିଶୀଘ୍ର କ୍ଷତ ଦାଗ ଅଙ୍କିତ କରିବା ପାଇଁ ଅସ୍ଥିର ହୋଇ ଉଠିଲେ ( ଖଣ୍ଡିତା ନାୟିକାର ଧର୍ମ ସୂଚିତ ହେଲା ) ।

୬ଷ୍ଠ ପଦ—ରାମ ବାସରଗୃହରେ ବସି ରାମା ହେଲେ; ଏହି ବର୍ଣ୍ଣନା ଅଳୀକ ନୁହେଁ । ବ୍ୟାକରଣ ଶାସ୍ତ୍ରରେ ରାମ ଶବ୍ଦର ବହୁବଚନରେ ରାମା ହୋଇଥାଏ [ ରାମଃ, ରାମୌ, ରାମାଃ ] । ତେଣୁ ଗୀତରେ ରାମଙ୍କୁ ସ୍ତ୍ରୀରୂପରେ ବର୍ଣ୍ଣନ କରାଗଲା । ପୁଣି ପଶ୍ଚିମ ଅଞ୍ଚଳର ଲୋକମାନେ ଶ୍ରୀରାମା ରାମା ବୋଲି କହୁଥାନ୍ତି । ( ତେଣୁ ରାମଙ୍କୁ ସ୍ତ୍ରୀ ଲିଙ୍ଗ କରି ରାମା ରୂପେ ବର୍ଣ୍ଣନା କଲେ କ୍ଷତି କଣ ? )

୭ମ ଓ ୮ମ ପଦ—ରାମ କେବଳ ରାମା ବୋଲି ବର୍ଣ୍ଣନା କଲେ ଏହା ଅସଙ୍ଗତ ହେବ ନାହିଁ, କାରଣ, ବିରେଚନ ରାକ୍ଷସକୁ ପୂର୍ବେ ମାଳତୀ କନ୍ୟା ରୂପେ ଏହି ରାମଚନ୍ଦ୍ର ମୋହିତ କରିଥିଲେ । ଏହି ସମୟରେ ସଖୀମାନେ ସୁଲକ୍ଷଣବତୀ ସୀତାଙ୍କୁ କାହିଁ ବହୁ ବଳେ ନେଲେ । ସୀତାଙ୍କର ଗମନ

ବଚ ଭୃଙ୍ଗଶ୍ରୀ ସ୍ମରବ ଯେମନ୍ତ । ତାରବାଦ୍ୟ ଧ୍ୱନି ଶୁଣି ତେମନ୍ତ ।
ଶ୍ରୁତ୍ୟ ଶ୍ରୁତ୍ୟନ୍ତକାନ୍ତ ଦାଶରଥି । ବର୍ଦ୍ଧମାନ ତୋଷ ଅତି ହୋଇଲା ।୮।
ସୀତା ରହୁଁ କେଳିଗୃହ ସନ୍ନିଧି । ବୟସ୍ୟା ଏ ଚତୁରେ ବୋଧି ।
ସ୍ୱଚ୍ଛିନ ତେଜେ ମୋଦ ପଦ୍ମିନୀ । ଛବିଛିନବଂଶୀ ସେ ତୁ ପଦ୍ମିନୀ ।୯।
ବାକ୍‌ସ୍ମିତା କେମନ୍ତ ରହିଲା । ବକ୍ଷରେ ସମର୍ପିତା ହୋଇଲା ।
ବଳାଳଣ ବଳେ ଦ୍ୱାର ଦେହଳୀ । ବାହୁଡିଲେ ଦ୍ୱିଶତ ସଖୀ ଅଳୀ ।୧୦।
ଧରେ ବସାଇଁ ତଳେ ତୋଳେ କାନ୍ତ । ବସନ୍ତ ପ୍ରଭାରେ ଦୂର୍ବା ମତ ।
ବ୍ରୀଡ଼ାବତୀ ଚଞ୍ଚଳ ନ ଘଟିଲେ । ବୋଧୁଁ ବଚନ୍ୟେ ଧୀର୍ଯ୍ୟ ଧୀର ହେଲେ ।୧୧।

---

୧୧ଶ ପଦ—ବ୍ରୀଡ଼ାବତୀ—ଲଜ୍ଜାବତୀ । ଧୀର୍ଯ୍ୟ—ପଣ୍ଡିତା । ଧୀର—ସ୍ଥିର

---

ସମୟରେ ପାଦର କଙ୍କିଣୀ ବାଜିବା ଶବ୍ଦ ଶୁଣି ମହାତ୍ମାଙ୍କର ଗୃହବାସୀ ମେଘର ଗର୍ଜନ ଶୁଣି ଯେପରି ଆନନ୍ଦିତ ହୁଏ, ରାମଚନ୍ଦ୍ର ସେହିପରି ଆନନ୍ଦିତ ହେଲେ । ସୀତାଙ୍କ ଦେହ କାନ୍ତି ବଜ୍ରୁଳ ତେଜରୁ ନିଷ୍ପ୍ରଭ ତର ପ୍ରକାଶିତ ହେଲା, ତେଣୁ ରାମଚନ୍ଦ୍ରଙ୍କ ଆନନ୍ଦ ଅତିଶୟ ବର୍ଦ୍ଧିତ ହୋଇଗଲା ।

୯ମ ପଦ—ସୀତା କାମଗୃହ ସମୀପରେ ରହିଥାନ୍ତେ ସମବୟସୀ ସଖୀମାନେ ଛଳ ଭାବରେ ବୋଧ କରି କହିଲେ, "ହେ ସଖି ! ସୂର୍ଯ୍ୟ ତେଜରେ ପଦ୍ମ ପ୍ରସ୍ଫୁଟିତ ହୁଏ । ସେ ରାମଚନ୍ଦ୍ର ସୂର୍ଯ୍ୟବଂଶଧର, ତୁ ତ ପଦ୍ମିନୀ ରମଣୀ । ତାଙ୍କ ସଙ୍ଗମକୁ ଭୟ କରୁଛୁ କାହିଁକି ?"

୧୦ମ ପଦ—ସଖୀମାନେ ଯେଉଁ ବକ୍ରୋକ୍ତି କଲେ, ସେଥିରେ ବାକ୍‌ସ୍ମିତା ପ୍ରକାଶିତ ହେଲା, ପୁଣି କାନ୍ତଙ୍କୁ ସମର୍ପଣ କରିବାର ମଧ୍ୟ ହେଲା । ତାହା ପରେ ବଳାତ୍କାରରେ ଦ୍ୱାରର ଏକୁଣ୍ଡ ବନ୍ଧକୁ ଲଗାଇ ଦେଇ ଦ୍ୱିଶତ ସଖୀମାନେ ଫେରିଗଲେ ।

୧୧ଶ ପଦ—ନାୟକ ରାମଚନ୍ଦ୍ର, ଲଜ୍ଜାଭୂଷିତ ସୀତାଙ୍କୁ ନେଇ ଶଯ୍ୟାରେ ନିଜ କୋଳରେ ବସାନ୍ତେ, ସୀତା ଶ୍ୟାମରେ ଦୂର୍ବା ସମାନ ଶୋଭିତ ହେଲେ, (ତନୁ ଦୂର୍ବାଙ୍କ ବର୍ଣ୍ଣ ଶୁଭ୍ର ସୁବର୍ଣ୍ଣ ପରି) । ସେ ନୀଳମଣି ପ୍ରଭାରେ ରଞ୍ଜିତ ହେଲେ ଯେପରି ଦିଶନ୍ତି ସୀତା ସେହିପରି ଦିଶିଲେ । ସେ ଲଜ୍ଜାବତୀ ହେବାରୁ ଚଞ୍ଚଳତା ଶୀଘ୍ର ଦୂର ନ ଥିଲେ । ରାମ ବଚନ୍ୟ ବାକ୍ୟରେ ବୋଧ କରନ୍ତେ, ତହୁଁ ସୀତା ସ୍ଥିର ହେଲେ ।

ବିଦଗଧ ଶ୍ରୀରାମଚନ୍ଦ୍ର କହେ । ବନ୍ଧୁ ଜୀବନ ଥିବାରେ ଏ ଦେହେ ।
କଳାପିନୀ ନ କରିବି ଅନନ୍ୟ । ବୋଲି ଛୁଇଁ ଦୀପ ହୁତାଶନନ୍ୟ ।୧୨।
ବଇଦେହୀ ବେଣୁଁ କାଢି କେତକୀ । ବର୍ଣ୍ଣ ଲିଖିତ ପୋଷ୍ଟୁ କସ୍ତୁରୀକ ॥
ବଳି ନାହିଁ ଆନେ ଅଦ୍ୟାଏ ତ । ବଳାଇବି ଜନ୍ମେ ଜନ୍ମେ ମୋ ଚିତ୍ତ ।
ବର ମଣ୍ଡପରୁ ଯିବ ବାହୁଡ଼ି । ବାର୍ତ୍ତାବହେ ତୁମ୍ଭଙ୍କୁ ନେବି ଲେଡ଼ି
ବୀରମୂର୍ଦ୍ଧନ୍ୟେ ପତ୍ର କରି ଦତ୍ତ । ଅନନ୍ୟସ୍ତ୍ରୀ ଯେ ପ୍ରଦୀପେ କଲେ ହସ୍ତ ॥
ବଇଦର୍ଭୀ ବୃତ୍ତାନ୍ତ ଦ୍ୟୋତିତ । ବକ୍ଷେ ସଂଯୋଗେ ପତି ଉଦ୍ଧୃତ ॥

---

୧୨ଶ ପଦ—ବିଦଗ୍ଧ—ପଣ୍ଡିତ, ଚତୁର । କଳାପିନୀ—ସ୍ତ୍ରୀ ବା ଭାର୍ଯ୍ୟା । ଦୀପ ହୁତାଶନ—ପ୍ରଦୀପାଗ୍ନି ।

୧୪ଶ ପଦ—ବାର୍ତ୍ତାବହ—ଦୂତ । ବୀରମୂର୍ଦ୍ଧନ୍ୟେ—ବୀରଶ୍ରେଷ୍ଠ ରାମଚନ୍ଦ୍ରଙ୍କୁ ।

---

୧୨ଶ ପଦ—ତାହା ପରେ ଚତୁର ରାମଚନ୍ଦ୍ର କହିଲେ, "ହେ ପ୍ରିୟେ ! ମୋର ଏ ଦେହରେ ପ୍ରାଣ ଥିବାଯାଏ, ତୋ ବିନା ଅନ୍ୟ ସ୍ତ୍ରୀକୁ ଗ୍ରହିବି ନାହିଁ" । ଏହା କହି ସେ ଦୀପର ଅଗ୍ନିକୁ ଛୁଇଁ ନିୟମ କଲେ ।

୧୩ଶ ପଦ—ରାମ ଏପରି ନିୟମ କରିବାରୁ ସୀତା ମୁଣ୍ଡର କେଶରୁ କେତକୀ ପାଖୁଡ଼ା କାଢି ଚିବୁକରୁ କସ୍ତୁରୀକୁ ପୋଛି ଅକ୍ଷର ଲେଖିଲେ, "ଅଦ୍ୟାବଧି ତ ମୋର ମନ ତୁମ୍ଭ ବିନା ଅନ୍ୟଠାରେ ବଳି ନାହିଁ । ପର ଜନ୍ମମାନଙ୍କରେ ମଧ୍ୟ ମୋ ଚିତ୍ତ ଅନ୍ୟ ପୁରୁଷଠାରେ ବଳାଇବି ନାହିଁ ।"

୧୪ଶ ପଦ—"ପରଜନ୍ମରେ ପିତା ବର ବଧୂଅର୍ଥି ବିବାହମଣ୍ଡପରେ ବସାଇ ଥିବେ, ମାତ୍ର ମୁଁ ରାଜି ନ ହେବାରୁ [ ଦ୍ୱାପର ଯୁଗରେ ରୁକ୍ମିଣୀ ଅବତାରର କଥା ] ସେ ବର ( ଶିଶୁପାଳ ) ମଣ୍ଡପରୁ ବାହୁଡ଼ି ଯିବ । ମୁଁ ଦୂତଦ୍ୱାରା ତୁମ୍ଭଙ୍କୁ ଖବର ଦେଇ ବରି ନେବି ।" ଏହା ଲେଖି ସୀତା ସେ ପତ୍ର ରାମଙ୍କୁ ପ୍ରଦାନ କରି ପ୍ରଦୀପରେ ହସ୍ତ ଦେଲେ । ( ପ୍ରଦୀପ ଛୁଇଁ ନିୟମ କଲେ ) ।

୧୫ଶ ପଦ—ପତ୍ରରେ ପ୍ରକାଶିତ ସୀତାଙ୍କର ବାକ୍‌ଗୃହସ୍ୟକୁ ( ଅର୍ଥାତ୍ ତୁମ୍ଭେ ଏ ଜନ୍ମରେ ଅନ୍ୟ ସ୍ତ୍ରୀ କରି ନ ପାର, କିନ୍ତୁ ଅନ୍ୟ ଜନ୍ମରେ ମୋ ବ୍ୟତୀତ ଅନ୍ୟ ସ୍ତ୍ରୀ କରି ପାରିବ, ମାତ୍ର ମୁଁ ଜନ୍ମଜନ୍ମାନ୍ତରରେ ସୁଦ୍ଧା ତୁମ୍ଭ ବ୍ୟତୀତ ଅନ୍ୟ ପୁରୁଷକୁ ଗ୍ରହିବି ନାହିଁ ] ପାଠ କରି ରାମଚନ୍ଦ୍ର ବକ୍ଷଦେଶରେ ନାରାୟଣ ଶ୍ରୀବତ୍ସ ଚିହ୍ନ ବହିଲା ପରି ତାହା ଧାରଣ କଲେ, ମାତ୍ର ପଦାକୁ କିଛି ପ୍ରକାଶ କଲେ ନାହିଁ ।

ବସୁଧାଦ ଶଙ୍କୁ ପଢ଼ ହୃଦରେ । ବାଢ଼େ ନ ଧଣି ରହିଲେ ଭଗତ ॥
ବିଶଦତା ଶବ୍ଦ-ନଭେ ଉଦସ୍ୱ । ବାନର୍ଗତ ହେଲ ଘନ ସଂଶୟ ।
ବିମଳତା ରସ ଖ୍ୟାତ ହୋଇଲ । ଭତାଶଲୁ ତାଶ ହାସ ପାଇଲ ।୧୬।
ବନଜୀବୀ ଶେଷ ସବେ ସଜଳ । ବନେ ପୂଲବଣ୍ଡି ପ୍ରଫୁଲ୍ଲତା ।
ଭକ୍ତ ସର୍ବଭୋଗ୍ୟବେ ଗଲ ଦର୍ଶି । ବଚଳିତ ନିର୍ମଳେ ହେଲୁ ଶଶୀ ।୧୭।
ବସ୍ତୃତ ଯେ ହଂସକର ଈଃସ୍ୱନ । ବିତସନ ନକ୍ଷତ୍ରମାଳା ପୁନ ।
ଦ୍ର୍ୟପୂର୍ତ୍ତରେ ସୁବନ୍ତୀ ଉତ୍ତମଣ୍ଡି । ବର୍ଦ୍ଧନନେ ଶରଦ ହେଲ ଖ୍ୟାତ ॥

---

୧୬ଶ ପଦ—ବଶଦତା—ନିର୍ମଳତା । ନଭ—ଆକାଶ । ଘନ—ମେଘ । ରସ—ଜଳ, ଶୃଙ୍ଗାର ରସ ।

୧୭ଶ ପଦ—ବନଜୀବୀ—ପଦ୍ମିନୀ । ସର—ପୁଷ୍କରିଣୀ, ସରୋବର ।

୨୮ଶ ପଦ—ହଂସକ—ହଂସ ପକ୍ଷୀ, ନୂପୁର । ନକ୍ଷତ୍ରମାଳ—ତାରକାସମୂହ, ମୁକ୍ତାମାଳା । ଦ୍ୟୂପୃଷ୍ଠରେ—ଆକାଶରେ । ବର୍ଦ୍ଧନନେ—ରଚନାବେଳେ ।

---

୧୬ଶ ପଦ—ଉଭୟେ ଉଭୟଙ୍କର ମନ କଥା ଜାଣି ପାରିବାରୁ ସେମାନଙ୍କ ଚିତ୍ତରୂପ ଆକାଶରୁ ସଂଶୟ ରୂପ ମେଘ ଦୂର ହୋଇଗଲା ଓ ନିର୍ମଳ ଭାବ ଉଦିତ ହେଲା । ବର୍ଷା ଋତୁ ପରେ ଶରତ ଋତୁ ପ୍ରବେଶ କଲେ ଆକାଶ ନିର୍ମଳ ହୁଏ, ଜଳ ସଫା ହୁଏ, କାଶତଣ୍ଡୀ ଫୁଲ ଫୁଟେ; ସେହିପରି ଉଭୟଙ୍କ ମନରୁ ସଂଶୟ ମେଘ ଦୂର ହେବାରୁ ଚିତ୍ତ ନିର୍ମଳ ହେଲା, ଶୃଙ୍ଗାର ରସ ପୂର୍ଣ୍ଣ ଭାବରେ ଖ୍ୟାତ ହେଲା ଏବଂ କାଶ ଫୁଲ ସମ ହାସ ପ୍ରକାଶିତ ହେଲା ।

୧୭ଶ ପଦ—ସୀତା ପଦ୍ମଫୁଲ ପ୍ରାୟ ହେବାଲ, ଶଯ୍ୟା ସରୋବର ପ୍ରାୟ ହେଲା । ଶରତ୍ ସମୟରେ ସରୋବରରେ ପଦ୍ମ ବିକଶିତ ହେଲା ପରି ଶଯ୍ୟାରେ ସୀତା ରୋମାଞ୍ଚିତ ହୋଇ ଶୋଭା ପାଇଲେ । ସରୋବରୁ ଜଳ ଶୁଖି ଗଲେ ଭକ୍ତମାନ ପ୍ରକାଶିତ ହେଲା ପ୍ରାୟ ଶଯ୍ୟା ସରୋବରରେ ଚତୁଷଷ୍ଟି କାମକଳା ପ୍ରକାଶିତ ହେଲା । ନିର୍ମଳ ଚନ୍ଦ୍ର ଶରତ୍ କାଳରେ ଦେଖା ଗଲା ପ୍ରାୟ ଏଠାରେ ଉତ୍ତମ ଭାବରେ ଚନ୍ଦ୍ର ତୁଳନା ହେଲା ।

୨୮ଶ ପଦ—ଶରତ କାଳରେ ସରୋବରମାନଙ୍କରେ ହଂସଙ୍କର ଶବ୍ଦ ଶୁଣାଯାଏ ପରି, ଏଠାରେ ରତିକ୍ରୀଡ଼ା ଯୋଗୁ ନୂପୁର ସ୍ୱନ ଶୁଣାଗଲା ଏବଂ ନକ୍ଷତ୍ରସବୁ ନିର୍ମଳ ଆକାଶ ଯୋଗୁ ସ୍ପଷ୍ଟ ଦେଖାଯାଏ ପ୍ରାୟ କଣ୍ଠ ସ୍ଥିତ ମୁକ୍ତାମାଳା ଦେଖାଗଲା । ସ୍ତ୍ରୀମାନେ ଋତୁମତୀ ହୁଅନ୍ତି, ତେଣୁ ସୀତାଙ୍କୁ ଋତୁମତୀ ବର୍ଣ୍ଣନା କରି ତାଙ୍କ ରତରୁ ଶରତ୍ କାଳ ସହିତ ଖ୍ୟାତ କରାଗଲା ।

ଶୀତରେ ବିଖ୍ୟାତ ତୁ ସାରସଦୃଶା । ବଦନରେ ଉଡୁବର ପ୍ରଶଂସା ।
ବିମ୍ବାଧରେ ତ ସଦନ ମଧୁର । ବକ୍ଷୋରୁହେ ଗିରିସମ ବନ୍ଧୁର ।୧୯
ଉଚିତ ଘନଜଘନା ବୋଲିବାର । ବ୍ୟବହାର ଖ୍ୟାତ ସର୍ବ ଠାର ।
ଘନାଗମ ହେଲା ନାଶ ଏକାଳେ । ବେଶ୍ୟା ପ୍ରାୟେ ଗଗନ ବିରାଜିଲେ ॥
ଉଡୁ ବୋଲ ଦିଗ ବେଶ୍ୟା ତେଜିଲା । ବେଗେ ସବିତା ଭବରେ ମଜ୍ଜିଲା ।
ବନଜାକ୍ଷୀ ଯେ କୁଳଟା ସ୍ୱଭାବେ । ଅଳିଭିନ ଜାରେ ସେ ଭୁଞ୍ଜ ଚୁମ୍ବେ ॥

---

୧୯ଶ ପଦ—ବିଖ୍ୟାତ—ପ୍ରଥିତ । ସାରସଦୃଶା—ପଦ୍ମଲୋଚନା ।
ଉଡୁବର—ଚନ୍ଦ୍ର, ମୃଗ, ଶର୍ବର । ମଧୁ—ବସନ୍ତ କାଳ । ବକ୍ଷୋରୁହ—ସ୍ତନ ।
୨୦ଶ ପଦ—ବେଶ୍ୟା—ବେଶ ହୋଇଥିବା ଲୋକ ।

---

୧୯ଶ ପଦ—ବୀର ରାମଚନ୍ଦ୍ର କହିଲେ, "ହେ ପଦ୍ମଲୋଚନେ ! ତୁମ୍ଭେ ତୁଷାର ସଦୃଶା ଅର୍ଥାତ୍ ହିମ ଋତୁ ପ୍ରାୟ ଅଟ । ( ତୁମ୍ଭର ଦେହ ତୁଷାର ସଦୃଶ ଶୀତଳ ) ତୁମ୍ଭର ଯେଉଁ ବଦନ ସହିତ ତୁଳନୀୟ ହୋଇ ଚନ୍ଦ୍ର ପ୍ରଶଂସା ପାଉଅଛି, ସେ ବଦନ ଶୀତଳ ହୋଇଥିବାରୁ ତାହା ଶୀତ କାଳ ପ୍ରାୟ ଅଟେ । ତୁମ୍ଭର ବିମ୍ବାଧର ଅମୃତର ଗୃହ ହୋଇଥିବାରୁ ତାହା ବସନ୍ତର ସ୍ଥାନ ହୋଇଅଛି । ତୁମ୍ଭର ସ୍ତନଯୁଗଳ ଗିରିସମ ଅର୍ଥାତ୍ ପର୍ବତ ସମାନ ହୋଇଥିବାରୁ ଗ୍ରୀଷ୍ମର ବନ୍ଧୁର ହେଲା ।" ( ଏଥିରେ ହେମନ୍ତ, ଶୀତ, ବସନ୍ତ ଓ ଗ୍ରୀଷ୍ମଋତୁର ସୂଚନା ଦିଆଗଲା )।

୨୦ଶ ପଦ—"ହେ ସୀତେ ! ତୁମ୍ଭଙ୍କୁ ଘନଜଘନା ବୋଲିବା ଉଚିତ" ( ଏଠାରେ ଘନ ବା ମେଘ ଶବ୍ଦର ବ୍ୟବହାରରେ ବର୍ଷା ଋତୁର ସୂଚନା ମିଳିଲା ) ବ୍ୟବହାରରେ ସୀତାଙ୍କଠାରେ ଶରଦାଦି ଋତୁସମୂହ ଖ୍ୟାତ ହେଲେ । ଏହି ସମୟରେ ରାତ୍ରି ଶେଷ ହେବାରୁ ଆକାଶ ବେଶ ହୋଇଥିବା ଲୋକ ପ୍ରାୟ ଶୋଭିତ ହେଲା ।

୨୧ଶ ପଦ—ପ୍ରଭାତ ହେବାରୁ ପୂର୍ବଦିଗରୂପ ବେଶ୍ୟା ଚନ୍ଦ୍ର ରୂପ ପୁରୁଷ ବୋଲକୁ ତ୍ୟାଗ କରି ସୂର୍ଯ୍ୟଙ୍କ ଭବରେ ମଜ୍ଜିଲା । ( ତେଣୁ ବେଶ୍ୟାନାମରେ ଅଭିହିତ )। ସ୍ୱଭାବରେ ପଦ୍ମିନୀ ଅସତୀ ଅଟଇ, କାରଣ ସୂର୍ଯ୍ୟ ତାକୁ ପ୍ରସ୍ଫୁଟିତ କଲେ, ମାତ୍ର ଭ୍ରମର ବାହ୍ୟପୁରୁଷ ରୂପରେ ତାକୁ ଚୁମ୍ବନ ଦେଲା । [ ପ୍ରଭାତ ହେବାରୁ ପୂର୍ବଦିଗରେ ସୂର୍ଯ୍ୟ ଉଦିତ ହେଲେ, ପଦ୍ମ ଫୁଟିଲା ଓ ତହିଁରେ ଭ୍ରମର ମାନେ ଉଡ଼ି ବହିଲେ ]।

ଜଳଭୁକ ସତ୍ୟବାଦ ରଚନା । ବିବୁଧେ ଯେ ସେ ବେଶ୍ୟାବଶ ସିନା ।
ବାୟସ ସାଧୁ ଭାବକୁ ପେଚକ । ବୃକ୍ଷକୋଟେ ଲୁଚେ ହୀନ ଘାତକ ॥
ବିଚକ୍ଷଣା କୁମୁଦିନୀ ଦେଖାଇ । ବିଷ୍ଟାବତ ମାତ୍ରେ ସତୀ ମୁହିଁ ।
ବସି ନ ପାରି ନ ରସି ଭ୍ରମର । ବ୍ୟର୍ଥ ବାଦ ଦେଇ କରେ ଝଙ୍କାର ॥
ବାୟୁ ମନ୍ଦ ଗୁଣକୁ ଅନ୍ବେଷି କରି । ବାସ ପୁଷ୍ପବତୀର ନେଲା ହରି ।
ବିଶେଷେ ସମୀର ହୋଇଲା ରଜକ । ବିଚାରୁଛି ଅନୁସ୍ୱାରେ ଅଧିକ । ୧୪ ।

---

୧୨ଶ ପଦ—ଜଳଭୁକ— କାକ । ସତ୍ୟବାଦ—ସତ୍ୟ ବଚନ । ବିବୁଧେ—ଦେବତାମାନେ । ବାୟସ—କାକ ।

୧୩ଶ ପଦ—ବିଚକ୍ଷଣା—ବୁଦ୍ଧିମତୀ, ପଣ୍ଡିତା । କୁମୁଦିନୀ—କଇଁଇତା ।

---

୧୨ଶ ପଦ—କାକମାନେ ସତ୍ୟବଚନପ୍ରକାଶ କରି ଗାଇ ବୁଲିଲେ, "ଦେବତାମାନେ ଯେ ବେଶ୍ୟାସକ୍ତ ଅଟନ୍ତି ଏହା ସତ୍ୟ । [ ଚନ୍ଦ୍ର ଓ ସୂର୍ଯ୍ୟ ବାର୍‌ବେଶ୍ୟାରେ ଅସକ୍ତ, ଏହା କାକମାନେ ରବ ଦେଇ କହି ବୁଲିଲେ ] । ପୁଣି କାକ ସାଧୁ ପ୍ରାୟ ହେଲେ । ତାଙ୍କ ଭାବକୁ ଶୁଣି ପେଚକମାନେ ହୀନ ଘାତକପ୍ରାୟ ବୃକ୍ଷ କୋଟରେ ଲୁଚିଲେ ।

୧୩ଶ ପଦ—ମୁଁ ଜାଣିପାରୁଛି, କଇଁ ପଣ୍ଡିତା ଅଟେ । ନିଜ କାନ୍ତ ଚନ୍ଦ୍ରର ଉଦୟରେ ସେ ପ୍ରଫୁଲ୍ଲିତ ଓ ଅସ୍ତରେ ମୁଦ୍ରିତ ହୁଏ, ତେଣୁ ସେ ସତୀ । ଭୃଙ୍ଗ କାମୁକପୁରୁଷ ପ୍ରାୟ ହୋଇ ତା ପାଖକୁ ଗଲା, ମାତ୍ର ତା ଉପରେ ବସି ନ ପାରି ବୃଥାରେ ଅପବାଦ ଦେଇ ଝଙ୍କାର କରୁଅଛି ।

୧୪ଶ ପଦ – ଧୀର ପବନ ବହୁଥିବାରୁ ଜଣାଗଲା, ପବନର ଯେ 'ମନ୍ଦଗତି' ତାହା ପବନର ମନ୍ଦଗୁଣକୁ ଆଶ୍ରୟ କରିଅଛି । ମନ୍ଦଗୁଣ ବିଶିଷ୍ଟ ପୁରୁଷ ପୁଷ୍ପବତୀ ରମଣୀର ବସନ ହରଣ କଲା ପରି, ମନ୍ଦପବନ ପୁଷ୍ପବତୀ ଲତାରୁ ବାସ [ ସୁଗନ୍ଧ ] ହରଣ କରି ନେଉଅଛି । ଆଉ ମଧ୍ୟ ଏ ସଂସାରରେ ସେ ରଜକ ପ୍ରାୟ ହେଲା । ( ରଜକ ପୁଷ୍ପବତୀର ବାସ ନେଇ ସଫା କରେ ) । ମୁଁ ବିଚାରୁଛି, ରଜକଠାରେ ଅନୁସ୍ୱାର ମାତ୍ର ଅଧିକ ଥିବାରୁ ସେ ରଞ୍ଜକ ହୋଇଅଛି, ( ତେଣୁ ପୁଷ୍ପ ସୌରଭ ନେଇ ସମସ୍ତଙ୍କ ମନ ରଞ୍ଜନ କରୁଥାଏ ) ।

ବଲ୍ଲୀଠାରୁ କାମୁକୀ ବଳ ନାହିଁ । ବନୋଦକୁ କୁସୁମେ ଯେଣୁ ଦେଇ ।
ବହଇ ଯେ ସମ୍ଭୋଗକୁ ମଟ୍ଟପ । ବେନି ସବୁ କାଳରେ ଅନୁରୂପ ।୨୫।
ବେଶ୍ମେ ଦୀପ ମଳିନ ହେବାରୁହିଁ । ବାହାରିଲେ କାନ୍ତସଂଗୁ ବୈଦେହୀ ।
ବାମଦେବାର ଯେ ହାରିଲା । ବିଜୟ ତା ରଥ କି ନେଉଥିଲା ॥
ବିଲମ୍ବିତ ଗତି ଅନ୍ଦୁ ବହୁତେ । ବାରଣ କି ଯୋଗଥିଲା ଏ ପ୍ରତେ ।
ବନ୍ଧୁ ଛିନେ ପୃଷ୍ଠେ ଲୋଟେ ଚିକୁର । ବୈଜୟନ୍ତୀ ଅଧୋଗତ ପ୍ରକାର ।
ବଳା ଅଲି ଝୁମ୍ପ ଝୁମ୍ପ ସ୍ୱନିତ । ବାଜେ ପରାଜୟ ତୂର ଯେମନ୍ତ ।
ବନ୍ଧେ ନୟନଛଳେ ନୀଳୋତ୍ପଳ । ବାମ ଦକ୍ଷିଣେ ଶର କି ଚଞ୍ଚଳ ।୨୮।

---

୨୫ଶ ପଦ—ବଲ୍ଲୀ—ଲତା । କୁସୁମେ—ପୁଷ୍ପଦ୍ୱାରାରେ । ବନୋଦ—ଆନନ୍ଦ ।

୨୬ଶ ପଦ—ବେଶ୍ମେ—ଘରେ । ବାମଦେବାର—କନ୍ଦର୍ପ ।

୨୭ଶ ପଦ—ଅନ୍ଦୁ—ହସ୍ତୀର ପାଦବନ୍ଧନ ଶୃଙ୍ଖଳ, ପାଦଭୂଷଣ । ଚିକୁର—କେଶ । ବନ୍ଧୁଛିନେ—ବନ୍ଧନ ରଜ୍ଜୁ ଛିନ୍ନ ହେବାରୁ ।

୨୮ଶ ପଦ—ତୂର—ବାଦ୍ୟବିଶେଷ, ତୂରୀ । ବଳା—ପାଦାଳଙ୍କାର ବିଶେଷ ।

---

୨୫ଶ ପଦ—ଲତାଠାରୁ ବଳି କାମୁକୀ ଆଉ କେହି ନାହିଁ କାରଣ, ସେ ପୁଷ୍ପବତୀ ସମୟରେ ମଧ୍ୟ କେଳି କରେ ଏବଂ ମଟ୍ଟପ ସହିତ ସମ୍ଭୋଗ ବିଧାନ କରେ । ମଟ୍ଟପ ଶବ୍ଦରେ ମଦ୍ୟପ ଅଟେ । କାମୁକୀ ଲତା ଓ ମଦ୍ୟପ ମଧୁପ ଉଭୟେ ସବୁ ସମୟରେ ପରସ୍ପରର ଅନୁରୂପ ଅଟନ୍ତି ।

୨୬ଶ ପଦ—ଗୃହରେ ଦୀପ ମଳିନ ହେବାର ଦେଖି ସୀତା କାନ୍ତ ପାଖରୁ ବାହାରିଲେ । ତାଙ୍କ ମନ୍ଥର ଗତି ଦେଖି ମନେହୁଏ, କନ୍ଦର୍ପ ରଣରେ ହାରିଯିବାରୁ ତାହାର ପରାଜିତ ରଥ ମନ୍ଥରଗତି ବହି ନେଉଥିଲା କି ?

୨୭ଶ ପଦ—ମନ୍ଥରଗତି ହେତୁ ଏପରି ପ୍ରତୀତ ହୁଏ, କନ୍ଦର୍ପ ସେ ରଥରେ ପାଦ ଶାଙ୍କୁଳି ଦେଇ ହସ୍ତୀକୁ ବାନ୍ଧିଥିଲା କି ? ପୁଣି ବନ୍ଧନ ଫିଟି ଯାଇଥିବାରୁ କେଶ ପିଠିରେ ଲୋଟୁଛି । ତା ଦେଖି ମନେ ହୁଏ, କନ୍ଦର୍ପର ପରାଜିତ ପତାକା ଅଧୋଗତେ ଲମ୍ବିଅଛି କି ? ପରାଜିତ ହେବାରୁ ପତାକା ଉପରକୁ ନ ଉଡ଼ି ତଳ ଦିଗକୁ ଲୋଟି ପଡ଼ିଅଛି କି ?

୨୮ଶ ପଦ—ପାଦର ବଳା ଅଳି ଝୁମ୍ପ ଝୁମ୍ପ ରବ କରେ, ସେଥିରୁ ମନେହୁଏ, ପରାଜୟ ହେତୁ ତୂରୀ ମନ୍ଦ ମନ୍ଦ ବାଜୁଅଛି କି ? ସେହି ଗତିବେଳେ ସୀତା ନୟନ ଚଞ୍ଚଳତା ହେତୁ ଏ ଦିଗ ସେ ଦିଗକୁ ବାରମ୍ବାର ଚାହୁଁଥିବାରୁ ମନେହୁଏ, କନ୍ଦର୍ପ ନୀଳୋତ୍ପଳ ଶରକୁ ବାମ ଓ ଦକ୍ଷିଣ ଦିଗକୁ ଖରତରେ ବିନ୍ଧୁଅଛି କି ?

ବେଢିଗଲେ ସଜନୀ ଗୃହପାଶେ । ବିଧାନୀ ସେ ନୋହିଲେ ପରହାସେ ।
ବିଳମ୍ବରେ ଜାଣିବେ ଗୁରୁଜନ । ବେଶ କଲେ ନୀତି ସାରି ବହନ ॥
ରସିଥିଲା ଯେ ଓଷ୍ଠେ ରଦପଦ । ବିଦ୍ରୁମରେ ଯେମନ୍ତ କୀଟଭେଦ ।
ବିଶେଷରେ ତାମ୍ବୁଳ ଭୁଞ୍ଜାଇଲେ । ବିଲେପକୁ ଯେ ତହିଁ ବର୍ଜିଲେ ॥
ବିଧ୍ୱଂସିଲେ ସେ ଚିହ୍ନ ଗଣ୍ଡଦେଶୁ । ବିଧୁ ମଉଳୀ ଶିରଜ ସନ୍ତୋଷୁ ।
ବକ୍ଷୋଜରେ ସଜ୍ଜିତ ନଖକ୍ଷତ । ବିଧୁ ଅର୍ଦ୍ଧ ଶମ୍ଭୁ ଶିରେ ଯେମନ୍ତ ।୩୧।
ବେଢାଇଣ ଚୈଳ ତା ଗୁପ୍ତ କରି । ବିଜେ ତାହାରେ ପୁଂସବର ଗୃହ ।
ବୋଲେ ଉପେନ୍ଦ୍ର ଭଞ୍ଜ ଏ ରସ । ବୁଝ ବୁଧମାନେ ପଦ ବିଶେଷ ।୩୨।

---

୩୦ଶ ପଦ—ରଦପଦ—ଦନ୍ତଚିହ୍ନ । ବିଦ୍ରୁମ—ପୋହଳା ।
୩୧ଶ ପଦ—ବକ୍ଷୋଜ—ସ୍ତନ । ବିଧୁଅର୍ଦ୍ଧ—ଅର୍ଦ୍ଧଚନ୍ଦ୍ର ।
୩୨ଶ ପଦ—ଚୈଳ—କାଞ୍ଚୁଲି । ବୁଧମାନେ—ପଣ୍ଡିତମାନେ ।

---

୨୯ଶ ପଦ—ସେହିକାଳରେ ସଖୀମାନେ ସୀତାଙ୍କର ଗୃହପାଖରେ ବେଢିଗଲେ, ସେମାନେ ସୀତାଙ୍କ ଅଙ୍ଗରେ କ୍ଷତ ଚିହ୍ନମାନ ଦେଖି ପରିହାସରେ ସମୟ ଅତୀତ କଲେ ନାହିଁ । ବିଳମ୍ବ ହେଲେ କାଳେ ଗୁରୁଜନମାନେ କ୍ଷତ ଚିହ୍ନମାନ ଦେଖିବେ, ତାହା ବି ସେମାନେ ଶୀଘ୍ର ନିତ୍ୟକର୍ମମାନ ସମାପ୍ତ କରି ସୀତାଙ୍କୁ ବେଶ ଭୂଷା କଲେ । ( ଏଦ୍ୱାରା ସଖୀମାନଙ୍କର ଚାତୁର୍ଯ୍ୟ ସୂଚିତ ହେଉଛି )।

୩୦ଶ ପଦ—ପ୍ରବାଳରେ କୀଟର ଦଂଶନ ଜନିତ କ୍ଷତ ଦେଖାଗଲା ପରି ସୀତାଙ୍କ ରକ୍ତିମ ଓଷ୍ଠରେ ଯେଉଁ ଦାଗଟି ଦେଖାଯାଉଥିଲା, ତାହାକୁ ଲୋପ କରିବାପାଇଁ ଚତୁର ସଖୀମାନେ ବିଶେଷରୂପେ ତାଙ୍କୁ ପାନ ଭୁଞ୍ଜାଇଲେ ।

୩୧ଶ ଓ ୩୨ଶ ପଦ—ପୁଣି ସେହି ସଖୀମାନେ ସୀତାଙ୍କ ସନ୍ତୋଷ ଜନନ ନିମନ୍ତେ ମଉଳୀ ରସ ନେଇ ତାଙ୍କୁ ଗଣ୍ଡସ୍ଥଳରେ ହୋଇଥିବା କ୍ଷତ ଚିହ୍ନକୁ ଲୋପ କଲେ । ମହାଦେବଙ୍କ ଶିରରେ ଅର୍ଦ୍ଧଚନ୍ଦ୍ର ଯୋପରି ଦେଖାଯାଏ, ସେହିପରି ଦେଖାଯାଉଥିବା ସ୍ତନଯୁଗଳୋପରି ନଖକ୍ଷତ ଚିହ୍ନକୁ କାଞ୍ଚୁଲି ବେଢ଼ାଇ ଲୁଚାଇ ଦେଲେ । ରାମ ଲକ୍ଷ୍ମଣ, ଭରତ, ଶତ୍ରୁଘ୍ନ ଏହି ଚାରି ପୁରୁଷଶ୍ରେଷ୍ଠ ବାସର ଗୃହକୁ ଯାଇ ତାହାରେ ବିଜେ କଲେ । ଉପେନ୍ଦ୍ର ଭଞ୍ଜ ଏ ରସକୁ ବତିଶପଦରେ ବର୍ଣ୍ଣିଲେ । ହେ ପଣ୍ଡିତମାନେ ! ହୃଦୟଙ୍ଗମ କର ।

## ଷୋଡ଼ଶ ଛାନ୍ଦ

### ରାଗ—ନଳିନୀ ଗୌଡ଼ା

ବିଦେହରାଜନ ଭୋଜ୍ୟ ସମ୍ଭାର ଭିଆଇ ।
ତୋଷିଲେ ଦଶରଥ ବନ୍ଧୁବର୍ଗ ନେଇ ଯେ ।୧।
ବସନ ରତ୍ନ ଭୂଷଣ କୁସୁମ ଚନ୍ଦନେ ।
ବନ୍ଦିଲେ ସଭ୍ୟରେ ଅତି ଆନନ୍ଦିତ ମନେ ଯେ ।୨।
ରସାପୁରେ ବରକନ୍ୟା ଘେନି ଗଲାବେଳେ ।
ବସାଇ କୋଳେ ଜନନୀମାନେ ତୋଷିଲେ ଯେ ।୩।
ବୀରସୁ ସନ୍ନିଧେ ହେଉଁ ବଧୂ ଅଲୋକରେ ।
ବିରସୁଁ ଜଡ଼ିତ ହେଲେ ଥିଲେ ଏ ଲୋକରେ ଯେ ।୪।
ବରଙ୍କ ସୁଷମା ସମା କନ୍ୟା ଥିବେ କାହିଁ ।
ବିଗୁରୁଥିଲେଁ ବଧୂ ଭଲା ଥିଲା ବଧୂ ଯେ ।୫।

---

୪ର୍ଥ ପଦ—ବୀରସୂ—ବୀରମାତା ।

---

## ଷଡୋଶ ଛାନ୍ଦ

୧ମ ପଦ—ବିଦେହ ରାଜନ ଜନକ ଭୋଜନ ସାମଗ୍ରୀ ଆୟୋଜନ ପୂର୍ବକ ଦଶରଥଙ୍କ ବନ୍ଧୁମାନଙ୍କୁ ତୋଷ କଲେ ।

୨ୟ ପଦ—ତଦନନ୍ତର ଆନନ୍ଦିତ ଚିତ୍ତରେ ବନ୍ଧୁମାନଙ୍କୁ ବସନ ଭୂଷଣ କୁସୁମ ଚନ୍ଦନ ସତ୍କାର କଲେ ।

୩ୟ ପଦ—ଜସ:ଘରକୁ ବର ଓ କନ୍ୟାମାନଙ୍କୁ ଘେନି ଯିବା ସମୟରେ ଜନନୀମାନେ କନ୍ୟାମାନଙ୍କୁ କୋଳରେ ବସାଇ ବହୁତ ତୋଷ କହିଲେ । ( ବହୁତ ସଦୁପଦେଶ ଦେଲେ ) ।

୪ର୍ଥ ଓ ୫ମ ପଦ—ବୀରମାତା କୌଶଲ୍ୟାଦି ରାଣୀମାନଙ୍କ ନିକଟରେ ବଧୂମାନେ ପ୍ରବେଶ ହୁଅନ୍ତେ, ବଧୂମାନଙ୍କର ତେଜଶୋଭା ଦେଖି ସେମାନେ ବିରସ ଭାବକୁ ତ୍ୟାଗ କଲେ ଅର୍ଥାତ୍ ହର୍ଷ ହେଲେ । ( ବଧୂମାନଙ୍କୁ ନ ଦେଖି ବିରସ ହୋଇଥିଲେ; କାରଣ ) ସେମାନେ କୁହାକୁହି ହେଲେ, "ଆମେ ବିଗୁରୁଥିଲେ ଯେ, ଆମ ପୁତ୍ରମାନଙ୍କ ଶୋଭା ସମାନରେ କନ୍ୟା କେଉଁଠାରେ ଅବା ଥିବେ ? ମାତ୍ର ବିଧାତା ଉପଯୁକ୍ତ କନ୍ୟାମାନଙ୍କୁ ନିର୍ମାଣ କରିଅଛି ।"

ବର୍ତ୍ତିମାନ ଭୂତ ଭବିଷ୍ୟରେ ଶୋଭାସାର ।
ବୋଲିବାର ସମ୍ଭବଇ ଏହାଙ୍କ ଠାବର ଯେ ।୬।
ବସୁମତୀ ଗର୍ଭୁଁ ଗ୍ରହ ଦୈତ୍ୟ ଜାତ ହୋଇ ।
ବିଭୃତ ତା ଗର୍ଭେ ସୀତା ହୋଇଥିଲେ କେହୁ ଯେ ।୭।
ବାରୁଣୀ ବିଷ ଅମୃତ ଯଥା ସିନ୍ଧୁଜାତ ।
ବିଶ୍ୱମ୍ଭରୁ ଜାନକୀ ଜନିତ ତେମନ୍ତ ଯେ ।୮।
ବିଧି ଭଲ ବିଧି ଭଲ ଏ ଜାତ ହେବାରୁ ।
ବୋଲିଥିଲ ଗନ୍ଧବତୀ ରତ୍ନଗର୍ଭା ତାକୁ ଯେ ।୯।

---

୭ମ ପଦ—ବସୁମତୀ—ପୃଥିବୀ । ଗ୍ରହ—ମଙ୍ଗଳଗ୍ରହ । ଦୈତ୍ୟ—ନାରକାସୁର । ବିଭୃତ—ପୋଷଣ ବା ଧାରଣ ।

୮ମ ପଦ—ବାରୁଣୀ—ମଦ୍ୟ ବିଶେଷ । ବିଶ୍ୱମ୍ଭରୁ—ପୃଥିବୀରୁ ।

---

୬ଷ୍ଠ ପଦ—ବର୍ତ୍ତିମାନ, ଭୂତ ଓ ଭବିଷ୍ୟତ—ଏହି ତିନି କାଳରେ ଶୋଭାଶ୍ରେଷ୍ଠା ବା ପରମା ସୁନ୍ଦରୀ ବୋଲିବା କେବଳ ଏହି କନ୍ୟା-ମାନଙ୍କଠାରେହିଁ ସମ୍ଭବ । ( ଅର୍ଥାତ୍ ଏହାଙ୍କ ପରି ସୁନ୍ଦରୀ ବର୍ତ୍ତିମାନ କାଳରେ ନାହାନ୍ତି, ଅତୀତରେ ନ ଥିଲେ ବା ଭବିଷ୍ୟତରେ ହୋଇ ନ ପାରନ୍ତି ) ।

୭ମ ପଦ—ସ୍ୱର୍ଗୀମାନେ ଭାବିଲେ, ଯେଉଁ ପୃଥିବୀ ଗର୍ଭରୁ ( କୁରୂପ ) ମଙ୍ଗଳଗ୍ରହ ଓ ନାରକାସୁର ଜନ୍ମ ହୋଇଥିଲେ, ସେହି ପୃଥିବୀରୁ ଏ ପରମା ସୁନ୍ଦରୀ ସୀତା କିପରି ଜାତ ହେଲେ ?

୮ମ ପଦ—ମଦ୍ୟ,ବିଷ ଓ ଅମୃତ ଯେପରି ସମୁଦ୍ରରୁ ଜାତ ହେଲେ, ସେହିପରି ପୃଥିବୀରୁ ସୀତା ଉଦ୍ଭବ ହୋଇ ଅଛନ୍ତି । ( ସମୁଦ୍ରରୁ ମଦ୍ୟ ଓ ବିଷ ଜାତ ହେଲା ପରେ ଅମୃତ ଉଦ୍ଭବ ହୋଇଥିଲା; ସେହିପରି ପୃଥିବୀରୁ ମଙ୍ଗଳ ଓ ନାରକାସୁର ଜନ୍ମ ହେବା ପରେ ସୀତା ଜନ୍ମ ହେଲେ—ମନ୍ଦ ସ୍ଥାନରେ ଭଲ ରହିବା ଅସମ୍ଭବ ନୁହେଁ ) ।

୯ମ ପଦ—ବିଧାତା ଧନ୍ୟ ଓ ତାହାର ବିଧାନ ମଧ୍ୟ ଧନ୍ୟ । କାରଣ, ସେ ପୃଥିବୀକୁ ଯାହା ଗନ୍ଧବତୀ ଓ ରତ୍ନଗର୍ଭା ନାମ ଦେଇଥିଲେ, ତାହା ଏହି ସୁଲକ୍ଷମୟୀ ସୀତାଙ୍କ ଜନ୍ମ ହେତୁ ସାର୍ଥକ ହୋଇଅଛି ।

ବରବର୍ଣ୍ଣିନୀ ବରଙ୍କ ଚଉଠି ଉତ୍ସବ ।
ବରବର୍ଣ୍ଣିନୀ କ୍ରୀଡ଼ାକୁ ରଚିଲେ ବାନ୍ଧବ ଯେ । ୧୦ ।
ଚନକ ହରିତାଳେ କି ପ୍ରଳୟ କହାଇଲା ।
ବର୍ଣ୍ଣାଞ୍ଜନ ଜନ ହେଲେ ସୁବର୍ଣ୍ଣପିତୁଳା ଯେ । ୧୧ ।
ଝଷିଖଦସ୍ୱାଦ ଝଧି ଖାଇଲେ ଷୂଣ୍ଡିକୁ ।
ବୋଲାଇଲେ ଅଜସୁତ ପୁର ଗମନକୁ ଯେ । ୧୨ ।
ବଉରଣ ଦର ଅଣି ବୁଢ଼ାଇ ଜନକ ।
ବଚନୀୟ ନୋହେ ଯେତେ ଦେଲେ ଯଉତୁକ ଯେ । ୧୩ ।
ବାତାୟୁଲୋମଜ କଉଶେୟ ଜରବସ୍ତ୍ର ।
ବ୍ରହ୍ମାସ୍ତ୍ର ସମାନ କର ସମର୍ପିଲେ ଅସ୍ତ୍ର ଯେ । ୧୪ ।

---

୧୦ମ ପଦ—ବରବର୍ଣ୍ଣିନୀ—ଗୌରାଙ୍ଗୀ କନ୍ୟା । ବରବର୍ଣ୍ଣିନୀ—ହଳଦୀ ଅର୍ଥାତ୍ ହଳଦୀପାଣି ।

୧୧ଶ ପଦ—ଚନକ—ରଙ୍ଗ ।

୧୨ଶ ପଦ—ଅଜସୁତ—ଦଶରଥ ।

୧୪ଶ ପଦ—ବାତାୟୁ ଲୋମଜ—ମୃଗ ଲୋମରେ ନିର୍ମିତ । କଉଶେୟ—ପଟ୍ଟବସ୍ତ୍ର ।

---

୧୦ମ ପଦ—ଗୌରବର୍ଣ୍ଣ କନ୍ୟା ଓ ବରମାନଙ୍କର ଚଉଠୀ ଉତ୍ସବରେ ବନ୍ଧୁଜନମାନେ ହରିଦ୍ରା କେଳି କଲେ ( ଚଉଠୀ ଦିନ ହଳଦୀ ପାଣି ପକା ପକି ହେବାର ବିଧି ) ।

୧୧ଶ ପଦ—ହଳଦୀ ପାଣିରେ ବନ୍ଧୁବାନ୍ଧବମାନେ ରଞ୍ଜିତ ହେବାରୁ ମନେ ହୁଏ, ହରିତାଳ ବର୍ଣ୍ଣ ଜଳରେ ପ୍ରଳୟ ହେଲା କି ? ଶ୍ୟାମଳ ବର୍ଣ୍ଣ ବ୍ୟକ୍ତିମାନେ ହଳଦୀ ପାଣିରେ ରଞ୍ଜିତ ହେବାରୁ ସ୍ୱର୍ଣ୍ଣ ପିତୁଳା ପ୍ରାୟ ଦେଖାଗଲେ ।

୧୨ଶ ପଦ—କାଣ୍ଡଘର ଆଦି ବିଧାନସବୁ ସମ୍ପୂର୍ଣ୍ଣ ହେଲା । ତାହା ପରେ ଦଶରଥ ଆପଣା ପୁରକୁ ପିବାପାଇଁ ଜନକଙ୍କ ପାଖକୁ ଖବର ପଠାଇଲେ ।

୧୩ଶ ପଦ—ଜନକ ରାଜା ପେଟିକା ପ୍ରଭୃତିରେ ପୂର୍ଣ୍ଣ କରି ବୁଢ଼ାଇ ଅଣି ଯେତେ ଯଉତୁକ ଦେଲେ—ତାହା ଅକଥନୀୟ ( ଅର୍ଥାତ୍ କଥାରେ ବର୍ଣ୍ଣନା କରି ହେବ ନାହିଁ ) ।

୧୪ଶ ପଦ—ମୃଗରୋମ ଜାତ ଶାଲ, ପାଟବସ୍ତ୍ର ଜରିବସ୍ତ୍ର ଓ ବ୍ରହ୍ମାସ୍ତ୍ର ସମାନ ଅସ୍ତ୍ର ସବୁ ଯୌତୁକ ସ୍ୱରୂପ ସମର୍ପଣ କଲେ ।

ବୃଷାହ୍ୱୟ ପର ହୟଚୟ, କସ୍ତ ତହିଁ ।
ବାସବ-ଗଜ-ତନୟ ନୟ ଜପୁଜଇ ଯେ । ୧୫ ।
ବାରାଂନିଧି ଶୂନ୍ୟ ଭଲ୍ଲ ପର ରତ୍ନ ଦଏ ।
ବେଳବୃନ୍ଦା ପାଣ୍ଡବଭ ଜ୍ୟୋତିର୍ବିଦ ପ୍ରାୟେ ଯେ । ୧୬ ।
ବହୁଙ୍ଗେ ଶୁକ ସାରିକା ଶ୍ଳୋକ ପଢା ହୋଇ ।
ବଦ୍ୟାଧରୀ ବଜିତା ଦାସୀ ତ ଥିଲେ ଦେଇ ଯେ । ୧୭ ।
ବାଞ୍ଛାବଲେ ଗ୍ଳଣ ଯେ ମିଥିଳା-ନରେଶ୍ୱର ।
ବଜସ୍ତେ ସୁଖାସନରେ ସ୍ନୁଷ କନ୍ୟା ବର ଯେ । ୧୮ ।
ବଳ ସାଜି ଗମନ ବାଜନ୍ତେ ବାଦ୍ୟମାନ ।
ବଳପର ଆଦ ଦେବେ ଭରନ୍ତି ଲୋଚନ ଯେ । ୧୯ ।

---

୧୫ଶ ପଦ—ବୃଷାହ୍ୱୟ—ଇନ୍ଦ୍ରଙ୍କର ଉଚ୍ଚୈଃଶ୍ରବା ଅଶ୍ୱ । ହୟଚୟ—ଅଶ୍ୱସମୂହ । ବାସବ ଗଜ ତନୟ—ଇନ୍ଦ୍ରଙ୍କ ଐରାବତ ହସ୍ତୀର ପୁଅ । ନୟ—ସନ୍ତୁଷ୍ଟ ।

୧୬ଶ ପଦ—ବାରାଂନିଧି—ସମୁଦ୍ର ।

୧୮ଶ ପଦ—ସୁଖାସନ—ଯାନ, ଏଠାରେ ପାଲିଙ୍କି ।

୧୯ଶ ପଦ—ବଳ - ସୈନ୍ୟ । ବଳପର—ଇନ୍ଦ୍ର ।

---

୧୫ଶ ପଦ—ଉଚ୍ଚୈଃଶ୍ରବା ପରି ଘୋଟକ, ଐରାବତ ପୁତ୍ରଙ୍କ ସମାନ ଗଜ ସବୁ ଦେଲେ ।

୧୬ଶ ପଦ—ସମୁଦ୍ର ଶୂନ୍ୟ ହେଲା ପରି ରତ୍ନସବୁ (ଅପରିମିତ ରତ୍ନ) ପୁଣି ଜ୍ୟୋତିର୍ବିଦ୍‌ସମ ବାଳକ ପାରିସମାନଙ୍କୁ ପ୍ରଦାନ କଲେ ।

୧୭ଶ ପଦ—ଶ୍ଳୋକ ପଢୁଥିବା ଶୁକ ସାରିକା ପକ୍ଷୀମାନଙ୍କୁ ଦେଲେ ଏବଂ ଅପ୍ସରାବରୁ ବିଦ୍ୟାଧରୀଙ୍କ ଅପେକ୍ଷା ବେଶୀ ସୁନ୍ଦରୀ ଦାସୀ ଦେଇଥିଲେ ।

୧୮ଶ ପଦ—ଦଶରଥ ଅନୁକୂଳ ହେବାରୁ ମିଥିଳାରାଜ ଜନକ ତାଙ୍କୁ ଚଳାଇ ଦେବାକୁ ବାଞ୍ଛାକଲେ । ଗୃହ ବର ଓ ଗୃହ କନ୍ୟା ପାଲିଙ୍କି ଓ ଶିବିକା-ରୂପ ସୁଖାସନରେ ବସିକି ଚଳେ ।

୧୯ଶ ପଦ—ଦଶରଥ ସୈନ୍ୟମାନଙ୍କୁ ସଜ କରି ବାଦ୍ୟ ବଜାଇ ଗମନ କରନ୍ତେ, ଇନ୍ଦ୍ର ଆଦି ଦେବତାମାନେ ଶୂନ୍ୟରେ ରହି ତାହା ଦେଖିଲେ ।

ବିଶାଳ ଭୂପାଳ ମେଳ ହୋଇଲେ ପଥର ।
ବଂଶେ ମିତ୍ରର ଯେ ଜାତ କେ ହୋଇବ ପର ତେଜ । ୨୦ ।
ବୀରବାହୁ ଭୃଗୁପତି ତ୍ରାସ ଦେବାପାଇଁ ।
ବାସ କଲ୍ପ ଗିରି ଭୃଗୁ ଚମକନ୍ତେ ତହିଁ ଯେ । ୨୧ ।
ବୀତିହୋତ୍ର ସଦୃଶ୍ୟେ ସ୍ୱଭାବେ ତେଜୋବନ୍ତ ।
ବୀରତୂର ବାତାହୃତ ଲଭି ପ୍ରଜ୍ୱଳିତ ଯେ । ୨୨ ।
ଉଦିତ କାଷ୍ଠାବଳରେ ଲଗି ପାଂଶୁ ବର୍ଷେ ।
ବ୍ୟାକୁଳିତ ଦଶରଥ ହେଲେ ସେହୁ ତ୍ରାସେ ଯେ । ୨୩ ।
ବୋଇଲେ ପ୍ରଚଣ୍ଡାନଳ ଅସୁଅଛୁ ଜଳି ।
ବୁଦ୍ଧି ନ ଦିଶେ ଭ୍ରମରେ ହେଲେ ତୃଣାବଳି ଯେ । ୨୪ ।

---

୨୦ଶ ପଦ—ଭୂପାଳ—ରାଜା । ମିତ୍ର—ସୂର୍ଯ୍ୟ । ପର—ଶତ୍ରୁ ।
୨୨ଶ ପଦ—ବୀତିହୋତ୍ର—ଅଗ୍ନି ।
୨୩ଶ ପଦ—କାଷ୍ଠାବଳରେ—ଦିଗମାନଙ୍କରେ, ବାଟରେ ।

---

୨୦ଶ ପଦ—ବଡ଼ ବଡ଼ ରାଜାମାନଙ୍କର ବାଟରେ ଭେଟ ହେଲେ । ଯେଉଁ ଦଶରଥ ସୂର୍ଯ୍ୟ ବଂଶରେ ଜାତ, ତାଙ୍କର ଶତ୍ରୁ କା କିଏ ହେବ ? (ଅର୍ଥାତ୍ ବଡ଼ ବଡ଼ ରାଜାମାନେ ତାଙ୍କର ଅଧୀନ ଥିବାରୁ ବାଟରେ ଆସି ଯୋଗ ଦେଇଥିଲେ ) ।

୨୧ଶ ପଦ—ରାହୁ ତୁଲ୍ୟ ବୀର ( କ୍ଷତ୍ରିୟ ଚନ୍ଦ୍ରମାନଙ୍କର ଗ୍ରାସକାରୀ ପର୍ଶୁରାମଙ୍କ ନିବାସ ପର୍ବତର ସନ୍ନିକଟ ବାଦ୍ୟ ନାଦରେ ଚମକନ୍ତେ; ସେ କ୍ଷତ୍ରିୟମାନଙ୍କୁ ତ୍ରାସ ଦେବା ପାଇ ବାହାର ହୋଇ ପଡ଼ିଲେ ।

୨୨ଶ ପଦ—ସ୍ୱଭାବରେ ସେ ପର୍ଶୁରାମ ଅଗ୍ନି ପ୍ରାୟ ତେଜସ୍ୱୀ ଅଟନ୍ତି । ବୀରବାଦ୍ୟ ରୂପ ବାତାହୃତ ପାଇ ପ୍ରଜ୍ୱଳିତ ହୋଇ ଉଠିଲେ । ( ବୀରମାନେ ବୀରବାଦ୍ୟ ଶ୍ରବଣରେ ଉଲ୍ଲସିତ ହୁଅନ୍ତି ) ।

୨୩ଶ ପଦ—ଏ ୦ ଷୋଡ଼ଶସ୍ତ ପରେ ପାଉଁଶ ଉଡ଼ି ଦିଗ ଆଚ୍ଛାଦନ ଭଲ ପରି ପର୍ଶୁରାମଙ୍କର କ୍ରୋଧୋନ୍ମତ୍ତ ଆଗମନରେ ଧୂଳି ଉଡ଼ି ଦିଗସବୁ ଢାଙ୍କି ହୋଇଗଲା । ସେହି ଭୟରେ ଦଶରଥ ବ୍ୟାକୁଳିତ ହେଲେ ।

୨୪ଶ ପଦ—ଭୟ ପାଇ ଦଶରଥ କହିଲେ, 'ପ୍ରଚଣ୍ଡ ଅଗ୍ନି ଜଳି ଅସୁଅଛି, ମୋତେ ବୁଦ୍ଧି ଦିଶୁ ନାହିଁ । ମୋର ପୁତ୍ରେ ତୃଣ ପରି ହୋଇ ଅଛନ୍ତି । ଅର୍ଥାତ୍ ତୃଣ ପ୍ରାୟ ସେ ପ୍ରଚଣ୍ଡ ଅଗ୍ନିରେ ପୋଡ଼ି ହୋଇଯିବେ ) ।

ବିଶ୍ୱାମିତ୍ର ଶ୍ରବଣେ କଲେ ପ୍ରତିଭାଷ ।
ବିନାଶ ତହିଁ ଉତ୍ପତ୍ତି ଯହିଁରୁ ନ ଦୋଷ ଯେ । ୨୫ ।
ବ୍ୟୋମ ଅଯୋଧ୍ୟାରେ ଉଦେ ମୁଦିର ସୁନ୍ଦର ।
ବହ୍ନି ତପନ କେମନ୍ତେ ରହିବ ତାହାର ଓପ । ୨୬ ।
ବାମଦେବ ବୋଇଲେ କରନ୍ତି ତୋତେ ରକ୍ଷା ।
ବାଞ୍ଛି ପୁତ୍ରଙ୍କ କଲ୍ୟାଣେ ଅସୁଅଛନ୍ତି ଦକ୍ଷ ଯେ । ୨୭ ।
ବଶିଷ୍ଠ ବୋଇଲେ ଗ୍ରହ ମଙ୍ଗଳ ବୋଲାଇ ।
ବିନା ଦାନେ ଶାନ୍ତି ନୋହେ ଅମଙ୍ଗଳଦାୟୀ ଯେ । ୨୮
ବୀରଶାର୍ଦ୍ଦୂଳ ଲୋଚନେ ଭାଜିଲେ ସୈନ୍ୟମୃଗ ।
ବିନୟୀ ହେଲେ ନୃପତି ଅତ୍ୟନ୍ତ ଉଦ୍‌ବେଗ ଯେ । ୨୯ ।

---

୨୬ଶ ପଦ—ବ୍ୟୋମ—ଆକାଶ—ମୁଦିର—ମେଘ । ବହ୍ନି ତପନ—ଅଗ୍ନି ତେଜ ।

୨୯ଶ ପଦ—ବୀରଶାର୍ଦ୍ଦୂଳ—ବୀରଶ୍ରେଷ୍ଠ ।

---

୨୫ଶ ପଦ—ବିଶ୍ୱାମିତ୍ର ଦଶରଥଙ୍କ ବ୍ୟାକୁଳ ବଚନ ଶୁଣି ଉତ୍ତର ଦେଲେ, 'ଯହିଁରୁ ଯେ ଉତ୍ପନ୍ନ, ତହିଁରେ ତାର ବିନାଶ ହୁଏ । ଏ କଥା ବିଚାର କରୁ ନାହିଁ କାହିଁକି ?' (ଅଗ୍ନି ଜଳରୁ ଉତ୍ପନ୍ନ ହୋଇ ପୁଣି ସେହି ଜଳରେ ବିନାଶ ହୁଏ) ।

୨୬ଶ ପଦ—'ଅଯୋଧ୍ୟା ଆକାଶରେ ଘନସୁନ୍ଦର ରାମ ଉଦିତ ହୋଇ ଅଛନ୍ତି । ଅଗ୍ନି ତ ମେଘର ଶତ୍ରୁ, ସେ କିପରି ରହିବ ? (ପରଶୁରାମଙ୍କ କ୍ରୋଧରୂପ ଅନଳ ରାମଚନ୍ଦ୍ରରୂପ ମେଘ ଦ୍ୱାରା ବିଲୁପ୍ତ ହେବ) ।

୨୭ଶ ପଦ—ତତ୍‌ପରେ ବାମଦେବ କହିଲେ, 'ପରଶୁରାମ ପୂର୍ବେ ତୁମ୍ଭଙ୍କୁ ରକ୍ଷା କରି ଅଛନ୍ତି । ସେ କଲ୍ୟାଣ କରିବାରେ ଦକ୍ଷ, ତେଣୁ ତୁମ୍ଭ ପୁତ୍ରମାନଙ୍କୁ କଲ୍ୟାଣ କରିବା ଇଚ୍ଛାରେ ଅସୁଅଛନ୍ତି । (ତେଣୁ ଭୟ କରିବା ଉଚିତ ନୁହେଁ) ।

୨୮ଶ ପଦ—ବଶିଷ୍ଠ ତାହାପରେ କହିଲେ, 'ମଙ୍ଗଳ ଗ୍ରହ ମଙ୍ଗଳ ନାମ ବୋଲାଇଲେ ସୁଦ୍ଧା ଅମଙ୍ଗଳକୁ ପ୍ରଦାନ କରେ । ଦାନାଦି ଦ୍ୱାରା ତାହାର ଅମଙ୍ଗଳ ନିବାରିତ ହୋଇଥାଏ । ସେହିପରି ପରଶୁରାମଙ୍କ ତେଜ ଅଶାନ୍ତିକାରକ, ତାହା 'ଦାନ' ଛେଦନ ନ ହେଲେ ସେ ଶାନ୍ତ ଲଭିବେ ନାହିଁ ।

୨୯ଶ ପଦ—ବୀର ଶାର୍ଦ୍ଦୂଳ ପରଶୁରାମଙ୍କୁ ଦର୍ଶନ କରି ସୈନ୍ୟ ମୃଗମାନେ ପଳାୟନ କଲେ । ତାହା ଦେଖି ନୃପତି ଦଶରଥ ଅତ୍ୟନ୍ତ ବ୍ୟାକୁଳ ମନରେ ପରଶୁରାମଙ୍କ ନିକଟରେ ବିନୟଯୁକ୍ତ ହେଲେ ।

ବୃଦ୍ଧକାଳେ ପୁତ୍ରଦାନ କଲେ ଋଷ୍ୟଶୃଙ୍ଗ ।
ବିବାହ ଉତ୍ସବ କରି ବାହୁଡ଼ୁଛୁ ନଗ୍ର ଯେ ।୩୦।
ବିଜେ କର କୃପାରେ ଏଠାରୁ ଭୃଗୁରାଜ ।
ବୃଦ୍ଧି ହେବ ଅୟୁ ତାଙ୍କୁ ଦିଅ ପାଦରଜ ହେ ।୩୧।
ବିଷ୍ଣୁର ଅଂଶବେଶ ଅବତାର ହୋଇ ତବ ।
ବିଜ୍ୱଳିତ କୋପେ ଭକ୍ତ ଭକ୍ତ ନ ଯେଣିବ ହେ ୩୨।
ବୋଲନ୍ତି ବୋଲେ ଯେଉଁ ରାମ ବଡ଼ାଇ ପ୍ରକଟେ ।
ବୀର ବାଦ୍ୟ ବଜାଇ ଯାଉଛନ୍ତି ମୋ ନିକଟେ ଯେ ।୩୩।
ବିଶ୍ୱେ ନ ଜାଣେ କ୍ଷତ୍ରିୟବିମର୍ଦ୍ଦନକାରୀ ।
ବସୁଧାରେ ତାର ଶିର ଲୋଟାଇବି ସିନା ଯେ ।୩୪।
ବୋଲେ ନୃପ କ୍ଷୀରକଣ୍ଠ ମାରି କେଉଁ ଯଶ ।
ବିକ୍ରମିଣ ଗଲେ ସେ ନ ଶୁଣି ରାଜା ଭାଷ ଯେ ।୩୫।

---

୩୦ଶ ପଦ—ଦଶରଥ ବିନୟ ସ୍ୱରରେ କହିଲେ, "ବୃଦ୍ଧ କାଳରେ ଋଷ୍ୟଶୃଙ୍ଗ ମୁନି ଦୟା ପୂର୍ବକ ପୁତ୍ରଦାନ କରି ଅଛନ୍ତି । ତାହାଙ୍କର ବିବାହ ଉତ୍ସବ କରି ମୁଁ ଏବେ ନଗ୍ରକୁ ଫେରି ଯାଉଅଛି ।"

୩୧ଶ ପଦ—"ହେ ଭୃଗୁବଂଶ ଶ୍ରେଷ୍ଠ ! ଅନୁଗ୍ରହ ପୂର୍ବକ ତୁମ୍ଭେ ଏଠାରୁ ବିଜେ କର । ପୁତ୍ରମାନଙ୍କର ଆୟୁ ବୃଦ୍ଧି କାରଣ ସେମାନଙ୍କୁ ପଦଧୂଳି ପ୍ରଦାନ କର ।"

୩୨ଶ ପଦ—"ତୁମ୍ଭେ ବିଷ୍ଣୁଙ୍କର କଳାବତାର ଅଟ । କ୍ରୋଧାଗ୍ନିରେ ପ୍ରଜ୍ୱଳିତ ହୋଇ ଭକ୍ତନ ଭକ୍ତ ଗ୍ରହଣ କରୁନାହଁ କି ?"

୩୩ଶ ଓ ୩୪ଶ ପଦ—ଦଶରଥ ଏପରି ବିନୟ ବାଣୀ କହିବାରୁ ପର୍ଶୁରାମ କହିଲେ, "ଯେଉଁ ରାମ ବଡ଼ାଇ ପ୍ରକଟ କରି ବୀରବାଦ୍ୟ ବଜାଇ ମୋ ନିକଟରେ ଯାଉଅଛି, ସେ କ୍ଷଣ ମୋର ସଂସାରରେ କ୍ଷତ୍ରିୟ ବିମର୍ଦ୍ଦନକାରୀ ଉଦ୍ଭୂତ ବୋଲି ଜାଣେ ନାହିଁ ? ତାହାର ଶିର ଆଜି ବସୁଧାରେ ଲୋଟାଇ ଦେବି । (ତାହାର ମସ୍ତକ ଛେଦନ କରିବି )"

୩୫ଶ ପଦ—ଏହା ଶୁଣି ଦଶରଥ କହିଲେ, "ଏ କ୍ଷୀରକଣ୍ଠ ଶିଶୁକୁ ମାରି କେଉଁ ଯଶ ଲାଭ କରିବ ?" ରାଜାଙ୍କର ଏ ବାଣୀ ନ ଶୁଣି ପର୍ଶୁରାମ ବିକ୍ରମ ପ୍ରକାଶ କରି ରାମଙ୍କ ନିକଟକୁ ଗଲେ ।

ବକ୍ରା ଲକ୍ଷ୍ମଣ କାହାକୁ ପଚାରିଲ ପ୍ରାୟେ ।
ବାତୁଳେ କାହୁଁ ପ୍ରବେଶ ଅମ୍ଭ ସୈନ୍ୟ ହୁଏ ଯେ ।୩୬।
ବ୍ୟାଳେ ଲେଷ୍ଟୁ ଚୁମ୍ବାଇଲା ପ୍ରାୟ ଭୃଗୁ କହି ।
ବିଷକଣ୍ଠେ କ୍ଷୀରକଣ୍ଠ ବୋଲୁଥିଲା କେହି ଯେ ।୩୭।
ବିଷକଣ୍ଠ ଯେବେ ତବଗୁରୁ ହେବା ସ୍ତବ ।
ବରଣ କି ଅଛିଅଛ କହୁଁ କହେ ଜବ ଯେ ।୩୮।
ବଂଶଧନୁ କୀଟଭେଦ ଯୋଗୁଁ ଥିଲା ହୋଇ ।
ବିଭଞ୍ଜିଲେ ତାହା ମହାବୀର କେ ବୋଲଇ ଯେ ।୩୯।
ବଧ ଅଗ ତାକୁ ବଧିବା ପଛେ ତୁହି ।
ବୋଲେ ଅନ୍ଧମତେ ଚନ୍ଦ୍ର ସୂର୍ଯ୍ୟ ଯଥା ନାହିଁ ଯେ ।୪୦।

---

୩୭ଶ ପଦ—ବ୍ୟାଳ—ସର୍ପ । ଲେଷ୍ଟୁ—ଢେଲା । ବିଷକଣ୍ଠ—ସର୍ପ । କ୍ଷୀରକଣ୍ଠ—ଶିଶୁ ।

---

୩୬ଶ ପଦ—ଗର୍ବୋନ୍ମତ୍ତ ଓ କ୍ରୁଦ୍ଧ ପଶୁରାମଙ୍କୁ ଦେଖି ଲକ୍ଷ୍ମଣ ଅନ୍ୟ କାହାକୁ ପଚାରିଲା ପ୍ରାୟ କହିଲେ, "ପାଗଳଟିଏ କାହୁଁ ଆସି ଅମ୍ଭ ସୈନ୍ୟ ମଧ୍ୟରେ ପ୍ରବେଶ କଲା ?"

୩୭ଶ ପଦ—ଲକ୍ଷ୍ମଣଙ୍କ ଉପହାସ ବଚନ ଶୁଣି ସର୍ପକୁ ଢେଲା ପକାଇଲା ପ୍ରାୟ ପଶୁରାମ ଗର୍ଜନ କରି କହିଲେ, "ଏମାନେ ତ ବିଷକଣ୍ଠ (ସର୍ପ) ଅଟନ୍ତି; କିଏ ଏହାଙ୍କୁ କ୍ଷୀରକଣ୍ଠ ବୋଲି କହୁଥିଲା ?"

୩୮ଶ ପଦ—ଲକ୍ଷ୍ମଣ ଉତ୍ତର ଦେଲେ, "ଯେବେ ଆମ୍ଭକୁ ବିଷକଣ୍ଠ ବୋଲି କହୁଛ (ବିଷକଣ୍ଠ ତ ମହାଦେବ) ତୁମ୍ଭର ଆମ୍ଭେ ଗୁରୁ ହେଲୁଁ । ତେଣୁ ସ୍ତୁତି କରିବାକୁ ଆସିଅଛ କି ?" ଏହା ଶୁଣି ପଶୁରାମ କୋପରେ କହିଲେ ;—

୩୯ଶ ଓ ୪୦ଶ ପଦ—"ବହୁଦିନରୁ ଘୁଅହୋଇ ରହି ଥିବାରୁ ବାଉଁଶରେ ଧନୁ ପୋକସ ହୋଇଥିଲା । ତାହାକୁ ଭାଙ୍ଗି ଯେ ମହାବୀର ବୋଲାଉଛି ତାହାକୁ ଆଗ ବଧ କରିବା, ତୁମ୍ଭ ପରେ ବଧ ହେବୁ ।" ଏହା ଶ୍ରବଣ କରି ଲକ୍ଷ୍ମଣ କହିଲେ, "ଅନ୍ଧ ଯେପରି ନୟନରେ ଚନ୍ଦ୍ର ସୂର୍ଯ୍ୟ ନାହାନ୍ତି, ସେହିପରି ତୁମ୍ଭେ କହୁଛ ଯେ, ଅନ୍ୟ ବଳିଷ୍ଠ କେହି ନାହାନ୍ତି । ଯେପରି ଅନ୍ଧ ନ ଜାଣିଲେ ସୁଦ୍ଧା ଚନ୍ଦ୍ର ସୂର୍ଯ୍ୟ ଅଛନ୍ତି, ସେହିପରି ତୁମ୍ଭେ ଜାଣି ନ ପାରିଲେ ହେଁ ବଳିଷ୍ଠ ବୀରମାନେ ଅଛନ୍ତି ।

ବିଭ୍ରାଜ ପରଶୁରାମ ଶ୍ରୀରାମ ଭେଟିଲା ।
ବିବାଦୀ ତାହାଙ୍କୁ ସେହି ସେ କାଳେ ଘୋଟିଲା ଯେ ।୪୧।
ବିଷମ ସମସ୍ୟା ହେବା ପୂରଣ ଏଠାରେ ।
ବିଦିତ ଖଣ୍ଡେନ୍ଦୁ କିବା ପୂର୍ଣ୍ଣେନ୍ଦୁ ଅଗରେ ଯେ ।୪୨।
ବିଧୁ ଅବତାର ଦୁହିଁଙ୍କର ସେହିପରି ।
ବିନ୍ୟସ୍ତ ଦ୍ୱିତୀୟା ଆଗେ ପଛେ ରାକା କରି ଯେ ।୪୩।
ବୋଇଲେ ରଘୁନନ୍ଦନ ଅହେ ବିପ୍ରବର ।
ବାହୁଜ ବୃତ୍ତିରେ କିପାଁ ପଇଲ ଏଠାର ଯେ ।୪୪।
ବ୍ୟାଜ ଏ ଶଙ୍କର ପ୍ରାୟେ କୁଠାରେ ତ ବହି ।
ବୃତ୍ତି କରନ୍ତ ସମିଧ ବିକ୍ରୟ କି କହି ହେ !

---

୪୩ଶ ପଦ—ବିଧୁ—ଚନ୍ଦ୍ର, ବିଷ୍ଣୁ । ରାକା— ପୂର୍ଣ୍ଣିମାତିଥି ।
୪୪ଶ ପଦ —ବାହୁଜ—କ୍ଷତ୍ରିୟ ।
୪୫ଶ ପଦ—ବ୍ୟାଜ—ଛଳ, କପଟ । ସମିଧ—କାଠ ।

---

୪୧ଶ ପଦ—ଦୀପ୍ତିମନ୍ତ ହୋଇ ପରଶୁରାମ ଶ୍ରୀରାମଙ୍କୁ ଭେଟିଲେ । ସେ ସମୟରେ ସେହି ଏକା ତାହାଙ୍କର ବିବାଦୀ ହେବାର ଦେଖାଗଲା । ( ବିଷ୍ଣୁ ବିଷ୍ଣୁଙ୍କର ବିବାଦୀ ହେଲେ ।)

୪୨ଶ ପଦ—ଏଠାରେ ବିଷମ ସମସ୍ୟା ପୂରଣ ହେଲା । ପୂର୍ଣ୍ଣଚନ୍ଦ୍ର ଅଗରେ ଖଣ୍ଡଚନ୍ଦ୍ର ପ୍ରକାଶିତ ହେଲା କି ? ( ରାମଚନ୍ଦ୍ର ପୂର୍ଣ୍ଣାବତାର ଓ ପରଶୁରାମ ଅଂଶାବତାର, ତେଣୁ ରାମଚନ୍ଦ୍ର ପୂର୍ଣ୍ଣଚନ୍ଦ୍ର ଓ ପରଶୁରାମ ଖଣ୍ଡଚନ୍ଦ୍ର ) ।

୪୩ଶ ପଦ—ବିଷ୍ଣୁ ଓ ଚନ୍ଦ୍ର ଦୁହିଙ୍କର ଅବତାର ଏକାପରି ହୋଇଅଛି । ଆଗ ଦ୍ୱିତୀୟା ଚନ୍ଦ୍ର, ଦେଖାଦେଇ ପରେ ପୂର୍ଣ୍ଣଚନ୍ଦ୍ର ପ୍ରକାଶିତ ହେଲାପରି ଆଗ ଅଂଶାବତାର ପରଶୁରାମ ଜାତ ପରେ ପୂର୍ଣ୍ଣାବତାର ରାମଚନ୍ଦ୍ର ଜନ୍ମ ଗ୍ରହଣ କଲେ ।

୪୪ଶ ପଦ—ପରଶୁରାମଙ୍କୁ ସମ୍ମୁଖରେ ଦେଖି ରାମଚନ୍ଦ୍ର କହିଲେ, "ଅହେ ଦ୍ୱିଜ ଶ୍ରେଷ୍ଠ ! କ୍ଷତ୍ରିୟ ବୃତ୍ତିରେ କାହିଁକି ଏଠାକୁ ଆସିଲ ?" (ଅର୍ଥାତ୍ ତୁମ୍ଭେ ତ କ୍ଷତ୍ରିୟ ନୁହଁ ) ।

୪୫ଶ ପଦ—ପରଶୁରାମ କୁଠାର ଧରିଥିବାର ଦେଖି ବକ୍ରୋକ୍ତି କରି ରାମ କହିଲେ, "ତୁମ୍ଭର କ୍ଷତ୍ରିୟ ବୃତ୍ତି ମଧ୍ୟ ଛଳ ପୂର୍ଣ୍ଣ । ତୁମ୍ଭେ ଶଙ୍କର ପ୍ରାୟ କୁରାଢ଼ୀ ଗୋଟିଏ ତ ବହିଅଛ । ହୋମ କାଷ୍ଠ ବିକ୍ରୟ କରି ଜୀବିକା ଚଳାଅ କି ? ସତ କଥା କହ ।"

ବିଷ୍ଟର କରକ ପାଣି ବହିବାକୁ ଦେବା ।
ବ୍ରହ୍ମଣ୍ୟ ! ଅମ୍ଭେ ତୁମ୍ଭଙ୍କୁ ପୂଜନ କରିବା ହେ ।୪୬।
ବାଲ୍ମୀକ ଖଣ୍ଡ ବୃତ୍ତିକ ଅଶ୍ରେ କରିଥିଲେ ।
ବନ୍ଦ୍ୟ ଜଗତେ ସେ ସାଧୁ ଦର୍ଶନେ ହୋଇଲେ ଯେ ।୪୭।
ବିପ୍ରର ଏମନ୍ତ ଅପେଖିଲେ ଭଲ କଥା ।
ବ୍ୟଥା ଲଭ ରୈଣୁକେୟ ବୋଇଲେ ଏ ବୃଥା ଯେ ।୪୮।
ବନେ ପଶି ସ୍ତ୍ରୀଏ ତାଡ଼କା ନାମେ ହାଣି ।
ବହୁତ କାଳରୁ ଥୁଅ ଧନୁ ଭଙ୍ଗି ପୁଣି ଯେ ।୪୯।
ବୀରତ୍ୱ ପ୍ରକାଶୁ ଅଛୁ ମୋର ଧନୁ ଧର ।
ବିଗ୍ରହ କି ଅରମ୍ଭିବା ଦାଶରଥି ଠାରେ ଯେ ।୫୦।

---

୪୬ଶ ପଦ—ବିଷ୍ଟର - କୁଶାସନ । କରକ—କମଣ୍ଡଳୁ ।
୪୭ଶ ପଦ—ବନ୍ଦ୍ୟ—ପୂଜ୍ୟ— ।
୪୮ଶ ପଦ—ରୈଣୁକେୟ—ପରଶୁରାମ ।

---

୪୬ଶ ପଦ—"ହେ ବ୍ରହ୍ମନ୍ ! ଅମ୍ଭେ ତୁମ୍ଭଙ୍କୁ କୁଶ, କମଣ୍ଡଳୁ, ତମ୍ବା ପାଣି ବହନ କରିବାକୁ ଦେବା; ତୁମ୍ଭେ ଏ ତୁରଡ଼ୀ ବହିବା ଛାଡ଼ । ଅମ୍ଭେ ତୁମ୍ଭଙ୍କୁ ବ୍ରାହ୍ମଣ ରୂପେ ପୂଜା କରିବା ।"

୪୭ଶ ଓ ୪୮ଶ ପଦ—ପୂର୍ବେ ବାଲ୍ମୀକ ଖଣ୍ଡବୃତ୍ତିକ ଆଶ୍ରୟ କରିଥିଲେ । ସେ ପରେ ସାଧୁଙ୍କ ଦର୍ଶନରେ ସଂସାରରେ ପୂଜନୀୟ ହେଲେ । ତୁମ୍ଭେ ଯଦି ସେହିପରି ଆଶା କରି ଅର୍ଥାତ୍ ଆମ୍ଭ ଦର୍ଶନରେ ପୂଜନୀୟ ହେବ ବୋଲି ଇଚ୍ଛା କରି ଆସିଥାଅ, ତେବେ ଭଲ କଥା । "ରାମଙ୍କ ବକ୍ରୋକ୍ତି ଶୁଣି ରେଣୁକା ପୁତ୍ର ପରଶୁରାମ ଦୁଃଖ ଲଭି କହିଲେ, "ସେ ସବୁ ବୃଥା କଥା ।"

୪୯ ଓ ୫୦ତମ ପଦ —"ବନରେ ପଶି ତାଡ଼କା ନାମକ ଗୋଟିଏ ସ୍ତ୍ରୀକୁ ହାଣି, ପୁଣି ବହୁ ଦିନୁ ଥୁଆ ହୋଇଥିବା ପୋକଖିଆ ଓ ଅସାର ଧନୁ ଭାଙ୍ଗି ବୀରପଣିଆ ପ୍ରକାଶ କରୁଅଛୁ । ଏବେ ମୋର ଧନୁକୁ ଧାରଣ କର । ତୁ ତ ଦଶରଥର ପୁତ୍ର; ତୋ ସହିତ କାହିଁ କଳହ ଆରମ୍ଭ କରିବା ? (ମୋର ଦିଗ୍ବିଜୟ ସମୟରେ ଦଶରଥ ରାଣୀମାନଙ୍କ ପଣତ ଉହାଡ଼ରେ ଲୁଚିଥିଲେ, ମୁଁ ତାଙ୍କୁ ଖାତିର କରେ ନାହିଁ, ତୁ ତ ତାଙ୍କ ପୁଅ, ତୋତେ ବା ପଗୁରେ କିଏ ?) ଅନ୍ୟାର୍ଥଃ—ତୁ ତ ଦାଶରଥି ଅର୍ଥାତ କୈବର୍ତ୍ତ ଶ୍ରେଷ୍ଠ ତୋ ସହିତ ବିବାଦ କରିବା ଅଶୋଭନୀୟ ।

ବାମକର ବଢ଼ାଇଲେ ରାମ ଶୁଣି କଥା
ଚଢ଼ାଇ ଦେଲେଁ ସେ ଧନୁ ବସ୍ତୁ ତେଜହରି ଭୂପ । ୫୧ ।
ବିମନା ଜାନକୀ ଯେ ସପତ୍ନୀ ଭୟ ଗୁଣି ।
ଭଙ୍ଗାଇ ଋଷି ଏତ ପୁଣ ଗୃହେ ଆଣି ଯେ । ୫୨ ।
ବୋଧିଲେ ବଲ୍ଲଭା କାନ୍ତ କର୍ଣ୍ଣପାଶେ କହି ।
ବଳ ଜାଣେ ବିବାହକାର୍ଯ୍ୟ ଏ ନୋହେ ସୁହୁ ଗୋ । ୫୩ ।
ବସିବା ଠାବରେ ଗୁଣ ଦେଇ ସନ୍ଧି ଶର ।
ବନ୍ଧିବା କାହିଁକି ବୋଲି ପଚାରିଲେ ବୀର ଯେ । ୫୪ ।
ବୋଲେ ପରଶୁରାମ ମୋ ପାପସ୍ୱର୍ଗ ଛେଦ ।
ବିଚ୍ଛେଦିଲେ ରାମଚନ୍ଦ୍ର ହେଲେ ପ୍ରମୋଦ ଯେ । ୫୫ ।

---

୫୧ଶତ୍ ପଦ—ରାମ ପରଶୁରାମଙ୍କ ବଚନ ଶୁଣି ବାମକର ବଢ଼ାଇଲେ । ପରଶୁରାମ ଧନୁ ବଢ଼ାଇ ଦେବାରୁ ସେ ଧନୁ ସହିତ ତାଙ୍କର ବସ୍ତୁ ତେଜକୁ ହରଣ କରି ନେଲେ ।

୫୨ଶତ୍ ପଦ—ଏହା ଦେଖି ଜାନକୀ ତାଙ୍କର ଅଉ ଏକ ସଉତୁଣୀ ହେବା ଆଶଙ୍କାରେ ଦୁଃଖିତ ହୋଇ ଭାବିଲେ, 'ଜନକ ଋଷିଙ୍କର ଗୋଟିଏ ଧନୁ ଭଙ୍ଗି ରାମଚନ୍ଦ୍ର ମୋତେ ବିଭା ହେଲେ । ପୁଣି ଆଉ ଏକ ଋଷି ଗୋଟିଏ ଧନୁ ଆଣି ଭଙ୍ଗାଉ ଅଛନ୍ତି, ତାଙ୍କ ଝିଅଙ୍କୁ ନିଶ୍ଚୟ ବିବାହ ହେବେ ।'

୫୩ଶତ୍ ପଦ—ସୀତାଙ୍କର ମନ ଦୁଃଖ ଜାଣି ପାରି ରାମଚନ୍ଦ୍ର ପ୍ରିୟାର କାନରେ ଏହା କହି ବୋଧିଲେ, "ହେ ସଖି ! ଏ ଧନୁଭଙ୍ଗ ବିବାହ କାର୍ଯ୍ୟ ନୁହେ । ଏହାଦ୍ୱାରା ଏ ଋଷି ଆମ୍ଭର ବଳ ପରୀକ୍ଷା କରୁଅଛି । ତୁମ୍ଭେ ଦୁଃଖିତ ହେବାର କାରଣ କିଛି ନାହିଁ ।"

୫୪ଶତ୍ ପଦ—ବୀର ରାମ ରାମଚନ୍ଦ୍ର ବସିବା ଅବସ୍ଥାରେ ଧନୁରେ ଗୁଣ ଦେଇ, ତହିଁରେ ଶର ସନ୍ଧାନ କରି ପରଶୁରାମଙ୍କୁ ପଚାରିଲେ, 'କାହାକୁ ବିନ୍ଧିବା କହ ।" (ଏହାଦ୍ୱାରା ପରଶୁରାମଙ୍କର ଦର୍ପ ଚୂର୍ଣ୍ଣ ଓ ରାମଚନ୍ଦ୍ରଙ୍କର ବୀରତ୍ୱ ପ୍ରକାଶ, ଉଭୟ ସୂଚିତ ହେଉ ) ।

୫୫ଶତ୍ ପଦ—ରାମଙ୍କର ବଚନ ଶୁଣି ପରଶୁରାମ ନମ୍ର ହୋଇ କହିଲେ, "ମୋର ପାପସ୍ୱର୍ଗକୁ ଛେଦନ କର ।" ରାମଚନ୍ଦ୍ର ତାଙ୍କର ପାପସ୍ୱର୍ଗକୁ ଶର ଦ୍ୱାରା ଖଣ୍ଡନ କଲେ । ପରଶୁରାମ ଆନନ୍ଦ ହେଲେ ।

ବାଦ୍ୟକ୍ରେ ପ୍ରଦକ୍ଷିଣ କର ଦେବବୃନ୍ଦ ।
ବାଜଇ ବିବିଧ ବାଦ୍ୟ ବଳେ କୃପାବ୍ଧି ସେ । ୫୬ ।
ବଳଗଣ୍ଡି ଠାରେ ରହି ଯଥା ଜଗନ୍ନାଥ ।
ବଳେ ପୁଣି ଜନକ ସନ୍ତୋଷେ ଗୁଳ ରଥ ସେ । ୫୭ ।
ବିସ୍ତାର ତ ଜୟ ଶବ୍ଦ ହେଲା ଦଣ୍ଡକ ।
ବଡ଼ ଦେଉଳ ସାଦକରେ ହେଲେ ପରବେଶ ସେ । ୫୮ ।
ବର୍ଷରେତ ବେନି ମହୋତ୍ସବ ଅବଲୋକ ।
ବୃନ୍ଦାରକେ ଏହା ମିଶ୍ରକରଣେ ବଦେବ ସେ । ୫୯ ।
ବଚନ ନାହିଁ ଯହିଁର ଉପମା ତାକୁ ସେ ।
ବଇକୁଣ୍ଠ ମର୍ତ୍ତ୍ୟେ ସେହି ପୁରେ ବିଳସେ ସେ । ୬୦ ।

---

୫୬ଶତ ପଦ—ବୈଷ୍ଣବଧନୁ ଧରିବା ସମର୍ଥ ହେବାରୁ ପର୍ଶୁରାମ ରାମଚନ୍ଦ୍ରଙ୍କୁ ସ୍ୱୟଂ ବିଷ୍ଣୁ ବୋଲି ଜାଣି ପାରି, ତାଙ୍କୁ ପ୍ରଦକ୍ଷିଣ କରି ବାହୁଡ଼ି ଗଲେ । ତତ୍ପରେ ନାନା ପ୍ରକାର ବାଦ୍ୟ ବାଜିଲା, କୃପାନିଧି ରାମ ବଳେ ଚଳେ ।

୫୭ଶତ ପଦ—ଯେପରି ଜଗନ୍ନାଥ ବଳଗଣ୍ଡି ଠାରେ ରହି ଲୋକମାନଙ୍କର ସନ୍ତୋଷ ବିଧାନ କରି ପରେ ରଥ ଚଳାଇ ନିଅନ୍ତି, ସେହିପରି ରାମଚନ୍ଦ୍ର ବାଟ ସମସ୍ତ ରହି ପର୍ଶୁରାମଙ୍କୁ ଜିଣିବାଦ୍ୱାରା ଜନକ ଦଶରଥଙ୍କୁ ସନ୍ତୋଷ ପ୍ରଦାନ କରି ପରେ ରଥ ଚଳାଇ ଗଲେ ।

୫୮ଶତ ପଦ—ଜୟଧ୍ୱନି ଦଣ୍ଡକରେ ବିସ୍ତାରିତ ହେଲା । ବଡ଼ ଦେଉଳ ସଦୃଶ ଅଯୋଧ୍ୟା ନଗରୀରେ ରାମଚନ୍ଦ୍ର ପ୍ରବେଶ ହେଲେ । ( ବାହୁଡ଼ା ସମୟରେ ଜୟଶବ୍ଦ ଦ୍ୱାରା ଦଣ୍ଡକ ପୂର୍ଣ୍ଣ କରି ଜଗନ୍ନାଥ ବଡ଼ ଦେଉଳରେ ପ୍ରବେଶ କରନ୍ତି । ସେହିପରି ରାମଚନ୍ଦ୍ର ଅଯୋଧ୍ୟା ନଗରୀରେ ଜୟ କୋଳାହଳ ମଧ୍ୟରେ ପ୍ରବେଶ କଲେ ।

୫୯ତମ ପଦ—ବର୍ଷକରେ ଏହି ଦୁଇ ମହୋତ୍ସବ [ ଜଗନ୍ନାଥଙ୍କ ବାହୁଡ଼ା ମହୋତ୍ସବ ଓ ରାମଚନ୍ଦ୍ରଙ୍କ ବିବାହ ମହୋତ୍ସବ ] ଦେବତାମାନେ ଓ ଶ୍ରେଷ୍ଠ ଲୋକମାନେ ଦର୍ଶନ କରୁ ଅଛନ୍ତି । ଅତଏବ ଏ ଦୁଇ ମହୋତ୍ସବର ସେ ସମାନତା ଅଛି—ଏହା ବିବେଚିତ ହେଉଅଛି ।

୬୦ତମ ପଦ—ଭଗବାନ ରାମଚନ୍ଦ୍ର ଯେଉଁ ପୁରରେ ବିହାର କରନ୍ତି, ସେହି ମର୍ତ୍ତ୍ୟ ବୈକୁଣ୍ଠ ରୂପ ଅଯୋଧ୍ୟାର ଶୋଭାକୁ କଥାରେ ବର୍ଣ୍ଣନା କରି ହେବ ନାହିଁ, ତାର ଉପମା କେବଳ ସେହି । ( ଯେଉଁ ମର୍ତ୍ତ୍ୟବୈକୁଣ୍ଠ ନୀଳାଚଳରେ ଜଗନ୍ନାଥ ବିହାର କରନ୍ତି, ତାର ଉପମା କେବଳ ସେହି । ତାର ଶୋଭା ବର୍ଣ୍ଣନା କରି ହେବ ନାହିଁ ) ।

ବଳେ ଛଡ଼ାଇ ଚନ୍ଦ୍ରୁ ସେ ସୁଧାକର ପଦ ।
ବିଶଦ ହାସେ ଉଡ଼ାଇ ରଖେ ବିଷ୍ଣୁପଦ ଯେ ।୨୧।
ଶକ୍ର ପଦ ସମ୍ପଦ ଲୁଟିଣ ରତ୍ନମୟେ ।
ଚଢ଼ାଇ ପତାକା କର ଆଣିଲାର ପ୍ରାୟେ ଯେ ।୨୨।
ବାଟିକା ଯହିଁର କରେ ନନ୍ଦନ ନିନ୍ଦନ ।
ବଲ୍ଲିକା କୁସୁମ ପାରିଜାତକ ବନ୍ଦନ ଯେ ।୨୩।
ବାଦେ ଜିଣେ କଳ୍ପଦ୍ରୁମ ଯହିଁ ବୃକ୍ଷପନ୍ତି ।
ଅଦୃଶ୍ୟ ଫଳ ସେ ଦୃଶ୍ୟ ଫଳେ ଏ ସଜନ୍ତି ସେ ।୨୪।
ଅମୂଲ କ୍ଲେଶେ ଲଭ୍ୟ ସେ ଏ ଲଭ୍ୟ ଅକ୍ଲେଶେ ।
ବିଦ୍ୟାଧରୁ ବଳି ପିକ ସପ୍ତସ୍ୱର ଘୋଷେ ଯେ ।୨୫।

---

୨୧ତମ ପଦ—ସୁଧାକର—ଚନ୍ଦ୍ର । ବିଶଦ—ଶୁକ୍ଲ । ବିଷ୍ଣୁପଦ—ଆକାଶ ।

୨୩ତମ ପଦ—ବାଟିକା—ପୁଷ୍ପୋଦ୍ୟାନ । ବଲ୍ଲିକା—ଲତାସମୂହ ।

---

୨୧ତମ ପଦ—ସେ ନଗରର ଅଟ୍ଟାଳିକାଗୁଡ଼ିକ ବଳାତ୍କାରରେ ଚନ୍ଦ୍ରଠାରୁ ସୁଧାକର ପଦକୁ ଛଡ଼ାଇ ଆଣିଅଛି ଏବଂ ଶୁଭ୍ର ହାସରେ ଚନ୍ଦ୍ରକୁ ଉଡ଼ାଇ ନେଇ ଆକାଶ ମଧ୍ୟରେ ରଖିଅଛି । ( ଅଟ୍ଟାଳିକାଗୁଡ଼ିକ ଚୂନଲିପ୍ତ ହୋଇଥିବାରୁ ଶୁଭ୍ରତାରେ ଚନ୍ଦ୍ରର ଜ୍ୟୋତ୍ସ୍ନାକୁ ବଳି ପଡ଼ିଅଛି ) ।

୨୨ତମ ପଦ—ସେ ପୁର ପତାକା ରୂପ କରକୁ ବଢ଼ାଇ ଯେପରି ସ୍ୱର୍ଗର ସମସ୍ତ ସମ୍ପତ୍ତି ଲୁଟି କରି ଆଣି ନଜେ ରତ୍ନପୂର୍ଣ୍ଣା ହୋଇଅଛି । ( ପୁରସ୍ଥ ଅଟ୍ଟାଳିକାମାନଙ୍କର ପତାକା ବହୁତ ଉଚ୍ଚରେ ଉଡ଼ୁଅଛି ଓ ସେ ପୁରରେ ବହୁତ ଧନରତ୍ନ ରହିଅଛି ) ।

୨୩ତମ ପଦ—ଯେଉଁ ପୁରର ପୁଷ୍ପଉଦ୍ୟାନ ସ୍ୱର୍ଗର ନନ୍ଦନବନକୁ ନିନ୍ଦା କରେ ଓ ତନ୍ମଧ୍ୟସ୍ଥ ଲତାମାନଙ୍କରେ ଫୁଟିଥିବା ପୁଷ୍ପ ପାରିଜାତ କୁସୁମ ଦ୍ୱାରା ବନ୍ଦିତ ହୋଇଅଛି, ( ଲତାପୁଷ୍ପ ପାରିଜାତ ଅପେକ୍ଷା ସୌରଭଯୁକ୍ତ ଓ ସୁନ୍ଦର ) ।

୨୪ତମ ପଦ—ଯେଉଁ ପୁରର ବୃକ୍ଷସମୂହ ବିବାଦରେ କଳ୍ପଦ୍ରୁମକୁ ଜୟ କରିଅଛି, କାରଣ କଳ୍ପଦ୍ରୁମସବୁ ଅଦୃଶ୍ୟ ଫଳ ଦ୍ୱାରା ଶୋଭିତ ହୁଅନ୍ତି, ମାତ୍ର ଯେଉଁ ପୁରର ବୃକ୍ଷମାନେ ଦେଖା ଯାଉଥିବା ଫଳରେ ଆନତ ହୋଇ ପଡ଼ନ୍ତି ।

୨୫ତମ ପଦ—ସେହି କଳ୍ପଦ୍ରୁମର ଫଳ ବହୁ କଷ୍ଟରେ ମିଳିଥାଏ, ମାତ୍ର ଏ ନଗରସ୍ଥ ବୃକ୍ଷମାନଙ୍କର ଫଳ ଅକ୍ଲେଶରେ ପ୍ରାପ୍ତ ହୁଏ । ନନ୍ଦନବନରେ ବିଦ୍ୟାଧରମାନେ ସପ୍ତସ୍ୱରରେ ଗାନ କରୁଥାନ୍ତି, ମାତ୍ର ଏ ନଗରସ୍ଥ ଉଦ୍ୟାନରେ ତାଙ୍କଠାରୁ ଶ୍ରେଷ୍ଠ କୋକିଳମାନେ ସପ୍ତସ୍ୱରରେ ଗାନ କରନ୍ତି ।

ବୀଣା ତେଜନ୍ତେ ନାରଦ ଶୁକପଢ଼ା ଶୁଣି ।
ବାହ୍ୟବନ୍ତ ତହିଁ ସୀତା ସେଜ ରଘୁମଣି ଯେ ।୨୬।
ବାହୁ ଅଣିକ ଅଣନ୍ତ ଜାନୁରେ ବସାଇ ।
ବାଙ୍କି ଗଙ୍ଗା ଛବି ଲଭେ କୋଳାକୋଳି ହୋଇ ଯେ ।୨୭।
ବକ୍ଷେ ହସ୍ତ କମ୍ବରେ କରାଇଁ ଶୟନ ।
ବିଦ୍ୟୁତ କେଳି ଉଜ୍ଜ୍ୱଳ ଜଳଦ ଲଣ୍ଠନ ଯେ ।୨୮।
ବନ୍ଧୁକ ଭୃଙ୍ଗ ବନ୍ଧୁତା ଓଷ୍ଠପାନବେଳେ ।
ବୃଷଧ୍ୱଜ ପୂଜନ ଜବଜେ ବର ଦେଲେ ଯେ ।୨୯।

---

୨୮ତମ ପଦ—ବକ୍ଷେ—ବକ୍ଷରେ ।

୨୯ତମ ପଦ—ବନ୍ଧୁକ—ବନ୍ଧୁଲି ପୁଷ୍ପ । ଭୃଙ୍ଗ—ଭ୍ରମର । ବୃଷଧ୍ୱଜ—ଶିବ ।

---

୨୬ତମ ପଦ—ଯେଉଁ ପୁରର ବଟବୃକ୍ଷରେ ଥିବା ଶୁକମାନଙ୍କର ପଢ଼ା ଶୁଣିଲେ ନାରଦ ବୀଣାକୁ ତ୍ୟାଗ କରିବେ, ଏହିପରି ଯେ ଅଯୋଧ୍ୟାପୁରୀ ( ସର୍ବ ଶୋଭାର ଆଧାର ) ତହିଁରେ ରାମଚନ୍ଦ୍ର ସୀତାଙ୍କୁ ସେଜ ବିହାର କରନ୍ତି ।

୨୭ତମ—ରାମଚନ୍ଦ୍ର ସୀତାଙ୍କୁ କୋଳରେ ବସାଇବା ସମୟରେ, ବିଷ୍ଣୁ ଲକ୍ଷ୍ମୀଙ୍କୁ କୋଳରେ ଧାରଣ କରି ଯେପରି ଶୋଭା ପାଆନ୍ତି, ସେହିପରି ଶୋଭିବନ୍ତ ଦେଖାଗଲେ । ପୁଣି ରାମ ସୀତା ପରସ୍ପର ଆଲିଙ୍ଗନ କରିବା ସମୟରେ ସମୁଦ୍ର ଗଙ୍ଗାଙ୍କୁ ଆଲିଙ୍ଗନ କରି ଯେପରି ଦେଖାଯାନ୍ତି, ସେହି ଶୋଭା ଧାରଣ କଲେ ।

୨୮ତମ ପଦ—ରାମଚନ୍ଦ୍ର ଉତ୍ସୁକ ଭାବରେ ବକ୍ଷସ୍ଥଳରେ ସୀତାଙ୍କୁ ଶୟନ କରାଇଲାବେଳେ, ମେଘରେ କେଳି କରୁଥିବା ବିଦ୍ୟୁତର ଉଜ୍ଜ୍ୱଳତାକୁ ଲଣ୍ଠନ କଲେ । ( ମେଘ ବକ୍ଷରେ ବିଜୁଳି ଚମକିଲେ ଯେପରି ସୁନ୍ଦର ଦିଶେ—ତା ଅପେକ୍ଷା ବେଶି ସୁନ୍ଦର ଦିଶିଲେ ) ।

୨୯ତମ ପଦ—ରାମଚନ୍ଦ୍ର ସୀତାଙ୍କର ଅଧର ଚୁମ୍ବନ କଲାବେଳେ ଭୃଙ୍ଗ ବନ୍ଧୁଲି ପୁଷ୍ପରୁ ମଧୁପାନ କରିବା ଶୋଭାକୁ ଧାରଣ କଲେ । ସୀତାଙ୍କ ସ୍ତନ ଦ୍ୱୟରେ ହସ୍ତ ଦେଉଁବେଳେ ଶମ୍ଭୁଙ୍କୁ ପୂଜା କଲାପରି ବୋଧ ହେଉ ।

ବନଜେ ନୀଳଉତ୍ପଳ ପବନେ କି ଢଳେ ।
ବିମଳ ଗଣ୍ଡ ଚୁମ୍ବନେ ସେ ସ୍ୱଚ୍ଛ ବହୁଲେ ଯେ ।୭୦।
ବାହୁ ବଳରେ ଧରି ଦେଇଁ ଅସମପ୍ରବେଶୀ ।
ବାରିଦେ ପଶିଲା ପ୍ରାୟେ ଏକ ତାରା ଶଶୀ ଯେ ।୭୧।
ବାଗ୍‌ଦେବୀ ଗଣେଶ ତତ୍ତ୍ୱରେ ବାଦକୃତ ।
ବୃନ୍ତଉରେ ଜକ୍ତ ପ୍ରାନ୍ତଉକ୍ତରେ ଚେମନ୍ତ ଯେ ।୭୨।
ବିଧାତା ବଶରେ ଚିତ୍ରୁଦବସ ପ୍ରବେଶ ।
ବନେ ମୃଗୟା ଗମନ ଜନକ ଆଦେଶ ଯେ ।୭୩।
ବଣା ସେ ଖଡ୍‌ଗୀନ ହୋଇ ଖଡ୍‌ଗୀନ ସଙ୍ଗତ ।
ବନ୍ଧାଇଲେ ଗୃଧ୍ର ଶବରେଶ ସଙ୍ଗେ ମିତ ଯେ ।୭୪।

---

୭୦ ତମ ପଦ—ନୀଳୋତ୍ପଳ—ନୀଳକଇଁ । ବନଜ—ପଦ୍ମ ।
୭୪ ତମ ପଦ—ଖଡ୍‌ଗୀତ—ଗଣ୍ଡାପକ୍ଷୀ, ଖଡ୍‌ଗଧାରୀ ।

---

୭୦ ତମ ପଦ—ନୀଳକଇଁ ପବନ ଯୋଗେ ପଦ୍ମ ଉପରେ ଢଳିଲେ ଯେପରି ଦେଖାଯାଏ ରାମଚନ୍ଦ୍ର ସୀତାଙ୍କର ନିର୍ମଳ ଗଣ୍ଡ ଚୁମ୍ବିଲାବେଳେ ସେହିପରି ଦେଖାଗଲେ । ( ରାମଚନ୍ଦ୍ର ନୀଳବର୍ଣ୍ଣ ହେତୁ ନୀଳକଇଁ ସଦୃଶ, ସୀତା ପଦ୍ମ ସଦୃଶ ) ।

୭୧ ତମ ପଦ—ସୀତାଙ୍କ ବାହୁ ହସ୍ତରେ ଧରି ରାମଚନ୍ଦ୍ର [illegible] ମଧ୍ୟରେ ପ୍ରବେଶ କଲାବେଳେ, ଚନ୍ଦ୍ର ଗୋଟିଏ ତାରକା ସହିତ ମେଘ ମଧ୍ୟରେ ପଶିଲା ପ୍ରାୟ ଦେଖାଗଲେ ।

୭୨ ତମ ପଦ—ଉପବନର ଲତା କୁଞ୍ଜରେ ବସି ରାମ ଓ ସୀତା [illegible] ମନ୍ତ୍ର କଲାବେଳେ, ଗଣେଶ ଓ ସରସ୍ୱତୀ ତାଙ୍କ ତତ୍ତ୍ୱରେ ବିବାଦ କଲା ପ୍ରାୟ ବୋଧ ହେଲା ।

୭୩ ତମ ପଦ—ଏହିପରି କିଛିଦିନ ପରେ ଦୈବଯୋଗରେ [illegible] ପ୍ରବେଶ ହୁଅନ୍ତେ, ରାମଚନ୍ଦ୍ର ପିତାଙ୍କ ଆଦେଶ ପାଇ ମୃଗୟା କରିବା ପାଇଁ ବନକୁ ଗମନ କଲେ ।

୭୪ତମ ପଦ—ଖଡ୍‌ଗଧାରୀ ରାମଚନ୍ଦ୍ର ଖଡ୍‌ଗୀନ ଅର୍ଥାତ୍ ଗଣ୍ଡା [illegible] ଶିକାରୀ ହୋଇ ଅରଣ୍ୟ ମଧ୍ୟକୁ ଗଲେ ଓ ଗୃଧ୍ର ନାମକ ଶବରରାଜ ସହିତ ମିତ୍ରତା [illegible] ହେଲେ ।

ବାହୁଡ଼ ନଗରେ ଇବେ ଜାବେଣ ହୋଇ ସେ ।
ବିଦେହ ଗମନ କଲେ ଜନକ ଏ ଶେଷେ ଯେ ।୨୫।
ବିଲୋକନ ଅର୍ଥରେ ଭରତ ଷଣ୍ଢ ଘନ ।
ବପ୍ରା ବୈଦେହୀର କପଟଲେ ତୋଷମନ ଯେ ।୨୬।
ବାସିତା-ସୀତାକୁ ଭେଲ ନିକାଲ ବର୍ଣ୍ଣନ ।
ବଚରଭ ବସନ୍ତରେ କଳକଣ୍ଠ ସ୍ୱନ ଯେ ।୨୭।
ବିରୋଚନ ସୁଖଦାନ ଦରଶନ କରେ ।
ବନେ କେଳିକୃତ ରାଓ ଅଦର ନଣାରେ ଯେ ।୨୮।

---

୨୬ତମ ପଦ—ବପ୍ରା—ପିତା ।

୨୭ତମ ପଦ—ବାସିତା—ସୌରଭାନ୍ୱିତା, ଗୃହିଣୀ, ବସ୍ତ୍ରାଚ୍ଛାଦିତା । କଳକଣ୍ଠ—କୋକିଳ, ମୟୂର ବା ହଂସ, କପୋତ ।

୨୮ତମ ପଦ—ବିରୋଚନ—ଚନ୍ଦ୍ର, ସୂର୍ଯ୍ୟ, ଅଗ୍ନି । ବନ—ଜଳ, ଅରଣ୍ୟ, ଗୃହ । ନଣା—ହଳଦ୍ୱୀ, ସର୍ପ, ରେଙ୍ଗାଇ ।

---

୨୫ତମ ପଦ—ରାମଚନ୍ଦ୍ର ମୃଗାଙ୍କ ପଶୁଙ୍କଠାରେ ଯମ ପ୍ରାୟ ନାଶକର୍ତ୍ତା ହୋଇ ପୁରକୁ ବାହୁଡ଼ିଲେ । ଶ୍ରାଦ୍ଧବିଧି ଶେଷ ହୁଅନ୍ତେ ମିଥିଳାପତି ଜନକ (ଶ୍ରାଦ୍ଧ ପାଇଁ ନିମନ୍ତ୍ରିତ ହୋଇ ଆସିଥିବା) ସ୍ୱଦେଶ ବିଦେହକୁ ଗମନ କଲେ । ଅଥବା ରାମଚନ୍ଦ୍ର ଯମ ସଦୃଶ ପର୍ବତରେ ବିହାର କରି ଜୀବମାନଙ୍କୁ 'ବିଦେହ' କରାଇ ସେଠାରୁ ବାହୁଡ଼ି ଆସନ୍ତେ 'ଜନକ' ପିତା ଦଶରଥ ଶ୍ରାଦ୍ଧ କର୍ମ ସମାପନ କଲେ ।

୨୬ତମ ପଦ—ବୈଦେହୀଙ୍କ ପିତା ଭରତ ଷଣ୍ଢ ବୃଷଭରାଜି ଦେଖିବା ନିମିତ୍ତ ଆନନ୍ଦ ମନରେ ନିଜ ନଗରକୁ ଘେନାଇ ଗଲେ ।

୨୭ତମ ପଦ—'କଳକଣ୍ଠ' କୋକିଳ ସ୍ୱନ ସର୍ବତ୍ରରେ ପୂରିଥିଲା, ଏଥିରୁ ସେ ବସନ୍ତକାଳ 'କଳକଣ୍ଠ' ହଂସମାନଙ୍କର ସ୍ୱନରେ ସର୍ବ ଦିଗ ପୂର୍ଣ୍ଣ ହୋଇଥିଲା, ଏଥିରୁ ସେ ବର୍ଷାକାଳ ଏବଂ କଳକଣ୍ଠ ପାରାମାନଙ୍କ ସ୍ୱନରେ ଚତୁର୍ଦ୍ଦିଗ ପୂର୍ଣ୍ଣ ହୋଇଥିଲା, ଏଥିରେ ସେ ଶୀତକାଳ;—ଏହି ତିନିକାଳ ରାମଚନ୍ଦ୍ର ଶୋଭନଗନ୍ଧା ସୀତାଙ୍କ ସହିତ ବିହାର କଲେ ।

୨୮ତମ ପଦ—'ବିରୋଚନ' ଚନ୍ଦ୍ର, ଦର୍ଶନରେ ବର୍ଦ୍ଧିତ ସୁଖ ଦାନ କରେ, ଏଥିରୁ ସେ ହେମନ୍ତକାଳ, 'ବିରୋଚନ' ସୂର୍ଯ୍ୟ ଦର୍ଶନ [illegible]

ହେମନ୍ତେ ସୀତାର ଜାତ ହୁଅ ଉଷ୍ମ ।
ବସନ୍ତ ଗ୍ରୀଷ୍ମେ ଅତି ଶୀତଳ ତ ବର୍ଷ୍ମ ଯେ ।୭୯।
ବରଷା ଶରଦେ ଦୁଇ ମଧ୍ୟ ଥାଇ ବହି ।
ତଦଗ୍ଧହେମାଙ୍ଗୀ ଜଗସାରବାସୀ ସେହି ଯେ ।୮୦।
ବ୍ୟାପାର ଋତୁମାନଙ୍କେ ଲେଖା ନ ବସଇ ।
ସମୋହିତ ଋତୁରେ କେବଳ ତାଙ୍କୁ ଦେଇ ଯେ ।୮୧।

---

୭୯ତମ ପଦ—ବଗ୍ରହ—ଦେହ ।
୮୦ତମ ପଦ—ଜଡ଼—ଶୀତକାଳ । ବର୍ଷ୍ମ—ଦେହ ।
୮୧ତମ ପଦ—ଋତୁରେ—ପୁଷ୍ପବତୀ ସମୟରେ ।

---

ଯେଉଁ ସୁଖ, ତାକୁ ଦାନ ଅର୍ଥାତ୍ ଛେଦନ କରେ ( ଆକାଶ ମେଘାଚ୍ଛନ୍ନ ଥିବାରୁ ସୂର୍ଯ୍ୟ ଦର୍ଶନ ହୁଏ ନାହିଁ ) ଏପରି ଯେ ବର୍ଷାକାଳ ଏବଂ 'ବୈଶ୍ୱାନର' ଅଗ୍ନି ଦର୍ଶନରେ ସୁଖ ପ୍ରାପ୍ତ ହୁଏ, ଏପରି ଯେ ଶୀତକାଳ; ପୁଣି ଉପବନରେ କେଳି କରିବାକୁ ମାନସ ହୁଏ, ନଗରେ ହୁଳସ୍ଥଳର ଆଦର କରାଏ, ଏପରି ଯେ ବସନ୍ତକାଳ; ଜଳରେ ନୌକାରେ ବିହାର କରିବାକୁ ଇଚ୍ଛା ହୁଏ, ସ୍ୱଚ୍ଛରେ ସୁଖ ପ୍ରଦାନ କରେ, ଏପରି ଯେ ବର୍ଷାକାଳ; ପୁଣି ଗୃହରେ କ୍ରୀଡ଼ା କରିବାକୁ ଇଚ୍ଛା କଲେ, 'ନଗରେ' ତୁଳା ଶେଯରେ ଆଦର କରାଏ, ଏପରି ଯେ ଶୀତକାଳ;—ଏହି ଛଅକାଳ ସ୍ୱମତନ୍ତ୍ର ସୀତାଙ୍କ ସହିତ ବିହାର କରେ ।

୭୯ ଓ ୮୦ତମ ପଦ—ସୀତାଙ୍କ ଦେହରୁ ହେମନ୍ତ ଓ ଶୀତ ଏ ଦୁଇକାଳରେ ଉଷ୍ମ ଜାତ ହୁଏ; ବସନ୍ତ ଓ ଗ୍ରୀଷ୍ମ ଏ ଦୁଇକାଳରେ ତାଙ୍କ ଦେହ ଅତି ଶୀତଳ ହୋଇଥାଏ ଏବଂ ବର୍ଷା ଓ ଶରତ୍ ଏ ଦୁଇକାଳରେ ଦୁଇମତ ଯଥା—ଉଷ୍ମ ଓ ଶୀତଳ ହୋଇଥାଏ । କାରଣ, ସେ ତପ୍ତସ୍ୱର୍ଣ୍ଣବର୍ଣ୍ଣା (ଏହାଦ୍ୱାରା ଉଷ୍ଣତ୍ୱ ସୂଚିତ ହେଲା) ପୁଣି କର୍ପୂର ଓ ଚନ୍ଦନ ସୁବାସିନୀ (ଏହାଦ୍ୱାରା ଶୀତଳତ୍ୱ ପ୍ରକାଶିତ ହେଲା) ଅଟନ୍ତି ।

୮୧ତମ ପଦ—ଏହିସବୁ କାରଣ ହେତୁ ସୀତାଙ୍କ ଶୋଭା ସମ୍ପର୍କରେ ଋତୁମାନଙ୍କର ବ୍ୟାପାର—ଯେଉଁ ଋତୁରେ ଯାହାସବୁ ଘଟିବାର, ତାହା ଲେଖିଲେ ନାହିଁ । କେବଳ ପୁଷ୍ପବତୀ ସମୟରେ ଋତୁ ହେତୁ ଯାହା ସ୍ୱମତନ୍ତ୍ର ବାଧିତ ହେଉଥିଲେ ।

ବୀରବର ଉପଇନ୍ଦ୍ର ଭଞ୍ଜ କହେ ରସ ।
କଣ୍ୱୀଶୀପଦେ ପଣ୍ଡିତେ ଏ ସ୍ୱାଦୁରେ ରସ ହେ ।୮୨।

---

## ସପ୍ତଦଶ ଛାନ୍ଦ

### ରାଗ—ଧନାଶ୍ରୀ

ବସି ବଶିଷ୍ଠ ଜାବାଳ ବାମଦେବ କଶ୍ୟପ ସୁମନ୍ତ୍ର ଶୋଣେ
ବୋଲେ ଦଶରଥ ମୋର ମନୋରଥ ମଣ୍ଡାଇବ ରାଜଧାନୀ ।—
ବୀରବୃନ୍ଦରେ ଇନ୍ଦ୍ର ।
ବସୁ ନୃପପଦେ ରାମଚନ୍ଦ୍ର ।୧।
ବ୍ରହ୍ମା ସର୍ଜନାରେ ବ୍ରହ୍ମାଣ୍ଡ କାହିଁଛି ଅଜ ମୋ ତନୟ ସର ।
ବାଣେ ବାମଦେବ ଧନୁକୁ ଭାଙ୍ଗିଲା ବୀମେ ଭୃଗୁପତି ହାର ।
ବସୁପତି ସମସ୍ତ ।
ବସୁ ସେବାରେ ସେବକ ମତ । ୨ ।

---

୮୨ତମ ପଦ—ବୀରବର ଉପେନ୍ଦ୍ର ଭଞ୍ଜ କଣ୍ୱୀଶୀ ପଦରେ ଏ ରସ କହୁଛନ୍ତି । ହେ ପଣ୍ଡିତମାନେ ! ଏ ସ୍ୱାଦୁରେ ମଜ୍ଜ ।

---

## ସପ୍ତଦଶ ଛାନ୍ଦ

୧ମ ପଦ—ବଶିଷ୍ଠ, ଜାବାଳ, ବାମଦେବ, କଶ୍ୟପ, ସୁମନ୍ତ୍ର, ଏମାନଙ୍କୁ ସେମାନଙ୍କ ସଙ୍ଗରେ ବସି ଦଶରଥ କହିଲେ, "ମୋର ଇଚ୍ଛା, ବୀରମାନଙ୍କ ମଧ୍ୟରେ ଶ୍ରେଷ୍ଠ ରାମଚନ୍ଦ୍ର ସିଂହାସନର ବସୁ, ସେଥିପାଇଁ ନଗର ମଣ୍ଡାଇବା ।"

୨ୟ ପଦ—"ସଂସାରମଧ୍ୟରେ ବେଧତା ସର୍ଜନା ଭିତରେ ମୋ ପୁତ୍ର ସମାନରେ ଅଉ କିଏ ଅଛି କି ? (ଅଉ କେହି ନାହିଁ) ସେ ବାମହସ୍ତରେ ଶିବଧନୁ ଭାଙ୍ଗିଲା, ପର୍ଶୁରାମ ହୁକ୍କେଲ ହୋଇ ତା ପାଖରେ ହାରିଗଲେ । ନୃପତି ହେବେ କହିଲେ, ସମସ୍ତ ରାଜା ହେବେ ତାକୁ ସେବା କରିବେ ।"

ବୋଇଲେ ସୁମନ୍ତ ସେ ପୁଣି ଏମନ୍ତ ସୁଝିବେଟି ଦଣ୍ଡ୍ରଣ ।
ବଧକାରକ ଅନରଣ୍ୟ ରାଜାର ବଧରେ ହେବେ ନିପୁଣ ।
ବେଧାବଧାନ ପୁଣି ।
ବୈବସ୍ୱତବଂଶୀ ତୋଷ ଶୁଣି । ୩ ।
ବୁଝିଲେ ଲଗ୍ନ ମଗ୍ନ ହୋଇ ସୁଝିଲେ ମଙ୍ଗଳ ଦାନରେ ତହୁଁ ।
ବୃହସ୍ପତି ରାଶି ଅଷ୍ଟମେ ବଳାସୀ ନୃପତି ହୋଇବେ କେହୁ ।
ବାମଦେବ ଉତ୍ତର ॥
ବକ୍ତା ବଶିଷ୍ଠ ହେବେ ଈଶ୍ୱର । ୪ ।
ବପେ କି ପୃଚ୍ଛନ୍ତି ରାଜା ଦୀର୍ଘେ କହିଲେ ହେବେ ଦବ୍ୟଦ୍ଭୁତ ଭୋଗୀ ।
ବଇଶ୍ରବଣଙ୍କୁ ଜିଣିବେ ପୁଷ୍ପକ ମଣ୍ଡନେ ହୋଇ ସରାଗୀ ।
ବୋଲୁଅଛୁଁ ଏମନ୍ତ ।
ବୋଧ ନରଦେବ ଦେବଚିତ୍ତ । ୫ ।

---

୫ମ ପଦ—ଦବ୍ୟଦ୍ଭୁତଭୋଗୀ—ଅୈଶ୍ୱର୍ଯ୍ୟଭୋଗୀ, ଉତ୍ସଭୋଗୀ । ବଇଶ୍ରବଣ—କୁବେର, ରାବଣ । ପୁଷ୍ପକ—ଦେବଯାନ ବିଶେଷ, ରତ୍ନକଙ୍କଣ । ନରଦେବ—ରାଜା । ଦେବଚିତ୍ତ—ଦେବତାମାନଙ୍କର ଚିତ୍ତ ।

---

୩ୟ ପଦ—ସୁମନ୍ତ ଏହା ଶୁଣି କହିଲେ, "ତୁମ୍ଭ ପୂର୍ବ ପୁରୁଷ ଅନରଣ୍ୟ ରାଜାର ବଧକାରକ ରାବଣକୁ ମାରିବା ପାଇଁ ସେ ପୁଣି ସମର୍ଥ ହେବେ । ଏହାପରି ସେ ପ୍ରହରଣ ସୁଝିବେଟି କି ? ଏ ତ ବିଧାତାର ବିଧାନ ।" ଏହା ଶୁଣି ଦଶରଥ ତୋଷ ହେଲେ ।

୪ର୍ଥ ପଦ—ସେ ସ୍ଥାନରେ ବସି ଋଷିମାନେ ଋଷିମାନେ ନିବିଷ୍ଟ ଚିତ୍ତରେ ଶୁଭ ଲଗ୍ନ ବୁଝିଲେ । ମଙ୍ଗଳ କ୍ୟସ୍ଥରେ ଥିବାର ସୁଝିଲେ ( ମଙ୍ଗଳକୁ ଖଣ୍ଡିବାର ସୁଝିଲେ ) । ରାଶିର ଅଷ୍ଟମରେ ବୃହସ୍ପତି ସ୍ନେହୀ ହୋଇ ରହିଅଛନ୍ତି । ସେ ରାଜା କିପରି ହେବେ ? ( ରାମଚନ୍ଦ୍ରଙ୍କର ଧନୁରାଶି, ତାହାର ଅଷ୍ଟମ କର୍କଟ ରାଶି, ତହିଁରେ ବୃହସ୍ପତି ଅଛନ୍ତି । ତେଣୁ ଜନ୍ମ ବୃହସ୍ପତି ହେଲେ, ଏ ଲଗ୍ନରେ ରାଜା ହୋଇ ପାରିବେ ନାହିଁ ) । ବାମଦେବ ଏପରି କହନ୍ତେ, ବଶିଷ୍ଠ ସ୍ନେହରେ ଉତ୍ତର ଦେଲେ, "ସେ ରାଜା ନ ହୋଇ 'ଈଶ୍ୱର' ଜଟା ଜୁଟ ଧାରୀ ଓ ବିଭୂତି ଭୂଷିତ ହେବେ ।"

୫ମ ପଦ—ବାମଦେବ ଓ ବଶିଷ୍ଠାଦି ଏପରି କଥାବାର୍ତ୍ତା ହୁଅନ୍ତେ ରାଜା ଦଶରଥ ପୃଚ୍ଛା କଲେ, "କଥା କଣ ?" ବଶିଷ୍ଠ ଉଚ୍ଚ ସ୍ୱରରେ କହିଲେ, "ରାମଚନ୍ଦ୍ର ପ୍ରଭୁ ହୋଇ ଦିବ୍ୟ ସମ୍ପତ୍ତି ଭୋଗ କରିବେ । ସମ୍ପଦରେ କୁବେରକୁ ଜିଣିବେ, ରତ୍ନକଙ୍କଣ ଭୂଷଣରେ ସ୍ନେହୀ ହେବେ ।" ଏହା ଦଶରଥ ବୁଝିଲେ,

ବାର୍ତ୍ତା ପାଇ ମାତାମାନେ ହରଷିତା ସୀତା ତୋଷ ନୁହେ କହି ।
ବିଧୁ ଦର୍ଶନେ ଯଥା ସିନ୍ଧୁ କଲ୍ଲୋଳ ଅଧିକରେ ବେଳ ବହି ।
ବେଶ ଅଭିଷେକର ।
ବେଳ ଦେଖି ହେବା ସେ ପ୍ରକାର । ୬ ।
ଅଶ୍ୱବନ୍ତ ତହୁଁ ଗଜବନ୍ତ ମହନ୍ତ ରଥୀ ପଦାତିଏ ମିଶି ।
ବସିଲେ ରାମ ସିଂହାସନେ ଦ୍ୱିଗୁଣେ ଆମ୍ଭ ଗୁଣେ ଯିବେ ଦିଶି ।
ବିଚାରେ ଏ ପ୍ରକାର ।
ପ୍ରଜା ସୁଖ ଜନ୍ମୁଛି ଅପାର । ୭ ।
ବନ୍ଦୀ ବେଳକ ଇତ୍ୟାଦି ଭଟ୍ଟ ମେଳ ଆଉ ମାଗି ନ ଜାଣିବା ।
ବ୍ରାହ୍ମଣକୁଳର ଅଭାବ ଛୁଟିଲା ଲଭିଲେ ଯାଜ୍ଞିକ ହେବା ।
ଏଣୁ ଚିନ୍ତେ ଦେବତା ।
ଯଜ୍ଞବଳେ ହୋଇବା ପୂଜିତା । ୮ ।

---

୮ମ ପଦ—ବନ୍ଦୀ—ସ୍ତୁତିପାଠକ ବା ଭଟ୍ଟ । ବେଳକ—ବେଳାମାନେ ।

---

ମାତ୍ର ବଶିଷ୍ଠଙ୍କ କଥାର ମର୍ମ ଅନ୍ୟ ପ୍ରକାର, ଯଥା—ରାମଚନ୍ଦ୍ର ମହାଦେବଙ୍କ ସମାନ ଉତ୍ତମ ଭସ୍ମ ବୋଳି ହେବେ, ରାବଣକୁ ଜିଣିବେ, ପୁଷ୍ପକଯାନରେ ସଗର୍ବ ସହିତ ବସିବେ । ବଶିଷ୍ଠଙ୍କ ବାକ୍ୟ ଶୁଣି ପ୍ରଥମ ଅର୍ଥ ବୁଝି ନରପତି ଦଶରଥ ସନ୍ତୁଷ୍ଟ ହେଲେ ଓ ଦ୍ୱିତୀୟ ଅର୍ଥ ବୁଝିପାରି ଦେବତାମାନେ ଆନନ୍ଦିତ ହେଲେ ।

୬ଷ୍ଠ ପଦ—'ରାମଚନ୍ଦ୍ରଙ୍କର ଅଭିଷେକ ହେବ'—ଏହା ବାର୍ତ୍ତାପାଇ ମାତାମାନେ ଆନନ୍ଦିତା ହେଲେ । ସୀତାଙ୍କର ହର୍ଷ କଥାରେ କହି ହେବ ନାହିଁ । 'ଚନ୍ଦ୍ର ଦର୍ଶନରେ ଯେପରି ସମୁଦ୍ରର ଲହରୀ ଅଧିକ ଉଚ୍ଚ ଉଠେ, ସେହିପରି ରାମଙ୍କ ଅଭିଷେକ ବେଳର ବେଶ ଦେଖି ଆମେ ଉଲ୍ଲସିତା ହେବା' ମାତାମାନେ ଏହା ଭାବିଲେ ।

୭ମ ପଦ—ସେହି ନଗରର ଅଶ୍ୱାରୋହୀ, ଗଜାରୋହୀ, ରଥାରୋହୀ, ପଦାତିକ ସୈନ୍ୟମାନେ ମିଶି ବିଚାର କଲେ, "ରାମ ସିଂହାସନରେ ବସିଲେ ଆମ୍ଭର ଗୁଣ ଦ୍ୱିଗୁଣ ଦେଖାଯିବ; ( ରାମ ଅତ୍ୟନ୍ତ ଗୁଣଗ୍ରାହକ ହେତୁ ଆମ୍ଭ ଗୁଣକୁ ଭଲରୂପେ ଲକ୍ଷ୍ୟ କରିବେ ।" ପ୍ରଜାମାନେ ବିଚାର କଲେ "ଆମ୍ଭର ଭାରି ଆନନ୍ଦ ହେଉଛି । ( ରାମ ରଜା ହେଲେ ଆମ୍ଭଙ୍କୁ ସୁଖରେ ପାଳିବେ ) ।"

୮ମ ପଦ—ଭଟ୍ଟ, ବେଳା ପ୍ରଭୃତି ବନ୍ଦୀମାନେ ମେଳ ହୋଇ ବିଚାର କଲେ "ଆମ୍ଭେମାନେ ତ ଆଉ ମାଗି ଜାଣିବା ନାହିଁ; ( ରାମଚନ୍ଦ୍ର ମହାଦାତା, ସେ ଯାଚକକୁ ଧନ ଦେବେ) । ବ୍ରାହ୍ମଣମାନେ ଧନ ଅଭାବକୁ ଯଜ୍ଞ କରି ନ ପାରି ଯେଉଁ କଳଙ୍କ ଭାବ ହୃଦୟରେ ରଖିଥିଲେ, ସେ ବ୍ୟାକୁଳତା ଛୁଟିଗଲା । ସେମାନେ

ବଲ୍ଲବେ ପାଞ୍ଚିଲେ ସୁଲଭେ ଧେନୁ ଯେ ହେବେ ଅମ୍ଭ କ୍ଷୀରବତୀ ।
ବାସବାଦି ଦେବେ ଅମ୍ଭ ବାଧା ଏବେ ନାଶ ନୋହିଲା ଏ ମତ ।
ବ୍ରହ୍ମା ସମୀପେ ଗଲେ ।
ବିଭ୍ରମ ସେ କୈକେୟୀଙ୍କି କଲେ । ୯ ।
ବପଣୀରେ ଶୁଣି ରାମ ରଜା ବାଣୀ ବାହୁଡ଼େ ମନ୍ଥରା ଦ୍ୱସ ।
ବାର ଭର ପଛୁ ନସୁନସୁଗଲେ ଗଲେ ପ୍ରାଣଥିଲା ପରି ।
ବୃକ୍ଷ କାଟିଲା ପ୍ରାୟେ ।
ବିପତିତ ତା ଅଗ୍ରତେ ହୁଏ । ୧୦ ।
ବୋଲେ କୈକେ ଏ କି ଭରତଜନନୀ ! ବହୁଅଛୁ ଚହୁଁ ଜବ ।
ବଡ ସୁଭାଗୀ ବୋଲାଇ ରେ ଶୋଭାଙ୍ଗି ଭାଙ୍ଗିଗଲା ତୋ ଗରବ ।
ବେର କି ହୁଏ ତୋର ।
ବିଷ ପ୍ରାୟେ ଯାରେ ମୋ ଶରୀର । ୧୧ ।

---

୯ମ ପଦ—ବଲ୍ଲବେ—ଗୋପାଳମାନେ ।
୨୦ମ ପଦ—ବପଣୀ—ବଜାର ।
୧୨ଶ ପଦ—ଜବ—ଶୀଘ୍ର ! ବେର—ଶରୀର, ଦେହ ।

---

ଭାବିଲେ, 'ଆମେ ପ୍ରଚୁର ଧନ ପାଇ ଅଳଙ୍କରେ ଯାଜ୍ଞିକ ହୋଇ ପାରିବା (ଯାଗ କରି ପାରିବା)' ; ଅପୂଜ୍ୟ ଦେବତାସବୁ ବିଚାର କଲେ, "ଆମ୍ଭେ ପୂଜା ପାଇବା" (ଏହାଦ୍ୱାରା ରାମଚନ୍ଦ୍ର ଦାନପ୍ରିୟ, ଦ୍ୱିଜପ୍ରିୟ ଓ ଦେବପ୍ରିୟ ବୋଲି ଜଣାଗଲା )।

୯ମ ପଦ—ଗୋପାଳମାନେ ଭାବିଲେ, "ଆମର ଗାଈମାନେ ବହୁତ ଦୁଧ ଦେବେ ।" ବାସବାଦି ଦେବତାମାନେ ଭାବିଲେ, "ଆମର ଶତ୍ରୁ ରାବଣ ତ ଆଉ ବିନାଶ ହେବ ନାହିଁ ।" ଏହା ଭାବି ସେମାନେ ବ୍ରହ୍ମାଙ୍କ ପାଖକୁ ଗଲେ । ବ୍ରହ୍ମା ବାସବଙ୍କଠାରୁ ସମ୍ବାଦ ଶୁଣି କୈକେୟୀଙ୍କ ଚିତ୍ତ ବିଭ୍ରମ କଲେ ।

୧୦ମ ପଦ—ରାମ ରଜା ହେବା ସମ୍ବାଦ ବଜାରରେ ଶୁଣି ମନ୍ଥରା ଶୀଘ୍ର ଫେରି ଆସିଲା । ନେଶ ବୃଦ୍ଧରେ ଲେଉଟଇଲ ଚୂର୍ଣ୍ଣିକରି ଦଣ୍ଡ ଗତପ୍ରାଣ ହୋଇ, ଆସି କୈକେୟୀଙ୍କ ଅଗ୍ରତରେ ଛିନ୍ନବୃକ୍ଷ ପ୍ରାୟ ପତିତ ହେଲା ।

୧୧ଶ ପଦ—ଭରତ ଜନନୀ କୈକେୟୀ ତାକୁ ଦେଖି ଉଠାଇ ପଚାରିଲେ, "କଥା କଣ ?" ଏହା ଶୁଣି ସେ ବେଗରେ କହିଲା, "ରେ ଶୋଭାଙ୍ଗି ତୁ ପର ସଂସାର ବଡ଼ ସୁଭାଗୀ ବୋଲାଉ, ତୋର ସେ ଗର୍ବ (ସେ ସୁଭାଗୀପଣ) ଏବେ ଭାଙ୍ଗିଗଲା । ତୋ ଦେହ ଦର୍ପଣ ହୁଏ, ତା ତୁ ଜାଣୁ, ମାତ୍ର ମୋ ଦେହ ବିଷ ଖାଇଲା ପରି ଯାଉ ହେଉଛି ।"

ବିବେକୀ ଧାର୍ମିକ ଶୋଭା ପ୍ରଶଂସାରେ ସଂସାରେ ଜଣେ ନ ଗଣି ।
କାଠିଲ ଯାହାର ବଜ୍ରରୁ ଅଧିକ କି ବର୍ଣ୍ଣିବା ତାର ବାଣି ।
ଅଦଭ ସେ ନନ୍ଦନ ।
ବୋଲିବୁ ବା ବୟସରେ ସାନ । ୧୨ ।
ବଳିଷ୍ଠ ଦାନବେ ପୂର୍ବଦେବ କହି ଅନୁଜ ଦେବତା ଇନ୍ଦ୍ର ।
ବୋଲାଇ ସପତ୍ନୀ ଯେ ଯାହାର ପ୍ରୀତି କେହି ହୋଇନାହିଁ ସାନ୍ଦ୍ର ।
ବସା କରି ନୃପତି ।
ବୁଦ୍ଧିଥିଲେ ବୋଧି କ୍ଷିତିପତି । ୧୩ ।
ବହୁଳାତ ମତି କୈତବେ ଅହଲ୍ୟା ଦୂଷଣ ଲଭିଲା ପରି ।
ବଦନ ମାଡ଼ି ଶୟନ ସଦନରେ ନୟନରେ ପୂରି ବାରି ।
ବିଜେ ନୃପ ଏକାଳେ ।
ବନ୍ଧୁ ବନ୍ଧୁ ବୋଲିଣ ଡାକଲେ । ୧୪ ।

---

୧୩ଶ ପଦ—ପୂର୍ବଦେବ—ଅସୁରମାନେ । ଅନୁଜ—କନିଷ୍ଠ । କ୍ଷିତିପତି—ରଜା ।

୧୪ଶ ପଦ—କୈତବ—କପଟ । ଦୂଷଣ—ନିନ୍ଦା ।

---

୧୨ଶ ପଦ:—"ତୋର ପୁତ୍ର ବିଚାରବନ୍ତ, ଧାର୍ମିକ ଅଟେ । ତା ସମାନ ସୁନ୍ଦର ଏ ସଂସାରରେ ଆଉ ଜଣେ ଅଛି ବୋଲି ମୁଁ ଗଣନା କରୁନାହିଁ । ଯାହାର କାଠିନ ବଜ୍ରରୁ ବେଶି ଠାଣ, ତାର ଶରକଥା ବା କଣ ବର୍ଣ୍ଣନା କରିବି ? ସେ ପୁତ୍ର ତୁମ୍ଭିକି ଲଭିଅଛୁ । ତୁ କା କହିବୁ ସେ ବୟସରେ ସାନ ଅଟେ; ମାତ୍ର ତାହା ଦକ୍ଷଯୁକ୍ତ ନୁହେ ।"

୧୩ଶନ୍ଦ ପଦ—"ବଳିଷ୍ଠ ଦୈତ୍ୟମାନେ ଅଗ୍ରଜ ହେଲେହେଁ ସାନଭାଇ ଦେବତା ଇନ୍ଦ୍ର, ଅର୍ଥାତ୍ ସ୍ୱର୍ଗର ରଜା ହେଲେ । ସେହିପରି ତୋ ପୁତ୍ର ସାନ ହେଲେ ମଧ ରଜା ହୋଇ ପାରେ । ସପତ୍ନୀମାନେ କେବେହେଲେ ସ୍ନେହର ଗାଢ଼ ବନ୍ଧନରେ ଏକତ୍ର ରହି ପାରନ୍ତି ନାହିଁ । ତୋର ବୁଦ୍ଧି ଥିଲେ ତୁ ରଜାଙ୍କୁ ମନାଇ ପୁତ୍ରକୁ ସିଂହାସନରେ ବସା ।"

୧୪ଶ ପଦ—ଗୌତମ ପତ୍ନୀ ଅହଲ୍ୟା ଇନ୍ଦ୍ରର ମନ୍ତ୍ରଣାରେ ପଡି ବିଚଳିତ ମତିହୋଇ ନିନ୍ଦା ପାଇଲା ପ୍ରାୟ, କୈକେୟୀଙ୍କ ବୁଦ୍ଧି ମନ୍ଥରାର ମନ୍ତ୍ରଣାରେ ବିଚଳିତ ହେଲା । (ପରେ ସେ ନିନ୍ଦା ପାଇବେ) । ସେ ଗୃହ ମଧ୍ୟରେ ଶୋକପୂର୍ଣ୍ଣ ହୃଦୟରେ ମୁହଁ ତଳେ ମାଡି କ୍ରନ୍ଦନ କଲେ । ସେହି ସମୟରେ ନୃପତି ବିଜେ କରି 'ବନ୍ଧୁରେ ବନ୍ଧୁ' ବୋଲି ଡାକିଲେ ।

ବିଷବୈଦ୍ୟ ପଦ ନ ମାନିଲା ପ୍ରାୟେ ସକ୍ତଙ୍କ ଭୋଗିନୀ ସେହୁ ।
ବନ୍ଦି ସେନେହରେ ପତିଙ୍ଗ ପ୍ରକାରେ ପାଶେ ପରବେଶ ନୋହୁଁ ।
ବୋଧେ ଚିବୁକ ଧରି ।
ବିନା ଦୋଷେ ପ୍ରଣୟିନୀ ଗୋରି । ୧୫ ।
ଜପେ ଇନ୍ଧନଦେବୀ ମନ୍ତ୍ରେ ପୂଜିଲେ ସେ ଯଥା ନ କହେ କଥା ।
ବଇଦ ହୋଇଲା ପ୍ରାୟେ ସ୍ୱପନରେ ବସି ନ ଟେକିଲା ମଥା ।
ବାରେ ମୋତେ ତୁ କୁହା ।
ବନ୍ଧୁ ଦେବ ମୁଁ ମାଗିବୁ ଯାହା ! ୧୬ ।
ବୋଲନ୍ତି ନରପତି ବୋଇଲା ଯୁବତୀ ତିନିବାର ସତ୍ୟ କଲେ ।
ବୃଦ୍ଧାସୁର ତାହା କର ନିଜ ଶିରେ ଯଥା ଦେଲା ହର ବୋଲେ ।

---

୧୫ଶ ପଦ—ବିଷବୈଦ୍ୟ—ଝୋଲା । ଭୋଗିନୀ—ସର୍ପିଣୀ, ପଟ୍ଟମହିଷୀ-ବ୍ୟତୀତ ରାଜାଙ୍କର ଅନ୍ୟ ସ୍ତ୍ରୀ । ବନ୍ଦି—ନଅଁ ।

୧୬ଶ ପଦ—ଇନ୍ଧନଦେବୀ—କାଷ୍ଠ ନିର୍ମିତ ଦେବୀ ।

---

୧୫ଶ ପଦ—'ଭୋଗିନୀ' ସର୍ପିଣୀ ସାପୁଆ ଝୋଲାର ମନ୍ତ୍ରପଢ଼ିକୁ ନ ଶୁଣିଲା ପରି ସେ 'ଭୋଗିନୀ' ରାଜରାଣୀ କୈକେୟୀ ଦଶରଥଙ୍କ ଡାକ ଶୁଣିଲେ ନାହିଁ । ଅଗ୍ନିକୁ ଦେଖି କରି ପତଙ୍ଗ ଯେହ୍ନେ ପ୍ରବେଶ କଲା ପ୍ରାୟେ ରାଜା ତାଙ୍କ ପାଖରେ ପ୍ରବେଶ ହେଲେ । ( ପତଙ୍ଗ ଅଗ୍ନିରେ ପଡ଼ି ବିନାଶ ହୁଏ, ରାଜା ଭବିଷ୍ୟତରେ ସେହି କୈକେୟୀ ଯୋଗୁ ବିନାଶ ହେବେ ) । ପରେ କୈକେୟୀଙ୍କ ଚିବୁକ ଧରି କହିଲେ, "ହେ ପ୍ରଣୟିନୀ ! ହେ ଗୋରି ! ବିନା ଦୋଷରେ ଏ ଅଭିମାନ କାହିଁକି ?" ( ଅଥବା ହେ ଗୋରି ! ଦୋଷ କରିଥିଲେ ମଧ୍ୟ ତୁ ପ୍ରଣୟିନୀ ହୋଇଛୁ, ଏବେ ବିନା ଦୋଷରେ ରୁଷ୍ଟା ହୋଇଛୁ କାହିଁକି ?)

୧୬ଶ ପଦ—ବ୍ରାହ୍ମଣମାନେ କାଷ୍ଠନିର୍ମିତ ଦେବୀ ପ୍ରତିମାକୁ ମନ୍ତ୍ର ପଢ଼ି ପୂଜା କଲେ, ସେ ଯେପରି କଥା କହେ ନାହିଁ ଏବଂ ସ୍ୱପ୍ନରେ ବର ଦାନ କରିଥାଏ, ସେହିପରି କୈକେୟୀ ଉଠି ବସିଲେ, ମାତ୍ର ମସ୍ତକ ଟେକିଲେ ନାହିଁ । ତାହା ଦେଖି ରାଜା କହିଲେ, "ରେ ବନ୍ଧୁ ! ଥରେ ମୋତେ ତୁ କୁହ । ତୁ ଯାହା ମାଗିବୁ ମୁଁ ତାହା ଦେବି ।"

୧୭ଶ ପଦ—ଦଶରଥ ଏପରି କହନ୍ତେ, ଯୁବତୀ କୈକେୟୀ କହିଲେ, "ସତ୍ୟକର ।" ନୃପତି ତିନିଥର ସତ୍ୟ କଲେ । ଯେପରି ହରଙ୍କ କଥା ମାନି ବୃକାସୁର ଆପଣା ମସ୍ତକରେ ନିଜର କର ଦେଇ, ( ବୃକାସୁର ମହାଦେବଙ୍କଠାରୁ

ବଧି କଲେ ନୃପତ
ବଶ୍ୟମୋହନୀ ନାରୀଙ୍କ ପ୍ରୀତ । ୧୭ ।
ବାହୁଲି ରଥ ସ୍ତ୍ରୀ ହୋଇ ଶମ୍ବର ସମରେ ନାହିଁ କି ମନ ।
ବହୁଲ ସତ୍ୟ ସୂତ ହୋଇ ତୋଷିଲ ତୋ ସୁତ ହେବ ସ୍ୱଜନ ।
ବାଳ ବାଳିକା ଖେଳ ।
ବଢ଼ୁଛେ ତ ଆନ ତୁମ୍ଭ ବୋଲ । ୧୮ ।
ବସୁଧାପତ ପଦ ସ୍ୱମେ ଉଚିତ ନୋହେ ସେ ଜାମାତା ତାର ।
ବନେ ଦ୍ୱାଦଶ ବରଷ ଚଉଦ ବରଷ ପୁତ୍ର ରଜା ହେଉ ମୋର ।
ବାମା ବଚନ ଶୁଣି ।
ବଜ୍ଞାନ ସେ ଜ୍ଞାନେ କହେ ବାଣୀ । ୧୯ ।

---

୧୮ଶ ପଦ—ସୂତ—ସାରଥି ।
୧୯ଶ ପଦ—ବସୁଧାପତପଦ—ରାଜପଦ । ଜାମାତା—ଜ୍ୱାଇଁ । ବଜ୍ଞାନ—ଜ୍ଞାନଶୂନ୍ୟ । ଜ୍ଞାନେ—ଜାଣିପାରି ।

---

ଭଲ ପାଉଥିଲ ଯେ, ସେ ଯାହା ମୁଣ୍ଡରେ ହାତ ଦେବ, ସେ ଭସ୍ମ ହୋଇଯିବ; ବିଷ୍ଣୁଙ୍କ କୌଶଳରେ ନିଜେ ନିଜ ମୁଣ୍ଡରେ ହାତ ଦେଇ ଭସ୍ମ ହୋଇଥିଲ ) କୈକେୟୀ ବୋଲରେ ଦଶରଥ ସେହିପରି କଲେ ( ନିଜେ ମରିବାର କାର୍ଯ୍ୟ କଲେ) ରମଣୀମାନଙ୍କ ପ୍ରୀତ ବଶ୍ୟମୋହନୀ ଅଟେ ।

୧୮ଶ ପଦ—ଦଶରଥ ସତ୍ୟ କରିବାରୁ କୈକେୟୀ କହିଲେ, "ସମ୍ବରାସୁରର ଯୁଦ୍ଧରେ ମୁଁ ସ୍ତ୍ରୀ ହୋଇ ପୁଣି ସୂତ ରୂପେ ତୁମ୍ଭର ରଥ ଚଳାଇଲି; ତା କଣ ମନେ ନାହିଁ ? ତୁମ୍ଭେ ସେତେବେଳେ ସତ୍ୟ କରିଥିଲ, ତୁ 'ସୂତ' ସାରଥି ହୋଇ ମତେ ତୋଷିଅଛୁ, ତୋର 'ସୁତ' ପୁତ୍ର ରଜା ହେବ । ପିଲାଙ୍କର ଟୁଙ୍ଗିଘର ଖେଳ ସମାନରେ ତୁମ୍ଭ ସତ୍ୟ ଅନ୍ୟଥା ହେଲା । ( ମୋ ପାଖରେ ସତ୍ୟ କରି ରାମଙ୍କୁ ରଜା କରୁଅଛ ।)"

୧୯ଶ ପଦ—"ତୁମ୍ଭେ ମହୀପତି ହେବା ରାମ ପକ୍ଷରେ ଉଚିତ ନୁହେ । କାରଣ ରାମ ପୃଥିବୀର ଜାମାତା (ସୀତା ପୃଥିବୀରୁ ଜାତ,—ଝିଅଇଁ ହୋଇ ଶ୍ୱଶୁର ପଦ କିପରି ହେବ ?) । ସେ ଚଉଦ ବର୍ଷ ବନରେ ବାସ କରନ୍ତୁ, ମୋର ପୁତ୍ର ରଜା ହେଉ ।" କୈକେୟୀଙ୍କର ଏହି ବଚନ ଶୁଣି ରଜା ଅଜ୍ଞାନ ହୋଇ ପଡ଼ିଲେ । ପରେ ଜ୍ଞାନ ଲଭ କରି କହିଲେ :—

ବିରୋଚନ ନାସ୍ତି ଛଦ୍ମେ ହୋଇ ହରି ତା ଜୀବ ଯେମନ୍ତ ହରି ।
ବଧ ସଧ କରି ମୋର ସେହିରୂପେ ତୁମ୍ଭେ ଥିଲ ଅବତରି ।
ବୋଲି ଏତେ ମଉନ ।
ବିରୋଚନେ ହୁଇଲେ ସେ ଦିନ । ୨୦ ।
ବେଳାକୁ ନ ଲଙ୍ଘେ ସତ୍ତ୍ୱେ ପାରାବାର ଯଥା ତାଙ୍କୁ ନ ଲଙ୍ଘିଲ ।
ବିଷଭକ୍ଷଣେ ଶୂଳପାଣ ପଦ୍ମେ ମୂକେ ସମ୍ଭ୍ରମ ଦର୍ଶିଲ ।
ବଡ଼ ସନ୍ତୋଷ ରାଣୀ ।
ବିଜେ ଶ୍ରୀରାମ ଡକାଇ ଆଣି । ୨୧ ।
ବଦାନ୍ୟ ପ୍ରଥମେ ପିତାର ସତ୍ୟଙ୍କୁ ରଖିବ କି ନାହିଁ ସାଧୁ ।
ବଂଶେ ଯାହାର ଭଗୀରଥ ସମ୍ଭବ ଉଦ୍ଧରଲେ ପିତୃ ଦଗ୍ଧୁ ।
ବୋଲେ ରାମ ବଦନ ।
ବିଷୟ କି କର ଅବଧାନ । ୨୨ ।

---

୨୦ଶ ପଦ—ଛଦ୍ମେ—କପଟରେ । ସଧ—ଇଚ୍ଛା ବା କାମନା ।
ବିରୋଚନେ—ଅନାହାରରେ ।

୨୧ଶ ପଦ—ପାରାବାର—ସମୁଦ୍ର । ବେଳା—ତଟଭୂମି । ଶୂଳପାଣ—ମହାଦେବ ।

---

୨୦ଶ ପଦ—"ଯେପରି ବିଷ୍ଣୁ କପଟରେ ବିରୋଚନ ରାକ୍ଷସର ନାସ୍ତି ହୋଇ ତାର ପ୍ରାଣ ବିନାଶ କରିଥିଲେ, ସେହିପରି ତୁ ମୋର ମୃତ୍ୟୁକୁ ଇଚ୍ଛା କରି ଜନ୍ମ ହୋଇଥିଲୁ ।" ଏତେ କହି ସେ ମୌନ ହେଲେ । ସେ ଦିନ ଉପବାସରେ ରହିଲେ ।

୨୧ଶ ପଦ—ସମୁଦ୍ର ଯେପରି ସତ୍ୟରେ କୂଳକୁ ଲଙ୍ଘେ ନାହିଁ, ସେହିପରି ରାଜା ସତ୍ୟକୁ ଲଙ୍ଘିଲେ ନାହିଁ । ମହାଦେବ ବିଷ ଭକ୍ଷଣ ସମୟରେ ମୌନ ହୋଇ ରହିଲା ପରି ( ମୌନ ରହିବାରୁ ବିଷ ଭକ୍ଷିବାକୁ ସମ୍ମତ ଥିବାର ପ୍ରକାଶ ପାଇଲା ) ଦଶରଥ ତୁନି ହୋଇ ରହିବାରୁ ତାଙ୍କର ସମ୍ମତ ପ୍ରକାଶ ପାଇଲା । ରାଣୀ ତାହା ଜାଣିପାରି ବଡ଼ ସନ୍ତୋଷ ହେଲେ ଏବଂ ରାଜନ ରାମଚନ୍ଦ୍ରଙ୍କୁ ଡକାଇ ଆଣିଲେ ।

୨୨ଶ ପଦ—ରାମଚନ୍ଦ୍ର ଆସିବାରୁ କୈକେୟୀ ପ୍ରଥମରୁ କହିଲେ, "ହେ ସାଧୁ । ତୁମ୍ଭେ ପିତାଙ୍କ ସତ୍ୟଙ୍କୁ ରଖିବ କି ନାହିଁ ? ଯାହାର ବଂଶରେ ଭଗୀରଥ ଜାତ ହୋଇ ( କପିଳମୁନିଙ୍କ କୋପାନଳରେ ) ଦଗ୍ଧ ହୋଇଥିବା ପିତୃଲୋକଙ୍କୁ ଉଦ୍ଧରିଥିଲେ, ତୁମ୍ଭେ ସେହି ବଂଶରେ ଜନ୍ମ ହୋଇଅଛ ।" ଏହା ଶୁଣି ରାମ ଚକିତ କହିଲେ, "କଥା କଅଣ ? ମୋତେ କୁହ ।"

ବନେ ତୁମ୍ଭେ ଯିବ ଭରତ ହୋଇବ କୋଶଳପତି କ୍ଷଣରେ ।
ବେଶକୁ ଇଙ୍ଗୁଦୀ ରୁଦ୍ରାକ୍ଷ ବିଭୂତି ଥୋଇଦେଲା ଅଣି ତଳେ ।
ବାଳିଶା ନିଯ ମନ୍ତୁଣୀ ।
ବେଗେ ଶ୍ରୀରାମ ସମ୍ମତି କଲ । ୧୩ ।
ବୈଦେହୀ ଲକ୍ଷ୍ମଣ ପ୍ରବେଶ ତକ୍ଷଣ ସଙ୍ଗେ ଯିବାକୁ ଆତୁରେ ।
ବଶିଷ୍ଠାଦି ପାତ୍ରେ ପ୍ରବେଶ ହୋଇଣ ଦଶରଥଙ୍କୁ ପଚାରେ ।
ବିଭାବରୀ ପ୍ରାନ୍ତରେ ।
ବଭ୍ରୁ ହୁଅନ୍ତେ ପର ରାଜ୍ୟରେ । ୧୪ ।
ବଡ଼ବରକୁଳେ ନାସତ୍ୟ ହୋଇଲ ସତ୍ୟ କହିବାରେ ମୁହିଁ ।
ବିବେକ ମୋର କୈକେୟୀ ପୂର୍ବଜନ୍ମେ ପିଶାଚୀ ଥିଲା କି ହୋଇ ।
ବାକ୍ୟ ଯେତେ ମୁଖରେ ।
ବୈଶ୍ୱାନରହିଁ ଜଳେ ତହିଁରେ । ୧୫ ।

---

୧୩ଶ ପଦ—କୋଶଳପତି—ଅଯୋଧ୍ୟାରାଜା । ଇଙ୍ଗୁଦୀ—ତୈଳପ୍ରସୂ ବୃକ୍ଷ ବିଶେଷ ।

୧୪ଶ ପଦ—ବିଭାବରୀ—ରାତି । ପ୍ରାନ୍ତରେ—ଶେଷରେ । ବଭ୍ରୁ—ରାଜା ।

୧୫ଶ ପଦ—ବଡ଼ବରକୁଳେ – ହର୍ଯ୍ୟବଂଶରେ । ନାସତ୍ୟ—ଅଶ୍ୱିନୀକୁମାର ଅର୍ଥାତ୍ ଘୋଡ଼ାମୁହାଁ ପୁଅ । ବୈଶ୍ୱାନର—ଅଗ୍ନି ।

---

୧୩ଶ ପଦ—ରାମଙ୍କ ପ୍ରଶ୍ନ ଶୁଣି କୈକେୟୀ ଉତ୍ତର ଦେଲେ, "ତୁମ୍ଭେ ବନକୁ ଯିବ, ଭରତ କ୍ଷଣକରେ ଅଯୋଧ୍ୟାର ରାଜା ହେବ ।" ସେହି ସମୟରେ ପାପିଷ୍ଠା ମନ୍ଥରା ତପସ୍ୱୀ ବେଶ ହେବା ନିମିତ୍ତ ଇଙ୍ଗୁଦୀ ଓ ରୁଦ୍ରାକ୍ଷର ମାଳା, ଭସ୍ମ ଅଣି ତଳେ ଥୋଇଦେଲା । ଶ୍ରୀରାମ ସମ୍ମତି ପ୍ରକାଶ କଲେ ଅର୍ଥାତ୍ ସେ ମାଳା ଓ ଭସ୍ମ ଗ୍ରହଣ କଲେ ।

୧୪ଶ ପଦ—ରାମଚନ୍ଦ୍ର ବନକୁ ଯିବା ଶୁଣି ସୀତା ଓ ଲକ୍ଷ୍ମଣ ହେଁ ତାଙ୍କ ସହିତ ବନକୁ ଯିବା ପାଇଁ ବ୍ୟାକୁଳ ହୃଦୟରେ ସେଠାରେ ପ୍ରବେଶ କଲେ । ସେହି ସମୟରେ ବଶିଷ୍ଠାଦି ପାତ୍ରମାନେ ପହଞ୍ଚି ଦଶରଥଙ୍କୁ ପଚାରିଲେ, "ରାତିର ଶେଷରେ ରାମ ରାଜ୍ୟରେ ପ୍ରଭୁ ହେବେ ପରା ?" ( ଏ ତପସ୍ୱୀ ବେଶ କାହିଁକି ହେଲେ ? )

୧୫ଶ ପଦ—ରାଜା ଉତ୍ତର ଦେଲେ, "ହର୍ଯ୍ୟବଂଶରେ ମୁଁ ସତ୍ୟ କହିବାରେ 'ଅଶ୍ୱିନୀକୁମାର' ଅର୍ଥାତ୍ ଘୋଡ଼ାମୁହାଁ ହେଲି ( କୁଳ ନାଶ କଲେ ଘୋଡ଼ାମୁହାଁ ପୁଅ ଜାତ ) । ମୋର ମନେ ହୁଏ, ପୂର୍ବ ଜନ୍ମରେ କୈକେୟୀ

ବବୁଧେ ଧୀରେ ରାଜା ପୁରେ କହିଲେ ଏ କଥା ପ୍ରମାଣ ହେବ ।
ବ୍ରାହ୍ମଣବ୍ରତ ଫଳକ ଧର୍ମଦତ୍ତ ଦେବ ଦରଶନେ ଥିବ ।
ବଇକୁଣ୍ଠ ପତନ ।
ବଶତରେ ଦେବୀ ହେଲ'ଷମ । ୨୨ ।
ବଧୂର ପ୍ରାୟେ ଯହିଁ ଲଗ୍ନ ଅବେଶ ତହିଁ ସେ ତାହିଁ ନ ରସେ ।
ବହନ ଗହନଗାମୀ ହେଉ ରାମ ଶିଶୁପାଠ ଗସ ଘୋଷେ ।
ବଳାହକ ଯେସନ ।
ବନପ୍ରିୟମଧ୍ୟେ କରେ ସ୍ଵନ । ୨୩ ।
ବଂଶନଳୀରେ ରଖି ଲେଖି ବସନ ଦେଲ ସୀତା ପାଇଁ ଆଣି ।
ବହିଲେ ସେ ପାଦ ଲକ୍ଷ୍ମଣ ଇକ୍ଷ୍ୱାକୁକୁଳର ଯେ ଚୂଡ଼ାମଣି ।

---

୨୨ଶ ପଦ—ବବୁଧେ—ପଣ୍ଡିତମାନେ ।

୨୩ଶ ପଦ—ଗହନଗାମୀ —ବନଗାମୀ । ବଳାହକ—ମେଘ । ବନପ୍ରିୟ —କୋକିଳ ।

---

ପିଶାଚୀ ହୋଇଥିଲ । ପିଶାଚୀ ମୁଖରୁ ଅଗ୍ନି ନିର୍ଗତ ହେଲା ପ୍ରାୟ କୈକେୟୀ ମୁଖରୁ ଯେତେ କଥା ବାହାରେ, ତହିଁରେ ଅଗ୍ନି ଜଳୁଅଛି । ( ସେ କଥା ଅଗ୍ନି ପ୍ରାୟ ଦଗ୍ଧ କରୁଅଛି ) ।”

୨୨ଶ ପଦ—ରାଜାଙ୍କ କଥା ଶୁଣି ପଣ୍ଡିତମାନେ (ବଶିଷ୍ଠାଦି ପାତ୍ରମାନେ ) ଧୀର ଭାବରେ କହିଲେ, “ଏ ଯାହା କହିଲ, ତା ପ୍ରମାଣ । ଧର୍ମଦତ୍ତ ବ୍ରାହ୍ମଣ ଦେବ ଦର୍ଶନକୁ ଗଲବେଳେ କାର୍ତ୍ତିକବ୍ରତ ଫଳ ପିଶାଚୀକୁ ଦାନ କରିଥିଲେ । ତୋଧନ୍ୟ ସେହି ଫଳ ଲଭ ହେତୁ କୈକେୟୀ ବୈକୁଣ୍ଠ ସଦୃଶ ଅଯୋଧ୍ୟା ନଗରୀରେ କୁଶଳରେ ବାସ କଲ ।”

୨୩ଶ ପଦ—ଯେପରି ବଧୂର ସ୍ତ୍ରୀର ମନ ଯେଉଁ ଥିରେ ଲଗିଥାଏ, ସେ ସେହି ବିଷୟରେ ରତ ଥାଏ, ଅନ୍ୟ କାହିଁରେ ରସେ ନାହିଁ, ସେହିପରି କୈକେୟୀ ‘ରାମ ଶୀଘ୍ର ବନକୁ ଯାଉ’ କେବଳ ଏହି କଥା ଶିଶୁ ପାଠ ଘୋଷିଲ ପ୍ରାୟ କାକ ଯେପରି କୋକିଳଙ୍କ ମଧ୍ୟରେ ରବ କରେ ସେହିପରି ସଉତୁଣୀଙ୍କ ମଧ୍ୟରେ ଘୋଷି ହେଲା ।

୨୪ଶ ପଦ—କୈକେୟୀ ବାଉଁଶ ନଳରେ ରଖି ସୀତାଙ୍କର ପିନ୍ଧିବା ପାଇଁ ବଉଦ୍ଧବର୍ଣ୍ଣ ଲଗି ଲୁଗାମାନ ଆଣି ଦେଲା । ଇକ୍ଷ୍ୱାକୁବଂଶର ଶିରୋମଣି ରାମଚନ୍ଦ୍ର ଓ ଲକ୍ଷ୍ମଣ ‘ଇକ୍ଷ୍ୱାକୁପାଦ’ ଚୂଡ଼ାପାଦ ଓ ଲଗା ଥିବା ବାଉଁଶ ନଳୀ

ବାହୁଡ଼ାଇଲେ ସେ ଜନ ।
ବନ୍ଧୁ ବୋଧନ୍ତି ରାମଜନନୀ । ୨୮ ।
ଅବନୀରେ ପୀନଭବଜା ଅପୂର୍ବ ଦ୍ରବ୍ୟ ଦେଖି ନ ମାଗିବୁ ।
ବେନି ସହୋଦର ମଧ୍ୟରେ ଆଦର ବିପଥରେ କରଥିବୁ ।
ଛାଡ଼ିଣ ଚଞ୍ଚଳ ଭାବ ।
ବାଣୀ ନ ଫୁଟଇ କଣ୍ଠୁ ଆଗର । ୨୯ ।
ରୋଇଲେ ସୁମନା ପୁଚ୍ଛେ ସେଇଥିବୁ ଶ୍ରୀରାମ ମାନସ ଜାଣି ।
ଅନନ୍ତେ ସର୍ବ ଶର୍ବରୀକି ହବ୍ୟ ହୋଇ ଧନୁଶରପାଣି ।
ବଧୂ ଯାଉଛୁ ସଙ୍ଗେ ।
ବହୁ ମାୟାବୀ ରାକ୍ଷସପୁଙ୍ଗେ । ୩୦ ।
ଏମାନେ ବସାଇ ନେବାରେ ସୁମନ୍ତ ଯିବାରେ ଦେଖିଲେ ଜନେ ।
ବିସ୍ମୟ ହୋଇଲେ ପଛେ ଚୋରାଇଲେ ନନ୍ଦା ବନ୍ଦିଲେ ବ୍ରଜନେ ।

---

୨୯ଶ ପଦ—ପୀନଭବଜା—ପୃଥିବୀ ସମ୍ଭୂତା ।
୩୦ଶ ପଦ—ଶର୍ବରୀ—ରାତ୍ରି । ମାୟାବୀ—କପଟୀ । ରାକ୍ଷସପୁଙ୍ଗେ—ରାକ୍ଷସ ସମୂହ ।
୩୧ଶ ପଦ— ବାମା—ସ୍ତ୍ରୀ, ଭାର୍ଯ୍ୟା । ଅନୁକମ୍ପା—ଦୟା ।

---

ଧଇଲେ । ରାମ, ଲକ୍ଷ୍ମଣ ଓ ସୀତା ଜନକଙ୍କ ବନକୁ ଯିବାକୁ ବାହାରିଲେ । ତାହା ଦେଖି ଶ୍ରୀରାମଙ୍କ ମାତା କୌଶଲ୍ୟା ବଧୂ ସୀତାଙ୍କୁ ବୋଧ କରି କହିଲେ;—

୨୯ଶ ପଦ —"ହେ ପୃଥିବୀସମ୍ଭୂତା ସୀତେ ! ଅରଣ୍ୟ ମଧ୍ୟରେ ଅପୂର୍ବ ପଦାର୍ଥ ଦେଖିଲେ ମାଗିବୁ ନାହିଁ । (କୌଣସି ଅପୂର୍ବ ଜିନିଷ ପାଇଁ ଆଶା କରିବୁ ନାହିଁ ) । ଦୁର୍ଗମ ପଥରେ ଗଲାବେଳେ ରାମ ଓ ଲକ୍ଷ୍ମଣ ବେନି ସହୋଦରଙ୍କ ମଧ୍ୟରେ ଯିବୁ । ( ତାଙ୍କ ପାଖରୁ ଅଲଗା ହେବୁ ନାହିଁ ) ।" ଏହା କହୁ କହୁ ଗଦ୍‌ଗଦରେ ତାଙ୍କର କଣ୍ଠ ରୁନ୍ଧିଗଲା । ଶୋକର ପ୍ରାବଲ୍ୟ ହେତୁ ପାଟିରୁ କଥା ବାହାରିଲା ନାହିଁ ।

୩୦ଶ ପଦ—ସୁମିତ୍ରା ତାଙ୍କ ପୁତ୍ର ଲକ୍ଷ୍ମଣଙ୍କୁ କହିଲେ, "ରାମର ମନ ଜାଣି ସେବାକରିବୁ । ସମସ୍ତ ରାତ୍ରି ଅନିଦ୍ରାରେ ରହି ଧନୁରେ ଶର ଲଗାଇ ରହିଥିବୁ । ବଧୂ ସୀତା ସଙ୍ଗରେ ଯାଉଛି । ବନରେ ବହୁ ମାୟାବୀ ରାକ୍ଷସମାନେ ଅଛନ୍ତି । ( ତେଣୁ ସର୍ବଦା ଧନୁଃଶର ଧରି ଜଗି ରହିଥିବୁ ) ।

୩୧ଶ ପଦ—ତତ୍ପରେ ସୁମନ୍ତ ମନ୍ତ୍ରୀ ରାମ, ଲକ୍ଷ୍ମଣ ଓ ସୀତାଙ୍କୁ ରଥରେ ବସାଇ ବନକୁ ନେଉଛନ୍ତି ଲୋକମାନେ ତାହା ବିସ୍ମିତ ହୋଇ ଦେଖିଲେ । ରଥ

ବୃନ୍ଦ ସମୟେ କର୍ଣ୍ଣ ।
ରାମାଠାରେ ଏତେକ ଅନୁକମ୍ପା ୩୧ ।
ବୈଶାଖ ଘୋଷାଇଲ ମନ୍ଥର ଅଯୋଧ୍ୟା-ଭାଣ୍ଡେ ଥିଲ କ୍ଷୀର ପୂରେ ।
ବଲ୍ଲବୀ କୈକେୟୀ ମନ୍ଥନରୁ ନବନୀତ ଉତ୍ତପତ୍ତ ବାହାର ।
ବନବାସିଙ୍କି ଦେଇ ।
ବହୁଲୋଚନ ଅଶନ ପାଇଁ । ୩୨ ।
ତାକୁ ମଦନଗଣ ତନ୍ତଚକ୍ର ଥୋଇ ହୃଦ ପିଣ୍ଡରେ ଅସତ୍ୟେ ।
ବ୍ୟକ୍ତ ଲୋକରେ ଶ୍ରବଣେ ପାନ କରି ଛୁ ଛୁ ତ କରବେ ଭକ୍ତେ ।
ବୋଲବୋଲି ଏମନ୍ତ ।
ହରକତେ ସମସ୍ତ ପୋକତ । ୩୩

---

୩୨ଶ ପଦ—ବୈଶାଖ—ଖୁଅଦାଣ୍ଡ ବା ମନ୍ଥନ ଦଣ୍ଡ । ବଲ୍ଲବୀ—ଗୋପାଙ୍ଗନୀ ନବନୀତ—ଲହୁଣୀ । ଅଶନ—ଭୋଜନ ।

୩୩ ପଦ—ତନ୍ତ୍ରଚକ୍ର—ଗୋଲଦାହ ସମ୍ବନ୍ଧ ।

---

ପଛରେ ଗୋଡାଇ ଗୋଡ଼ାଇ ଯାଇ ସ୍ତ୍ରୀଙ୍କୁ କନ୍ଧା କରି କହିଲେ, "ଏ କୁଡ଼ା କେତେ ସ୍ୱଜାର ସ୍ତ୍ରୀଠାରେ ଏତେ ଅନୁଗ୍ରହ କାହିଁକି ହେଲା ?"

୩୨ଶ ପଦ—"କୈକେୟୀ ଗୋପାଙ୍ଗନୀ ରୂପରେ ମନ୍ଥର ରୂପ ଖୁଅଦାଣ୍ଡ ଦ୍ୱାରା ଅଯୋଧ୍ୟା ଭାଣ୍ଡରେ ଥିବା ସ୍ନେହ ସୌହାର୍ଦ୍ଦ୍ୟ ରୂପ କ୍ଷୀରକୁ ମନ୍ଥନ କରି ତହିଁରୁ ଉଦଭବ ରାମ ଲକ୍ଷ୍ମଣ ସୀତା ରୂପ ଲହୁଣୀକୁ ବନବାସୀ ଋଷିମାନଙ୍କୁ ବହୁଲୋଚନରେ ଭୋଜନ କରିବା ନିମନ୍ତେ ଦେଲା । ( ଋଷିମାନେ ବହୁଲୋଚନରେ ଦେଖି ସୁଖୀ ହେବେ; ଏ ଭାଗ୍ୟ ତାଙ୍କର ଅଛି ମାତ୍ର ଅଯୋଧ୍ୟାବାସୀଙ୍କର ନାହିଁ )

ଅନ୍ୟାର୍ଥ—'ବହୁଲୋଚନ' ଇନ୍ଦ୍ର, ଶିବ, ବ୍ରହ୍ମାଦି ଦେବତାମାନଙ୍କର 'ଅଶ' ଅମଙ୍ଗଳ ନ ହେବା ପାଇଁ ଅର୍ଥାତ୍ ରାବଣ ବଧ ପାଇଁ ବନକୁ ପଠାଇଲା ।

୩୩ଶ ପଦ—"ଅକଳିଷ୍ଟ ମଦନ ସ୍ୱରୂପ ଗୋଲ ଦାହକୁ ଅଯୋଧ୍ୟା ଲୋକଙ୍କ ହୃଦୟରୂପ ପିତ୍ତଳ ପାତ୍ରରେ ଗୋଡ଼ାଇ ଥୋଇଦେଲେ ; ତାଙ୍କ ପିତ୍ତଳ ପାତ୍ରରେ ରହି ଉକୁଟି ସିବା ଦ୍ୱାରା ଲୋକେ ଧାନ କଲେ ପିତା ସହିତ । ତେଣୁ ସେମାନେ ତାହା ଛୁ ଛୁ କରିବେ । ( ଲହୁଣୀ ବନକୁ ଗଲା, କୈକେୟୀର ଏହି ମଦନ ଗଣ ଅଯୋଧ୍ୟାରେ ରହିଲା, ଲୋକେ ସବୁ ଦିନ ତାହା ଶୁଣି ତାକୁ ଛି ଛି କରି ଧିକ୍କାରୁ ଥିବେ )। ଏମନ୍ତ ହରକ୍ତ ଉକତେ ବୋଲବୋଲି ହୋଇ ସମସ୍ତେ ଶୋକାକୁଳ ହୋଇ ପଡ଼ିଲେ ।

ବୃକ୍ଷରାଜ ପରି ସାକେତ ନଗରୀ କରି ଅଲକ୍ଷ୍ମୀ ଆଶ୍ରିତ ।
ତାର ରଥର କୈକେୟୀ ଅସ୍ପୃଷ୍ଟରୁ ଅସ୍ପୃଶ୍ୟ ହେଲା ମତ ।
ଚଳ ଦଳ ତଜନ ।
ତେଣୁ ମନ୍ଦୁରା-ଚର୍ବଣୀ ମନ । ୩୪ ।
ବଳ ତାମସୀ ନଦୀର ବନେ ପଶି ସେ ଦିନ ତହିଁ ରହିଲେ ।
ଚାଲି ପାଇ ଶୃଙ୍ଗବେରପତି ମିଳେ ପୃଚ୍ଛନ୍ତି ସୁମନ୍ତ୍ର କହିଲେ ।
ବୋଲେ ଶବରଧ୍ୱଜ ।
ବାଣ୍ଟି ନ ଦେଲେ କପାଇ ଦେଶ ? ୩୫ ।
ବାଣ୍ଟିଲେ ଯେ ଛଳେ ଏ ବନ ନଗରେ ଭବନ ନଗରେ ସେହି ।
ବ୍ୟକ୍ତ ବ୍ୟକ୍ତ ହୋଇ ସାନୁଜ ଯୁଗଳ ଅନୁସରଣକୁ ବହି ।

---

୩୪ଶ ପଦ—ବୃକ୍ଷରାଜ—ଅଶ୍ୱତ୍ଥ । ସାକେତନଗରୀ—ଅଯୋଧ୍ୟାପୁରୀ ।
୩୫ଶ ପଦ—ଶୃଙ୍ଗବେରପତି—ଗୁହଶବର । ଶବରଧ୍ୱଜ—ଶବରରାଜ ।

---

୩୪ଶ ପଦ—ଅଯୋଧ୍ୟା ନଗରୀ ଅଶ୍ୱତ୍ଥ ବୃକ୍ଷ ପ୍ରାୟ ହେଲା । ଅଶ୍ୱତ୍ଥ ବୃକ୍ଷରେ ଅଲକ୍ଷ୍ମୀ ଆଶ୍ରୟ କରି ରହିଥିବାରୁ ତାହା ରବିବାର ଦିନ ଅସ୍ପୃଶ୍ୟ ଅଟେ । ସେହିପରି ଅଯୋଧ୍ୟା ନଗରକୁ କୈକେୟୀ ରୂପୀ ରବିବାର ଆଶ୍ରୟ କରି ରହି ଥିବାରୁ ତାହା ଅସ୍ପୃଶ୍ୟ ଅଟେ । ( ଅଯୋଧ୍ୟାରେ ଆଉ ରହିବାକୁ କେହି ଇଚ୍ଛା କରୁ ନାହାନ୍ତି,—ରଥ ପଛରେ ଗୋଡ଼ାଉ ଅଛନ୍ତି) । ଅଶ୍ୱତ୍ଥପତ୍ର ହଲିଲେ ହସ୍ତୀ ଯେପରି ଚଗ ହୁଏ, ସେହିପରି ରାମଙ୍କ ବନଗମନ ସମୟରେ ଦୈନ୍ୟବଳ ସବୁ ଅଯୋଧ୍ୟାରେ ନ ରହି ରଥ ପଛରେ ଗୋଡ଼ାଇବାରୁ ମନ୍ଦୁରା ଅନାଦୃତା ହେଲା ।

୩୫ଶ ପଦ—ତମସା ନଦୀର କୂଳ ଯାଇ ସୁମନ୍ତ୍ର ରାମ, ଲକ୍ଷ୍ମଣ ଓ ସୀତା ସହିତ ବନରେ ପଶି ସେ ରାତ୍ରରେ ସେଠାରେ ରହିଲେ । ଶୃଙ୍ଗବେର ରାଜା ଗୁହ ଶବର ଖବର ପାଇ ଆସି ସେଠାରେ ପହଞ୍ଚିଲେ । ସେ ପଚାରିବାରୁ ସୁମନ୍ତ୍ର ସବୁ କଥା ବୁଝାଇ କହିଲେ । ତାହା ଶୁଣି ଶବରରାଜ କହିଲେ,"ରାଜା ଦେଶକୁ ବାଣ୍ଟି ନ ଦେଲେ କାହିଁକି ?" ( ଦେଶ ଭାଇମାନଙ୍କୁ ବାଣ୍ଟି ଦେଇଥିଲେ ରାମ ତ ବନକୁ ଯାଆନ୍ତେ ନାହିଁ ) ।

୩୬ଶ ପଦ—ସୁମନ୍ତ୍ର ଛଳ ବାକ୍ୟରେ ଉତ୍ତର ଦେଲେ, "ରାଜା ଦେଶକୁ ଭାଇମାନଙ୍କ ମଧ୍ୟରେ ବାଣ୍ଟି ଦେଲେ ତ । ରାମଚନ୍ଦ୍ର ପଦ୍‌ସେବକ

ରହିଲେ ସେ ଶତ୍ରୁଘ୍ନ ।
ବେଢ଼ି ସୈନ୍ୟ ରାଜଧାନୀର । ୩୬ ।
ଚଉଦଶ ଅବତାରେ ଏକ କପିଳ ପୁଣି ସେ ଛଦ୍ମ ଲମ୍ପଟ ।
କଟୀରେ ଜଟ ବାନ୍ଧ ତରୁପଟ ପିନ୍ଧିଲେ ବଲ୍କଳପଟ ॥
ବାହେ ଇଙ୍ଗୁଦୀମାଳ ।
ବନ୍ଧେ କର୍ଣ୍ଣେ ରୁଦ୍ରାକ୍ଷ କୁଣ୍ଡଳ । ୩୭ ।
ବୋଲ ହେଲେ ଭକ୍ତ ନର ନାରାୟଣ ପ୍ରାୟ ଦେଖାଇ ଦଣ୍ଡେ ।
ବଦରିକା ବନ ଭାବକୁ ସେ ବନ ସେବନ କଲା ରଭସେ ।
ଅକଳିତ ରଞ୍ଜନ ।
ଅକଳିତ ଦେଖି ହେଲେ ଜନ । ୩୮ ।
ବାହୁଡ଼ ନଗ୍ରକୁ ବୋଲିଁ ଯେ ଘେନିଲେ ବେଢ଼ି ଗଣ ଅତି ତ୍ୱର ।
ଦଶାନ୍ତଗ୍ରନ୍ଥିଗୁ ଏକାନ୍ତ ବନେ କ ଯାହାଁ ଅନୁଗତ ପର ।

---

୩୮ଶ ପଦ— ରଭସେ—ଶୀଘ୍ର । ଅକଳିତ—ଯାହା କଳନା କରି ହେବ ନାହିଁ ।

---

ଅରଣ୍ୟ ସଙ୍ଗରେ ରହିବେ, ଭରତ ଗୁପ୍ତପୂର୍ଣ୍ଣ ନଗରରେ ରହିବେ । ସାନ ଭାଇମାନେ ଅର୍ଥାତ୍ ଲକ୍ଷ୍ମଣ ଓ ଶତ୍ରୁଘ୍ନ ଜଣ ଜଣ ହୋଇ ଦୁହିଁଙ୍କ ପାଖରେ ଅନୁସରଣ କରି ରହିବେ ।" ରାମଲକ୍ଷ୍ମଣାଦି ସେ ରାତ୍ର ସେଠାରେ କଟାଇଲେ ଓ ରାଜଧାନୀରେ ସୈନ୍ୟ ବେଢ଼ି ରହୁଥିବାରୁ ସେଠାରେ ସୈନ୍ୟମାନେ ବେଢ଼ି ରହିଲେ ।

୩୭ଶ ପଦ—ବିଷ୍ଣୁଙ୍କର ଚଉଦଶ ଅବତାର ମଧ୍ୟରେ କପିଳ ଅବତାର ଗୋଟିଏ । ରାମଚନ୍ଦ୍ର ସେହି ଅବତାରରେ ଅର୍ଥାତ୍ କପିଳ ଋଷିଙ୍କ ବେଶରେ ଆସକ୍ତ ହୋଇ କଟୀରେ ଜଟା ବାନ୍ଧିଲେ ଓ ବୃକ୍ଷର ବଲ୍କଳ ରୂପ ବସ୍ତ୍ର ପିନ୍ଧିଲେ । ଇଙ୍ଗୁଦୀମାଳ ବାହୁରେ ବାନ୍ଧି ରୁଦ୍ରାକ୍ଷ କୁଣ୍ଡଳକୁ କର୍ଣ୍ଣରେ ବହିଲେ ।

୩୮ଶ ପଦ—ଅନନ୍ତର ରାମଲକ୍ଷ୍ମଣ ବେନି ଭାଇ ଭକ୍ତ ବୋଲି ହେଲେ, ତେଣୁ ନରନାରାୟଣ ଋଷି ପ୍ରାୟ ଦେଖାଗଲେ । ତତ୍କ୍ଷଣାତ୍ ସେ ବନ ବଦରିକାଶ୍ରମର ଭାବକୁ ପ୍ରାପ୍ତ ହେଲା । (ବଦରିକାଶ୍ରମରେ ନରନାରାୟଣ ଋଷି ଅବସ୍ଥାନ କରିଥାନ୍ତି) । ରାମ ଲକ୍ଷ୍ମଣଙ୍କର ଶୋଭା ସେ ସମୟରେ କଳି ହେଲା ନାହିଁ ସେ ଅତ୍ୟନ୍ତ ସୁନ୍ଦର ଦିଶିଲେ, ଲୋକମାନେ ତାହା ଦେଖି ବ୍ୟାକୁଳିତ ହେଲେ ।

୩୯ଶ ପଦ—ଶ୍ରୀରାମଚନ୍ଦ୍ର ପ୍ରଜାଙ୍କୁ "ନଗରକୁ ଫେରିଯାଅ" ଏହା କହିବାରୁ, ସେମାନେ ତାହା ଶୁଣିଲେ ନାହିଁ । ରଥକୁ ଘେରି ବେଢ଼ି ନିକଟରେ

ବଟୁଚୂଡ଼ ଗଉରୀ ।
ବସନ୍ତିକ ରାମ ସୀତା ଧର । ୩୯ ।
ବଲେପନ ଭୂତ ଏଣୁ ଶୁଭ୍ରକାନ୍ତି ଚନ୍ଦ୍ରାର୍ଦ୍ଧ ଚର ମୁକୁଟ ।
ବରବର୍ଣ୍ଣିନୀ ନାନାରତ୍ନଭୂଷଣୀ ପାର୍ଶ୍ୱରେ ଝଟ ଝଟ ।
ବାହକ ଯେ ସୁମନ୍ତ ।
ବ୍ରହ୍ମର୍ଷି ଲକ୍ଷ୍ମଣ ବନତ । ୪୦ ।
ବଶ୍ରାମନ୍ତେ ବଳଭୂରେ କହେ ନରେ ବନରେ ରଚିବା ପୁର ।
ବସ୍ତା ଦେଇଛନ୍ତି ଦଣ୍ଡକାରେ ପୂର୍ବେ ନ ଥିଲ କି ଦଣ୍ଡଧର ।

---

୩୯ଶ ପଦ—ବସନ୍ତଗୁଣ୍ଡିଚା—ଚୈତ୍ର ଗୁଣ୍ଡିଚା । ଏକାମ୍ରବନେ—ଭୁବନେଶ୍ୱରରେ । ବଟୁଚୂଡ଼—ମହାଦେବ । ଗଉରୀ—ପାର୍ବତୀ । ବଭାତ—ଶୋଭା ।

---

ଗମନ କରନ୍ତେ ତାହା ଭୁବନେଶ୍ୱରର ଅଶୋକାଷ୍ଟମୀ ଯାତ୍ରା ପରି ଶୋଭା ପାଇଲା । (ଅଶୋକାଷ୍ଟମୀ ଯାତ୍ରାରେ ରଥ ଚାଲିଲେ ତାହାର ଚାରିଆଡ଼େ ବହୁତ ଯାତ୍ରୀ ଭିଡ଼ ଚାଲିଥାନ୍ତି) । ରାମ ଓ ସୀତା ମହାଦେବ ଓ ପାର୍ବତୀ ପରି ସେ ରଥରେ ଶୋଭା ପାଇଲେ ।

୪୦ଶ ପଦ—ମହାଦେବ ଶୁକ୍ଳକାନ୍ତି ବିଶିଷ୍ଟ, ଭସ୍ମ ବିଲେପିତ ଓ ଶିରରେ ଅର୍ଦ୍ଧଚନ୍ଦ୍ରର ମୁକୁଟ ଧାରଣ କରିଥାଆନ୍ତି, ସେହିପରି ରାମ ଭସ୍ମ ବୋଳା-ହୋଇ ଥିବାରୁ ଶୁଭ୍ରକାନ୍ତି ବିଶିଷ୍ଟ ହୋଇଅଛନ୍ତି ଓ ତାହାଙ୍କ ଶିରରେ ଅର୍ଦ୍ଧ-ଚନ୍ଦ୍ରାକୃତି ମୁକୁଟ ଶୋଭା ପାଉଅଛି । ସୁବର୍ଣ୍ଣବର୍ଣ୍ଣା ନାନା ରତ୍ନାଳଙ୍କାରଭୂଷିତା ପାର୍ବତୀ ଶିବଙ୍କ ପାର୍ଶ୍ୱରେ ଝଟ ଝଟ ଦିଶିଲାପରି ଉତ୍ତମବର୍ଣ୍ଣା ବିବିଧ ରତ୍ନାଳଙ୍କାର-ମଣ୍ଡିତା ସୀତା ରାମଙ୍କ ପାର୍ଶ୍ୱରେ ଶୋଭା ପାଉଅଛନ୍ତି । ଶିବଙ୍କ ରଥବାହକ 'ସୁମନ୍ତ' ଅର୍ଥାତ୍ ରଥଚାଳକ ମନ୍ତ୍ରୀମାନେ ଦକ୍ଷ ଓ ଏ ରଥ ଚାଳକ ସୁମନ୍ତ୍ର ମନ୍ତ୍ରୀ । ଶିବଙ୍କ ପାଖରେ ବ୍ରହ୍ମର୍ଷିମାନେ ଅନନ୍ଦ ହେଲା ପ୍ରାୟ ରାମଙ୍କ ସମୀପରେ ବ୍ରହ୍ମର୍ଷି ଲକ୍ଷ୍ମଣ ବିଦ୍ୟମାନ ।

୪୧ଶ ପଦ—କଟକପୁର ଯାଇ ବନରେ ବିଶ୍ରାମ କରିବାରୁ ଲୋକମାନେ କହିଲେ, 'ଏ ବନରେ ନଗର ନିର୍ମାଣ କରିବା । ପୂର୍ବେ ଦଣ୍ଡକାରଣ୍ୟରେ କଣ ରାଜା ନ ଥିଲେ ? (ନିଶ୍ଚୟ ଥିଲେ) ମାତ୍ର ଉତ୍ତମ ନ ରାଜା ନ ଥିବାରୁ ତୁମ୍ଭ ପିତା ତୁମ୍ଭଙ୍କୁ ଏ ଅରଣ୍ୟ ଦେଇଅଛନ୍ତି । ତୁମ୍ଭେ ତାଙ୍କ କଥା ମାନି ଏଠାରେ ରାଜା

ବୋଲ ରାଘବ ମାନ ।
ତଥି ଅମ୍ଭେ ହୋଇ ପ୍ରଜାଜନ । ୪୧ ।
ବକ୍ତବ୍ୟ ସ୍ୱଗର ଏଥି ଅନୁରୂପ ପ୍ରଜା ଚତୁରଙ୍ଗ ଛନ୍ତି ।
ବସୁକ ସ୍କନ୍ଧ ସୁରଭି ପୟୋଧର ବ୍ରଜବ୍ରଜ ହୃଷ୍ଟବନ୍ତ ।
ବୃକ୍ଷ ସୁନାଶୀରସ୍ୟ ।
ବିହରନ୍ତି ଜେତେ ତନୁବାସ୍ୟ । ୪୨ ।
ବ୍ୟୁତପନ ରଥ ଗନ୍ଧର୍ବ ଉଟଜେ କରବାର ବିହାରକୁ ।
ବଦ୍ଧରେ ଶାଖୀ ଫଳବଧାଶୀ ଓଗାଳି ଅମ୍ଭ ପର୍ଣ୍ଣପାଳନକୁ ।

---

୪୨ଶ ପଦ—ବସୁକ ସ୍କନ୍ଧ—କାକୁସ୍ଥ ସହିତ, ବଣମଲ୍ଲୀ ସହିତ । ସୁରଭୀ—ଗାଈ, ଚମ୍ପାଗଛ । ପୟୋଧର—ନଡ଼ିଆ, କ୍ଷୀରଧାରୀ । ବ୍ରଜବ୍ରଜ—ଗୋପାଳସମୂହ । ସୁନାଶୀରସ୍ୟ—ସୁନାଶୀ ଗଛସମୂହ, ବଣିଅସବୁ । ତନୁବାସ୍ୟ—ତନ୍ତୀ, ବୁଢ଼ୀଅଣି ।

୪୩ଶ ପଦ—ରଥ—ଯାନବିଶେଷ, ବେତସବୃକ୍ଷ । ଗନ୍ଧର୍ବ—ଘୋଡ଼ା ମୃଗ । ଉଟଜ—ଓଡ଼, ପର୍ଣ୍ଣଶାଳା । କରବାର—ହସ୍ତସମୂହ, କରବା ପାଇଁ ଶାଖୀ—ପକ୍ଷୀ, ବୃକ୍ଷ । ଫଳଧାରୀ—ଖଡ଼୍ଗଧାରୀ, ଫଳବନ୍ତ ।

---

ହୁଅ । ଅମ୍ଭେ ପ୍ରଜା ହୋଇ ଏଠାରେ ରହିବୁ । ତୁମ୍ଭଙ୍କୁ ଛାଡ଼ି ଅମ୍ଭେ ଅଯୋଧ୍ୟାକୁ ଯିବୁ ନାହିଁ )।”

୪୨ଶ ପଦ—ଲୋକମାନଙ୍କ କଥା ଶୁଣି ରାମଚନ୍ଦ୍ର କହିଲେ, ଏଠାରେ ବନ ସଦୃଶ ପ୍ରଜା ଓ ଚତୁରଙ୍ଗ ବଳ ଅଛନ୍ତି, ଏଠାରେ ‘ବସୁକ’ ବଣମଲ୍ଲିକାସହ ‘ସୁରଭି’ ଚମ୍ପକ ଓ ନାଟଫଳ ବୃକ୍ଷ ରାଜ୍ୟରେ ବସୁସ୍କନ୍ଧ ଧେନୁ ରହିବାପ୍ରାୟ ରହିଅଛନ୍ତି । ‘ପୟୋଧରବ୍ରଜ’ ନାରିକେଳ ବୃକ୍ଷସମୂହ ‘ପୟୋଧର ବ୍ରଜ ଦୁଗ୍ଧ ବହନକାରୀ ଗୋପାଳଙ୍କ ପରି ବିଦ୍ୟମାନ ଅଛନ୍ତି । ସୁନାଶୀ ବୃକ୍ଷସବୁ ସ୍ୱର୍ଣ୍ଣଦାତାଙ୍କ ପରି ବନକୁ ଘେରି ରହିଅଛନ୍ତି । ଏଥିରେ ଜନ୍ମିତ ‘ତନୁବାସ୍ୟ’ ମାଙ୍କଡ଼ସା ରାଜ୍ୟର ତନ୍ତୀ ପ୍ରାୟ ବିହାର କରନ୍ତି । ( ଏ ବନରେ ସବୁପ୍ରକାର ପ୍ରଜା ଅଛନ୍ତି, ତୁମ୍ଭର ରହିବା ପ୍ରୟୋଜନ ନାହିଁ )।”

୪୩ଶ ପଦ—‘ଏଠାରେ ମୋର ବିହାରକରିବାପାଇଁ ଉଟଜପର୍ଣ୍ଣଶାଳା ରୂପ ଓଡ଼, ହସ୍ତୀସମୂହ, ‘ରଥ’ ବେତସବୃକ୍ଷରୂପ ରଥସବୁ ବିଦ୍ୟମାନ ଅଛନ୍ତି । ମୋହର ରକ୍ଷାକରିବା ପାଇଁ ଏଠାରେ ଫଳବନ୍ତ ବୃକ୍ଷସମୂହ ଖଡ଼୍ଗଧାରୀପଦାତିଙ୍କ ପରି ରହିଅଛନ୍ତି ।” ( ହସ୍ତୀ, ଅଶ୍ୱ, ରଥ ଓ ପଦାତିକ ଏହି ଚତୁରଙ୍ଗବଳ

ବୋଲ୍ ମଜ୍ଜନ ହେଲେ ।
ବଞ୍ଚାଇ ସେ ପଥ ସଙ୍ଗ ଗଲେ । ୪୩ ।
ବାହୁ ସୁମନ୍ତ୍ର ବିମାନ ସମ ଅଶ୍ୱବଶେ ଅଯୋଧ୍ୟା ଗମନ ।
ବାହୁଡଲେ ଜନେ ସେ ରଥଚିହ୍ନକୁ ଗୋଡ଼ାଇ ହରଷ ମନ ।
ବଣ ମୃଗତୃଷ୍ଣାରେ ।
ବାରି ବୁଝି ଯଥା ମୃଗ କରେ । ୪୪ ।
ବେଗି ଉଦବେଗୀ ହୋଇ ପରବେଶ ଭରଦ୍ୱାଜ ଆଶ୍ରମରେ ।
ବୀକ୍ଷଣ କରି ସୀତା ରାମ ଲକ୍ଷ୍ମଣ ତକ୍ଷଣ ସବୁ ପଚାରେ ।
ବୋଧେ କହିଲେ ଋଷି ।
ବୀରସିଂହ ଅରଣ୍ୟେ ବିଳସ । ୪୫ ।
ବଜ୍ର ତୀକ୍ଷ୍ଣ ନାରାଚ କରଜରେ ମଦାନ୍ଧଦନ୍ତୀ ଅସୁର ।
ବିମୋଦିତ ହେବ ଚିତ୍ରକୂଟ ଗିରେ କୋଟେ ବରବାରୁ ପୁର ।

---

୪୫ଶ ପଦ—ବେଗି—ବେଗବନ୍ତ । ଉଦ୍‌ବେଗୀ—ଉଦ୍‌ବିଗ୍ନ ପ୍ରଜାଙ୍କ ଲାଗି ବ୍ୟାକୁଳ । ବୀରସିଂହ—ବୀରଶ୍ରେଷ୍ଠ ।

୪୬ଶ ପଦ—ତୀକ୍ଷ୍ଣ ନାରାଚ—ତୀକ୍ଷ୍ଣ ଶର । କରଜ—ନଖ । ମଦାନ୍ଧଦନ୍ତୀ—ମଦମତ୍ତ ହସ୍ତୀ । ପୟସ୍ୱୀ—ଜଳପୂର୍ଣ୍ଣ । ସ୍ୱାଦ୍ୱୀ—ସ୍ୱାଦଯୁକ୍ତ ।

---

ଉଡୁଥିବାର ପ୍ରତୀତ ହେଲା) । ଏହା କହି ରାମଚନ୍ଦ୍ର ମୌନ ହେଲେ । ରଥ ଥାଉଁ ସେ ବାଟ ଛାଡି ଅନ୍ୟ ବାଟରେ ଗଲେ ।

୪୪ଶ ପଦ—ରାମଙ୍କ ଆଜ୍ଞାରେ ସୁମନ୍ତ୍ର ମନ୍ତ୍ରୀ ଅଯୋଧ୍ୟାକୁ ଲେଉଟି ଗଲା ପରି ରଥ ବାହି ନେଲେ । ସେବେ ରଥ ଚକ୍ରର ସେ ଚିହ୍ନକୁ ଦେଖି ହର୍ଷ ମନରେ ଗୋଡ଼ାଇ ଅଯୋଧ୍ୟାକୁ ବାହୁଡ଼ିଲେ । (ରଥ ଚିହ୍ନ ଅଯୋଧ୍ୟାକୁ ପଡ଼ିଥିବାର ଦେଖି ରାମ ଅଯୋଧ୍ୟାକୁ ଫେରିଗଲେ ଏହା ଭାବି ପ୍ରଜାମାନେ ଫେରିଗଲେ ) । ମୃଗ ମରୀଚିକାରେ ବଶ ହୋଇ ତାକୁ ଜଳ ମନେ କଲା ପରି ଏହା ହେଲା ।

୪୫ଶ ପଦ—ଭଲେ ପ୍ରଜାମାନେ ପୁଣି ପଛରେ ଗୋଡ଼ାଇ ଆସିବେ, ଏହି ଉଦ୍‌ବେଗରେ ଶୀଘ୍ର ଯାଇ ଭରଦ୍ୱାଜ ଋଷିଙ୍କ ଆଶ୍ରମରେ ପ୍ରବେଶ ହେଲେ । ଋଷି ରାମ, ସୀତା, ଲକ୍ଷ୍ମଣ ଏହି ତିନି ମୂର୍ତ୍ତିଙ୍କୁ ଦେଖି ତତ୍‌କ୍ଷଣାତ୍ ସବୁକଥା ପଚାରିଲେ । ରାମ ସମସ୍ତ ବୁଝାଇ କହିଲେ । ତାହା ଶୁଣି ଋଷି କହିଲେ, "ହେ ବୀରସିଂହ ! ଅରଣ୍ୟରେ ସିଂହ ସମ ବିହାର କର ।"

୪୬ ପଦ—"ସିଂହ ମଦମତ୍ତ ହସ୍ତୀକୁ ସୁତୀକ୍ଷ୍ଣ ନଖରେ ବିଦୀର୍ଣ୍ଣ କରି ଦର୍ପିତ ଲୀଳାରେ ବାସ କଲା ପରି ତୁମ୍ଭେ ତୀକ୍ଷ୍ଣ ଶରରେ ଗର୍ବୀ ଅସୁରଙ୍କୁ

ବହେ ପୟସ୍ୱୀ ନଦୀ ।
ଈପ୍‌ସିତ ତହିଁ ହୋଇ ସ୍ୱାଦ୍ୱୀ । ୪୬ ।
ବର୍ଣ୍ଣେ ସେ ଜନକ ତନୟା ଗୌରସ୍ ଗଭର ମର୍କତଗାତ୍ର ।
ବର୍ତ୍ମରେ ଗମନ ବନ୍ୟନାରୀ ଗ୍ରହିଁ ଚକିତ ସ୍ଥକିତ ନେତ୍ର ।
ଚର ଚାତକରଙ୍ଗୀ ।
ଅଟେ ଜଳଦ ଯେମନ୍ତ ଭୃଙ୍ଗୀ । ୪୭ ।
ବୋଲବୋଲି ହେଲେ ପରମ ସୁନ୍ଦର ଦର ଏ ପଥିକ ଦୁଇ ।
ବହୁଶ୍ରୀ ପୁଣି ରମଣୀ ଶିରୋମଣି କାହାର ଥିବଟି ହୋଇ ।
ବୋଲି ନିକଟେ ଗଲେ ।
ବଇଦେହୀଙ୍କି ସେ ପଚାରିଲେ । ୪୮ ।
ବରସେହା ଏ ପୁରୁଷ ସାର ଦୁହେଁ ସୋଦର କବା ତୁମ୍ଭର ।
ତୁଲନ୍ତି ଜଗତେ କେଉଁ ସଙ୍ଗତରେ ସ୍ୱସମେ ନ ମିଳେ ବର ।
ବୋଲି ଶିର ନମାଇ ।
ବର ଦେବର କେ ଯାଉ କହି । ୪୯ ।

---

ଜନାଶ କରି ଚିତ୍ରକୂଟ ପର୍ବତରେ ଆନନ୍ଦ ମନରେ ବାସ କର । ସେଠାରେ ବହୁଥିବା ପୟସ୍ୱୀ ନଦୀର ସୁସ୍ୱାଦୁ ଜଳ ପାନ କରି ପରିତୃପ୍ତ ହେବ ।"

୪୭ଶ ପଦ—ସ୍ୱର୍ଣ୍ଣବର୍ଣ୍ଣା ସୀତା, ଗୌରବର୍ଣ୍ଣ ଲକ୍ଷ୍ମଣ ଓ ମରକତମଣି ତୁଲ୍ୟ ନୀଳବର୍ଣ୍ଣ ରାମ ସେ ଜନକ ଭରଦ୍ୱାଜଙ୍କ ଆଶ୍ରମରେ ରହିଲେ । ପରଦିନ ପ୍ରତ୍ୟୁଷରୁ ସେ ତିନିହେଁ ଅରଣ୍ୟ ପଥରେ ଗମନ କରନ୍ତେ ବନବାସୀ ସ୍ତ୍ରୀମାନେ ତାଙ୍କୁ ଦେଖି ଚକିତ ଓ ସ୍ଥିର ହେଲେ ଏବଂ ଉତ୍କଣ୍ଠ ଚାତକମାନେ (ଆକାଶରେ ଉଡୁଥିବା ମେଘକୁ) ଦେଖି ଯେପରି କୌତୂହଳ ସେମାନେ ଉତ୍ସୁକ ହୁଅନ୍ତି, ସେମାନେ ସେହିପରି ଉତ୍ସୁକ ହେଲେ ।

୪୮ଶ ପଦ—ବନବାସୀ ନାରୀମାନେ କୁହାକୋହି ହେଲେ, "ଏ ବାଟୋଇ ଦୁହେଁ ସୁନ୍ଦର ପୁରୁଷଙ୍କ ମଧ୍ୟରେ ଶ୍ରେଷ୍ଠ ଅଟନ୍ତି । ଏ ରମଣୀ ଶିରୋମଣି ସେ ଦୁହିଁଙ୍କ ମଧ୍ୟରୁ କାହାର ସ୍ତ୍ରୀ ହୋଇଥିବ ?" ଏହା କଥାବର୍ତ୍ତା ହୋଇ ସେମାନେ ସୀତାଙ୍କ ନିକଟକୁ ଗଲେ ଓ ବୈଦେହୀଙ୍କି ପଚାରିଲେ ।

୪୯ଶରୁ ପଦ—"ହେ ଶ୍ରେଷ୍ଠନାରୀ ! ଏ ପୁରୁଷଶ୍ରେଷ୍ଠ ଦୁହେଁ ତୁମ୍ଭର କିଏ କି ? ତୁମ୍ଭ ସମ ନଟେ ଏ ସଂସାର ମଧ୍ୟରେ ବର ନ ମିଳିବାରୁ ସଙ୍ଗେ ସଙ୍ଗେ କେଉଁ ତୁଲ୍ୟ ଅଛନ୍ତି କି ?" ନାରୀମାନେ ଏପରି ପଚାରନ୍ତେ, ସୀତା ମୁଣ୍ଡ ନୁଆଇଲେ ( ଭାଇ ନୁହନ୍ତି ବୋଲି କହିଲେ ) । ସୀତାଙ୍କ କଥା ବୁଝିପାରି ସେଠୁ

ବିଳମ୍ବ କରନ୍ତେ ପ୍ରଳମ୍ବ-କୁନ୍ତଳା ତାତେ ଲକ୍ଷ୍ମଣ କୁମାର ।
ତାମାଙ୍କୁ ବୋଧିଲେ ଏ ଦେବର ବୋଲି ମନ୍ଥର ଗତି ସତ୍ୱର ।
ବୃଦ୍ଧି କରନ୍ତେ ନୋହି ।
ବରଷ୍ଠା କି ଗର୍ଭାଳସୀ ହୋଇ । ୫୦।

ଜନବୃକ୍ଷଦଳେ ଚାଲିଲ ପକ୍ଷଶ୍ୟେ ସରଳେ ଏ ନୋହେ ଛଦ୍ମ ।
ବିନ୍ୟାସ ଚରଣ କଲ ସ୍ଥଳେ ଯହିଁ ଉଠୁଛି ଯାଉଛି ପଦ୍ମ ।
ବସୁଚନ୍ଦ୍ର ରୋଲମ୍ବ ।
ବାଲିଶତ୍ଵଙ୍କୁ ଦଅନ୍ତି ଚୁମ୍ବ । ୫୧ ।

ବ୍ୟକ୍ତ ହୋଇଯାଏ ଗୁପ୍ତ ଥିଲେ ସକ୍ଷଣବାସୀ ଗମିଲେ ।
ରାମ୍ଭୁ ଭେଳା ବାଳା ସହୋଦର ମେଳା ଗଙ୍ଗା ପାର ହୋଇ ଗଲେ ।
ବଜେ ଚିତ୍ରକୂଟର ।
ବାନପଦେ କହେ ବୀରବର । ୫୨ ।

---

୫୦ଶତ୍ ପଦ—ପ୍ରଳମ୍ବକୁନ୍ତଳା—ସୁଦୀର୍ଘବେଣୀ । ବରଷ୍ଠା—ହଂସୀ ।
୫୧ଶତ୍ ପଦ—ଜନ୍ମବୃକ୍ଷଦଳେ—ପଦ୍ମରେ । ଛଦ୍ମ—କପଟ । ରୋଲମ୍ବ—ଭ୍ରମର

---

ନାରୀ କହନ୍ତି "ତାହା ହେଲେ ଏହାଙ୍କ ମଧ୍ୟରୁ ବର କିଏ ଓ ଦେବର କିଏ ? ଏହା କହ ଯାଅ ।"

୫୦ଶତ୍ ପଦ—ଦୀର୍ଘବେଣୀ ସୀତା ବନବାସୀ ନାରୀଙ୍କ ସହିତ କଥାବାର୍ତ୍ତା କରିବା ହେତୁ ବାଟ ଚାଲିବାରେ ବିଳମ୍ବ କରନ୍ତେ, ଲକ୍ଷ୍ମଣ ଡାକ ଦେଲେ (ବିଳମ୍ବ ନ କର ଆସ-କହିଲେ) । ସେତେବେଳେ ସୀତା ସେ ନାରୀମାନଙ୍କୁ 'ଏ ଦେବର' ଏହା କହି ବୋଧ ଦେଲେ ( ଏ ଦେବର ଡାକୁଅଛି ଦେବାରୁ ଅପର ଜଣକ ବର ବୋଲି ପ୍ରକାଶ ପାଇଲା) ଓ ଗର୍ଭାଳସୀ ହଂସୀର ମନ୍ଥର ଗତିକୁ ନିନ୍ଦା କରୁଥିବା ମନ୍ଦ ଗତିକୁ ସେ ବୃଦ୍ଧି କରି ଶୀଘ୍ର ଚାଲିଲେ ।

୫୧ଶତ୍ ପଦ—ଗର୍ଭାଳସୀ ହଂସୀ ପଦ୍ମପତ୍ରରେ ଚାଲିଲା ପ୍ରାୟ ସୀତାଙ୍କ ଗମନ ପ୍ରତୀତ ହେଉଛି । ଏହା ମିଥ୍ୟା କଥା ନୁହେଁ, କାରଣ ସୀତାଙ୍କ ପଦକ୍ଷେପ ସ୍ଥାନରେ ପଦ୍ମ ଫୁଟି ଉଠୁଛି ( ତାଙ୍କ ପଦଚିହ୍ନ ପଦ୍ମଫୁଲ ପ୍ରାୟ ଦେଖା ଯାଉଛି) ଓ ସେଥିରୁ ପଦ୍ମଗନ୍ଧ ଯାଉଥିବାରୁ ଭ୍ରମରମାନେ ପଦ୍ମ ଭ୍ରମରେ ଚୁମ୍ବନ କରୁଅଛନ୍ତି ।

୫୨ଶତ୍ ପଦ—ଏମାନେ ଅଦୃଶ୍ୟ ହେବାଯାଏ ଅରଣ୍ୟର କୁଟୀରବାସୀ ନାରୀମାନେ ଗୁପ୍ତ ଥିଲେ । ଅଦୃଶ୍ୟ ହୋଇଯାନ୍ତେ ସେମାନେ ଫେରି ଗଲେ । ଅନନ୍ତର ସୀତା ଓ ଲକ୍ଷ୍ମଣ ସହିତ ମିଳି ରାମଚନ୍ଦ୍ର ଭେଳା ବାନ୍ଧି ଗଙ୍ଗାନଦୀକୁ ପାର ହୋଇ ଚଳେ ଓ ଚିତ୍ରକୂଟ ପର୍ବତରେ ବିଜେ କଲେ । ବୀରବର ଜାଣନ ପଦରେ ଏ ଗ୍ରନ୍ଥ କହିଲେ ।

---

# ଅଷ୍ଟାଦଶ ଛାନ୍ଦ

## ରାଗ—ବିଭାସଗୁର୍ଜ୍ଜରୀ

ବନ୍ୟା ଶିଖରର ତଳୁଁ ବିପ୍ରଲବ୍ଧ ପ୍ରାୟ ହୋଇ
ଲୁଚିବାର ପ୍ରବର୍ତ୍ତାଇ ଅଛି ଯେ ।
ବିଟପ ପ୍ରକମ୍ପକର ସଙ୍ଗତ ସହଚରୀର
ପୁର ଅଭିମୁଖହୁଁ ହୋଇଛି ଯେ ।୧।
ବିରସ ଖଣ୍ଡିତା ସେହୁ ପିକବାଣୀରେ ଛଳଇ
ପ୍ରବୃତ୍ତି କରଇ ମଦନକୁ ଯେ ।
ବିସ୍ମରଣ କର ସଙ୍ଗ ପୟୋଧର ଫଳ ତୁଙ୍ଗ
ପୁରୁଷ ପ୍ରକାଶି ରଞ୍ଜନକୁ ଯେ ।୨।

---

୧ମ ପଦ—ବନ୍ୟା—ବନସମୂହ । ଶିଖରୀ—ପର୍ବତ । ଲୁଚିବାର—ଲଟିସମୂହ । ବିଟପ—ପତ୍ର, ବିଟପୁରୁଷ । ସହଚରୀ—ସଖୀ, ଝିଣ୍ଟିନାମକ ବୃକ୍ଷ-ବିଶେଷ । ପୁର—ଗୃହ, ଗୁଳ୍ମ ।

୨ୟ ପଦ—ପୟୋଧର—ନାରିକେଳ, ସ୍ତନ । ତୁଙ୍ଗ—ଉନ୍ନତ । ପୁରୁଷ—ପୁନ୍ନାଗ ବୃକ୍ଷ, ନାୟକ । ରଞ୍ଜନ—ରକ୍ତଚନ୍ଦନ ।

---

## ଅଷ୍ଟାଦଶ ଛାନ୍ଦ

୧ମ ପଦ—ଚିତ୍ରକୂଟ ପର୍ବତର ବନସମୂହ ବିପ୍ରଲବ୍ଧା ସ୍ତ୍ରୀ ପ୍ରାୟ ଶୋଭା ପାଉଅଛି । ବିପ୍ରଲବ୍ଧା ସ୍ତ୍ରୀ 'ଲୁଚିବାର'ମାନ ଦରକାରେ ମଣୁଥାଏ, ଏ ବନ ସେହିପରି 'ଲୁଚିବାର' ଲଟିସମୂହଙ୍କ ଦ୍ୱାରା ମଣ୍ଡିଅଛି । ବିପ୍ରଲବ୍ଧା ନାରୀ ବିଟ ପୁରୁଷଙ୍କୁ ହସ୍ତ ହଲାଇ ନାହିଁ କଲା ପ୍ରାୟ, ଏ ବନ ବୃକ୍ଷର ପତ୍ରମାନଙ୍କୁ ପବନ ଦ୍ୱାରା ଦୋହଲାଉଅଛି । ଅଉ ମଧ୍ୟ ସେ ସଖୀଙ୍କ ସହିତ ଗୃହାଭିମୁଖିନୀ ହେଲା ପରି ଏ ବନ ଝିଣ୍ଟିବୃକ୍ଷର ସଙ୍ଗତ ଲାଭ କରିଅଛି, ଗୁଳ୍ମ ବୃକ୍ଷର ଅଭିମୁଖୀ ହୋଇଅଛି ।

୨ୟ ପଦ—ପୁଣି ସେହି ବନ-ନାୟିକା କୋକିଳଧ୍ୱନି ରୂପ କଥାରେ ଖଣ୍ଡିତା ବଚନ କହି କାମରୂପ ବସନ୍ତ ପବନକୁ ବୃତ୍ତି କରୁଅଛି । ଉନ୍ନତ ଓ ହସ୍ତ ଦ୍ୱାରା ସ୍ପର୍ଶ ହୋଇ ନ ଥିବା ସ୍ତନ ରୂପ ନାରିକେଳ ଫଳ ଦେଖାଇ ପୁରୁଷର ଅନୁରାଗକୁ ବଢ଼ାଉଅଛି । (ଫଳିତାର୍ଥ—ଉକ୍ତ ବନରେ ସର୍ବଦା ବସନ୍ତ ପବନ ବହୁଛି, କୋକିଳ ବୋବାଉଛି । ଖୁବ୍ ଉଚ୍ଚରେ ଫଳିଥିବା ହେତୁ ଉକ୍ତ ବନର ନାରିକେଳ ଅସ୍ପୃଶ୍ୟ ହୋଇଅଛି । ଅଉ ମଧ୍ୟ ସେଠାରେ ପୁନ୍ନାଗ, ଚନ୍ଦନ ପ୍ରଭୃତି ବହୁତ ଗଛ ଅଛି ) ।

ବହୂର ଲକ୍ଷ୍ମଣ ଘନ — ପବନ ଭଗ୍ନ ଚନ୍ଦନ
ଦାରୁ ଆଣି ଗୃହବାସ କଳ୍ପ ଯେ ।
ବଦ୍ରୁମେ ତାହାର ଛାଇ — ବାହ୍ୟ ନଳଦରେ ଦେଇ
କସ୍ତୁରୀ ଗୈରିକେ ଚିତ୍ର ଲିହି ଯେ ।୩।
ବାରଣ ବାରଣ ରଣ— — କଷେ ଯେଉଁ ରଦଚୂର୍ଣ୍ଣ
କ୍ଷୋଦ କରି ଅଜିରେ ପକାଇ ଯେ ।
ବୈଦେହୀ-ରାଘବ ମିଳି — ଭୁଞ୍ଜନ୍ତି ଏକାନ୍ତ କେଳି
ହରଷେ ଧବଳ ନିଶି ନେଇ ଯେ ।୪।
ତୁରୁଷ୍କଧୂପରେ ଧୂପିତ — ସେ ଓକ କଲେ ନିରତ
ଦ୍ରାକ୍ଷା ଭକ୍ଷଣରେ ହୋଇ ତୋଷ ଯେ ।
ବିସ୍ମରି ସ୍ୱପୁର ନର୍ମ — ଶଯ୍ୟା କୃଷ୍ଣସାର ଚର୍ମ
ଏବେ ଶୁଣ ସାଧୁ ଆନ ରସ ହେ ।୫।

---

୩ୟ ପଦ—ବହୂର—ଅଲ୍ପଦୂର । ବଦ୍ରୁମ—କୋମଳ ପତ୍ର ।
୪ର୍ଥ ପଦ—ବାରଣ—ହସ୍ତୀ । ରଣ—ଯୁଦ୍ଧ । ରଦଚୂର୍ଣ୍ଣ—ଦନ୍ତଚୂର୍ଣ୍ଣ । କ୍ଷୋଦ—ଚୂର୍ଣ୍ଣ ବା ଧୂଳି । ଅଜିରେ—ଅଗଣାରେ ।
୫ମ ପଦ—ତୁରୁଷ୍କ ଧୂପରେ—କୁନ୍ଦ୍ରୁମ ଧୂପରେ ବା ସରଳ ଧୂପରେ । ଧୂପିତ—ସୁବାସିତ । ଓକ—ଗୃହ ।

---

୩ୟ ପଦ—ଲକ୍ଷ୍ମଣ ସେହି ବନର ଟିକ୍ ଦୂରକୁ ଯାଇ ନିବିଡ଼ ବନରୁ ପବନ ଯୋଗେ ଭଗ୍ନ ହୋଇଥିବା ଚନ୍ଦନ କାଷ୍ଠ ଆଣି ସୁନ୍ଦର ଗୃହ ନିର୍ମାଣ କଲେ ଓ ତାହା ବୃକ୍ଷର କୋମଳ ପତ୍ରରେ ଛାଉଣି କରି ବେଣା ଚେରର ବାଡ଼ ଦେଲେ ଏବଂ କସ୍ତୁରୀ ଓ ଗେରୁରେ ଚିତ୍ର ଲେଖିଲେ ।

୪ର୍ଥ ପଦ—ହସ୍ତୀ ହସ୍ତୀଙ୍କ ଯୁଦ୍ଧ ସମୟରେ ଦନ୍ତର ଘର୍ଷଣ ହେତୁ ଯେଉଁ ଦନ୍ତଚୂର୍ଣ୍ଣସବୁ ପଡ଼ିଥିଲା, ତାହା ଆଣି ଗୃହର ଅଗଣାରେ ପକାଇଲେ । ସେହି ଗୃହରେ ରାମଚନ୍ଦ୍ର ଓ ସୀତା ଦୁହେଁ ମିଳି ଆନନ୍ଦରେ ଦିନରାତ୍ରି ଯାପନ କରି ଏକାନ୍ତରେ କେଳି କଲେ ।

୫ମ ପଦ—ସେହି ପର୍ଣ୍ଣକୁଟୀରକୁ ସରଳ ଧୂପରେ ସୁବାସିତ କଲେ । ଦ୍ରାକ୍ଷାରସ ଭୋଜନରେ ନିରନ୍ତର ତୋଷ ହୋଇ ମୃଗ ଚର୍ମର ଶଯ୍ୟାରେ ଶୋଇ ଅଯୋଧ୍ୟାର ଖେଳ କୌତୁକ ହାସ ପରିହାସକୁ ଭୁଲିଗଲେ । ହେ ସାଧୁଜନେ ! ଏବେ ଆନ କଥା ଶ୍ରବଣ କର ।

ବାହୁଡ଼ି ସୁମନ୍ତ ଗଲା ନୃପ ପାର୍ଶ୍ୱକୁଁ ଚହଲା,
ରାଣୀଗୋଷ୍ଠେ ପାଶେ ତହିଁ ଥିଲେ ଯେ ।
ବହୁ ମୁନିଭବ ବେଶ ଜାନକୀ ସଙ୍ଗତେ ଶେଷ
ନ କହି ବିପଥେ ସର୍ବେ ଗଲେ ସେ ।୬।
ବନବାସ ସ୍ୱନ୍ତ ଶୁଣି ବନବାସ ନେତ୍ରେ ଆଣି
ହୃଦମଧ୍ୟେ ରାମ ବହୁରତ ଯେ ।
ଦ୍ୱି-ଜଦ୍ୱନିରେ ଲୋଳ ସୁମନ ଭ୍ରମରେ ମେଳ
ଦଶରଥ ଏମନ୍ତ ବଥିତ ଯେ । ୭ ।
ବ୍ୟାଧ ପ୍ରାୟ ହୋଇ ମୁହିଁ ଜଳଘାଟ ଜଗିଥାଇ
ଅନ୍ଧ ତପିସୁତ ନେଇଁ ମାରି ଯେ ।

---

୬ଷ୍ଠ ପଦ—ରାଣୀଗୋଷ୍ଠେ—ରାଣୀସମୂହ । ବିପଥରେ—ଅବାଟରେ ।
୭ମ ପଦ—ବନବାସ—ଲୋତକ ଜଳ । ଦ୍ୱି-ଜଧ୍ୱନି—ପକ୍ଷୀମାନଙ୍କର ମଧୁର ସ୍ୱନ । ଲୋଳ—ଚଞ୍ଚଳ । ସୁମନ—ପୁଷ୍ପ, ଉତ୍ତମ ମନ ।

---

୬ଷ୍ଠ ପଦ—ରାମ, ଲକ୍ଷ୍ମଣ ଓ ସୀତାଙ୍କୁ ତମସାତୀରରେ ଛାଡ଼ି ସୁମନ୍ତ ବାହୁଡ଼ିଗଲେ । ରାଣୀ ସମୂହ ଓ ପାତ୍ରମନ୍ତ୍ରୀଙ୍କ ସହିତରେ ଥାଇ ରାଜା ଦଶରଥ ପଚାରନ୍ତେ, ସେ କହିଲେ, "ରାମ ଓ ଲକ୍ଷ୍ମଣ ଦୁଇଭାଇ ମୁନିବେଶ ଧରି ଜାନକୀଙ୍କୁ ସଙ୍ଗରେ ନେଇ ମୋତେ ନ କହି ରାତ୍ର ଥାଉଁ ଅବାଟରେ ଚାଲିଗଲେ ।"

୭ମ ପଦ—ରାମ ଲକ୍ଷ୍ମଣଙ୍କର ବନବାସ କଥାମାନ ଶୁଣି ରାଜା ସେହି ବନବାସକୁ ନେତ୍ର ଓ ହୃଦୟରେ ସ୍ଥାନ ଦେଲେ, ନେତ୍ରରେ 'ବନ' ଅର୍ଥାତ୍ ଜଳ ବାସ କଲା (ନେତ୍ରରୁ ଲୋତକ ଝରିଲା) । ବନରେ ମୃଗ ବିହାର କଲାପରି ହୃଦନ୍ତରେ ରାମଚନ୍ଦ୍ର ବିହାର କଲେ । ସେ ସବୁବେଳେ ରାମ ରାମ ହୃଦୟରେ ଗୁଣି ହେଲେ । ବନ ମଧ୍ୟରେ ପକ୍ଷୀମାନେ ଅବ୍ୟକ୍ତ ମଧୁର ଧ୍ୱନିରେ ଶବ୍ଦ କଲାପରି ରାଜାଙ୍କ ହୃଦୟ ବ୍ୟାକୁଳ ଶବ୍ଦରେ ପୂରି ଉଠିଲା । ବନରେ ପୁଷ୍ପ ସବୁ ଭୃଙ୍ଗମାନଙ୍କରେ ମିଳିତ ହେଲାପରି ରାଜାଙ୍କର ଉତ୍ତମମନ ଭ୍ରାନ୍ତିରେ ପୂର୍ଣ୍ଣ ହେଲା । ( ରାମଙ୍କ ବନବାସ କଥା ଶୁଣି ଦଶରଥଙ୍କ ନେତ୍ରରୁ ଲୋତକ ଝରିଲା, ସେ ହୃଦୟରେ ରାମ ନାମ ଘୋଷି ହେଲେ । ଚିତ୍ତ ବଡ଼ ବ୍ୟାକୁଳ ହେଲା ଏବଂ ତାଙ୍କର ଅଟଳମନରେ ମଧ୍ୟ ବିଭ୍ରମ ଉପୁଜିଲା ) । ଅନନ୍ତର ଏହିପରି ବ୍ୟାକୁଳିତ ଓ ଅସ୍ଥିର ଚିତ୍ତ ଦଶରଥ କହିଲେ—

୮ମ ପଦ—"ପୂର୍ବେ ମୁଁ ବ୍ୟାଧପ୍ରାୟ ହୋଇ ଜଳ ଘାଟରେ ଜୀବ ବଧ କରିବା ପାଇଁ ଜଗି ବସିଥିଲି । ତେବେ ଅନ୍ଧ ମୁନିଙ୍କ ପୁତ୍ର ଜଳ ନେବାବେଳେ

ବୁଡାଇ କୁମ୍ଭ ସେ କୁମ୍ଭୀ ଶବଦ ଭ୍ରମେ ଅରମ୍ଭି
ତାକୁ ନାଶିଲି ପ୍ରହାରି ଶର ଯେ ।୮।
ତପୁଥିଲେ ଅନ୍ଧନେତ୍ର ମାତା ପିତା ଯଥା ପତିବ୍ରତା
ଚିତା କରାଇ ମୋହର କରେ ଯେ ।
ବାୟୁସଖାରେ ପଶିଲେ ସେକାଳେ ଏ ଶାପ ଦେଲେ
ସୁତ ମୁଖ ନ ଦେଖି ନାଶରେ ଯେ ।୯।
ବଣ୍ଣାମତି ସେହି କାଳ ଜୀବନ ଯିବାର ମୂଳ
ହେଲା ଅଶୁଭସ୍ୱପ୍ନ ମହିଷୀ ଯେ ।
ବୀର ଗଣେଶ ଶ୍ରୀରାମ ମୂଷିକ କରଣେ କ୍ଷମ
ଯମକୁ ସେ ହୋଇ ନାହିଁ ପାଶ ଯେ ।୧୦।

---

୮ମ ପଦ—ବ୍ୟାଧ—ଶବର । କୁମ୍ଭ—ମାଠିଆ । କୁମ୍ଭୀ—ହସ୍ତୀ ।
୯ମ ପଦ—ଚିତା—ଶ୍ମଶାନାଗ୍ନି । ବାୟୁସଖା—ଅଗ୍ନି ।
୧୦ମ ପଦ—ପାଶ—ପାଖରେ ।

---

କୁମ୍ଭ ଜଳରେ ବୁଡ଼ାନ୍ତେ, ସେ କୁମ୍ଭ 'କୁମ୍ଭୀ' ହସ୍ତୀର ପ୍ରାୟ ଶବ୍ଦ କଲା । (ମାଠିଆ ପାଣିରେ ବୁଡ଼ାଇଲାବେଳେ ଯେଉଁ ଶବ୍ଦ ହେଲା, ତାହା ହାତୀର ଶବ୍ଦପରି ଶୁଭିଲା) । ମୁଁ ଭ୍ରମବଶତଃ ହସ୍ତୀ ବୋଲି ମନେ କରି ଶର ପ୍ରହାରଦ୍ୱାରା ତାକୁ ବିନାଶ କଲି ।"

୯ମ ପଦ—"ପରେ ଜାଣିପାରି ସେ କଥା ଯାଇ କହିବାରୁ ତାହାର ମାତା ପିତା ଅତ୍ୟନ୍ତ ଦୁଃଖରେ ମୋର ହସ୍ତରେ ଚିତାଗ୍ନି କରାଇଲେ ଏବଂ ଯେପରି ପତିବ୍ରତା ନାରୀ ପତିର ଚିତାରେ ପ୍ରବେଶ କରେ, ସେହିପରି ସେ ଅଗ୍ନିରେ ପଶିଲେ । ସେତେବେଳେ ମୋତେ ଶାପ ଦେଲେ, 'ତୋହର ନାଶ ସମୟରେ ତୁ ପୁତ୍ରର ମୁଖ ଦେଖିବୁ ନାହିଁ ।'"

୧୦ମ ପଦ—ସେହି ଶାପର ସମୟ ଆସି ଉପସ୍ଥିତ ହେଲା (ମୋହର ମୃତ୍ୟୁ ସୁନିଶ୍ଚିତ) । ମହିଷୀ କୈକେୟୀ ମଇଁଷୀରୂପ ଅଶୁଭ ସ୍ୱପ୍ନ ପରି ହେଲା (ମଇଁଷୀ ସ୍ୱପ୍ନ ଦେଖିଲେ ମୃତ୍ୟୁ ହୁଏ) । ବୀର ଗଣେଶ ଯମକୁ ମୂଷିକ କରିବାକୁ ଏକା ସକ୍ଷମ । ଗଣେଶରୂପୀ ବୀରଶ୍ରେଷ୍ଠ ରାମଚନ୍ଦ୍ର ତ ମୋ ପାଖରେ ନାହାନ୍ତି । (ଯମ ହାତରୁ ମୋତେ ଆଉ କିଏ ରକ୍ଷା କରିବ ?)

ବହୁ ପ୍ରତିପଦୁଁ ତହୁଁ ପକ୍ଷ ବାର ଯୋଗ ହୋଇ
ପୂର୍ଣ୍ଣେ ଝଜା କ୍ଷୟାତିଥି ହେଲା ଯେ ।
ବଧନ୍ତ ଏଣୁ ସେକ୍ଷଣ ମାସ ସବୃଷ ପ୍ରମାଣ
କରଣ ଗଣି ସଞ୍ଚାର ଥିଲା ଯେ । ୧୧ ।
ବଢ଼ିମାହର ମନ୍ଦରେ ସେ ନୃପ ଯେଣୁ ବସ୍ତିରେ
ତୈଳପାତ୍ରେ ତେଣୁ କଲେ ଦାନ ସେ ।
ବହୁ ଭରତପାଶେ ପ୍ରେଷଣ କଲେ ରଭସେ
ଜନ୍ଧ ବିଦ୍ୟାପ୍ରାପ୍ତ ରତ ଆନ ସେ । ୧୨ ।
ବତ ସେ ମେଘ ଗମନ ପ୍ରାପ୍ତେ ଚଳାଇ ବମାନ୍
ପ୍ରବେଶ ହୋଇଲେ ଅଯୋଧ୍ୟାର ଯେ ।

---

୧୨ଶ ପଦ—ବଢ଼ିମାହର—ଗର୍ବହର । ମନ୍ଦ—ଶନିମହାଗ୍ରହ । ବହୁ—ଦୂତ ।

୧୩ଶ ପଦ—ଲକ୍ଷ୍ମଣ ହୀନ—ଲକ୍ଷଣ ଶୂନ୍ୟ, ଲକ୍ଷ୍ମଣ ନ ଥିବାରୁ । ରାମରଙ୍ଗ —ରାମରୂପ ରଙ୍ଗରସ ।

---

୧୧ଶ ପଦ—ଯେପରି ଚନ୍ଦ୍ର ମାସରେ ପ୍ରତିପଦାଦି ତିଥି, ପକ୍ଷ, ଯୋଗ, ବାର, କରଣ ଓ ରାଶିମାନଙ୍କର ସଞ୍ଚାର ଥାଏ, ସେହିପରି ଏହି ତଥା ଚନ୍ଦ୍ର ବନ୍ଧୁ ତାଙ୍କର ପ୍ରତି କଥାରେ ସ୍ୱରଭଙ୍ଗ ହେଲା ଓ ମୃତ୍ୟୁସମୟର ସାତ୍ତ୍ୱିକ ଲକ୍ଷଣମାନ ପ୍ରକାଶ ପାଇଲା । କ୍ରମେ ଇନ୍ଦ୍ରିୟସମୂହ ଶିଥିଳ ହୋଇ ପଡ଼ିଲା । ମୃତ୍ୟୁ ତାହାଙ୍କର ଅତିଥି ରୂପେ ଉପସ୍ଥିତ ହେଲା । ତେଣୁ ଏହି ମୃତ୍ୟୁ ସମସ୍ତ ଚନ୍ଦ୍ରମାସ ସବୃଷ ବାଦିତ ହେଲା । ( ଚନ୍ଦ୍ର ଯେପରି କ୍ରମଶଃ କ୍ଷୀଣ ହୋଇ ଅମାବାସ୍ୟାରେ କ୍ଷୟ ହୁଏ, ସେହିପରି ରାଜା ଦଶରଥ କ୍ରମଶଃ ଶିଥିଳ ହୋଇ ଶେଷରେ ନିଧନ ଲଭିଲେ )।

୧୨ଶ ପଦ—ରାଜା ଦଶରଥ ଯେହେତୁ ଶନିଗ୍ରହର ବଢ଼ିମାରୁ ଖର୍ବ କରିଥିଲେ, ତେଣୁ ପାତ୍ର ମନ୍ତ୍ରୀମାନେ ବିଗ୍ରହ କରି ତାଙ୍କର ମୃତ ଦେହକୁ ତୈଳ ପାତ୍ରରେ ରଖିଲେ । ( ପୁତ୍ରମାନେ ପାଖରେ ନ ଥିବାରୁ ମହାବୀର ଦଶରଥଙ୍କ ମୃତ ଦେହ ତୈଳ ପାତ୍ରରେ ରଖାଗଲା । ପୁଣି ଶନିଦୃଷ୍ଟି ସମୟରେ ତୈଳ-ପାତ୍ର ଦାନ କରିବା ବିଧି )। ଭ[illegible]ତଙ୍କ ନିକଟକୁ ବେଗରେ ଦୂତ ପ୍ରେରଣ କଲେ । ସେ ଦୂତମାନେ ଯୌନ୍ଦ୍ରଜାଲିକଙ୍କ ପରି କପଟ କଥାମାନ ଭରତଙ୍କୁ କହିଲେ ।

୧୩ଶ ପଦ—ଦୂତଙ୍କଠାରୁ କପଟ କଥାମାନ ଶୁଣି ବାୟୁବେଗରେ ମେଘ ଗମନ କଲା ପ୍ରାୟ ଭରତ ରଥ ଚଳାଇ ଆସି ଅଯୋଧ୍ୟାରେ ପ୍ରବେଶ ହେଲେ,

ବିଧବା ନାରୀ ସମାନ    ଦିଶେ ସେ ଲକ୍ଷ୍ମଣ ହୀନ
ରାମରଙ୍ଗ ହୋଇବାରୁ ଦୂର ଯେ । ୧୩ ।
ବିମନରେ ନରପନ୍ତ୍ରି    କୁରଙ୍ଗ ପରି ଝୁରନ୍ତି
ନାଟକବନ୍ଧ ଯଥା ମୃଗଗଣ ଯେ ।
ବରଷାଋତୁ ପ୍ରକାର    ଅନ୍ତଃପୁରସ୍ଥା ନିକର
ଜଳ-ଭୂମି ପଙ୍କିଳ କରିଣ ଯେ । ୧୪ ।
ବଣା ଗଣଏଣୀ ପ୍ରାୟେ    ଏଣେ ତେଣେ ଗୃହୁଁଦିଏ
ଚିତାପର ହୃଦେ ଜଳେ ଚିନ୍ତା ଯେ ।
ଭରତ ମାତାଙ୍କୁ ଚଣ୍ଡୀ    ପରେ ଯଥା ସିଂହ ମଣ୍ଡି
ପୁରାଣ ପୃଚ୍ଛିଲା ପ୍ରାୟେ ଶ୍ରୋତା ଯେ । ୧୫ ।
ବକ୍ତା ହୋଇଲେ ଜନନୀ    ପ୍ରଥମ ଯୁଗ ନ ମାନି
ଜଳାବର୍ତ୍ତି ବନ୍ଧୁ ତବ ତାତ ଯେ ।
କରୁଥିଲେ ଅଭିଷେକ    ଶ୍ରୀରାମେ ହୋଇ ଉତ୍ସୁକ
ଉପାୟେ ମୁଁ ତାହା କଲି ହତ ଯେ । ୧୬ ।

---

୧୬ଶ ପଦ—ପ୍ରଥମ ଯୁଗ— ସତ୍ୟ । ଜଳାବର୍ତ୍ତି ବନ୍ଧୁ—ଭ୍ରମରେ ପଡ଼ି ।

---

ଆସି ଦେଖିଲେ, ଅଯୋଧ୍ୟା ରାମ ଓ ଲକ୍ଷ୍ମଣଙ୍କ ବିହୁନରେ 'ରାମରଙ୍ଗ' ହେଲା ଓ 'ଲକ୍ଷ୍ମଣ' ସିଦ୍ଧ ଶବ୍ଦ ହେଲା ଶୂନ୍ୟ ବିଧବା ନାରୀ ପ୍ରାୟ ଦେଖା ଯାଉଅଛି ।

୧୪ଶ ପଦ—ଦୁଃଖ ମନରେ ଲୋକମାନେ କପୋତ ପରି ଝୁରୁଛନ୍ତି ଓ ମୃଗଗଣ ନାଟକରେ ଯୋଗ ସାଧନ କଲା ପରି ମୁଖ କାତର ହୋଇଅଛନ୍ତି । ବର୍ଷା ଋତୁରେ ଭୂମି କାଦୁଅ ହେଲା ପରି ଅନ୍ତଃପୁରର ସ୍ତ୍ରୀମାନେ ନେତ୍ର ଜଳରେ କଣ୍ଠଦେଶକୁ ଭିଜାଇ ଦେଇ ଅଛନ୍ତି ।

୧୫ଶ ପଦ—ଯୂଥଭ୍ରଷ୍ଟା ହରିଣୀ ପରି କେତେ ସ୍ତ୍ରୀ ଏଣେ ତେଣେ ଗୃହୁଁଛି । ସମସ୍ତଙ୍କ ହୃଦୟରେ ଚିତା ଅଗ୍ନି ପରି ଚିନ୍ତା ଜଳୁଅଛି । ଏସବୁ ଅମଙ୍ଗଳ ମାନ ଦେଖି ଭରତ ମାତାଙ୍କୁ ପ୍ରଣାମ କରି ଦୁର୍ଗାଙ୍କ ପୃଷ୍ଠରେ ସିଂହ ଉପବେଶନ କଲା ପ୍ରାୟ ମାତାଙ୍କ ଆଗରେ ବସିଲେ । ପୁଣି ଶ୍ରୋତା ପୌରାଣିକଙ୍କୁ ପଚାରି ସବୁ ବୁଝିଲା ପରି ଅଯୋଧ୍ୟାର କଥା ସବୁ ପଚାରିଲେ ।

୧୬ଶ ପଦ—ଜନନୀ କୈକେୟୀ ବକ୍ତା ହୋଇ କହିଲେ, "ତୁମ୍ଭର ପିତା ଦଶରଥ ଭ୍ରମବଶତଃ ସତ୍ୟ ଲଙ୍ଘନ କରି ଉତ୍ସୁକ ମନରେ ଶ୍ରୀରାମଙ୍କର ଅଭିଷେକ କରୁଥିଲେ । ମୁଁ ଉପାୟ ଦ୍ୱାରା ତାହା ବିନାଶ କଲି ।"

ବସୁମତୀ ପତି ହୋଇ          ସୀତାବଲ୍ଲଭ ଉତ୍ସାହ
ପଶୁ ବୃତ୍ତି ଦେଖି ପେଷି ବନ ଯେ ।
ବିନାଶ ତାପସୀ ମତେ          ରାମ ଲକ୍ଷ୍ମଣଙ୍କ ଅସ୍ତେ
ନରପତି ହୋଇଲେ ବହନ ଯେ । ୧୭ ।
ବଳସ ହୁ ଘନ ହୋଇ          ଦର ଦୀପ୍ତ ଦର ମଣ୍ଡି
ଶ୍ରବଣରେ ସେ ଭରତ କହେ ଯେ ।
ବୋଲିବା ଏ ମାତା ତୁମ୍ଭେ          ରାହୁ ହେଲ ଏ ଅରମ୍ଭେ
ଦ୍ୱିଜରାଜେ ତେଜକୁଳ ଗ୍ରାସେ ସେ ।୧୮।
ଜଳ ପଡାଇ ମଧ୍ୟର          ତେଜସ୍ୱର ଚଲ ଆଉ
ଏ ବୁଦ୍ଧି ଶିଖିଲ କାହୁଁ ଏବେ ଯେ ।
ବୋଇଲେ ଧାଈ ମନ୍ଥର          ସୁରଭ ସେ ଘରମଗ
ଗୋପାଳପୁତେ ଧାଇଁଲେ ଜବେ ଯେ ।୧୯।

---

୧୭ଶ ପଦ—ବସୁମତୀ ପତି—ପୃଥିବୀ ପତି । ତାପସୀ—ରାଣ୍ଡି ।
୧୮ଶ ପଦ—ଘନ—ସୂର୍ଯ୍ୟ । ଦର—ବରଣ । ଦୀପ୍ତ—ଉଜ୍ଜ୍ୱଳ ।

---

୧୭ଶ ପଦ—"ପୃଥିବୀ କନ୍ୟା ସୀତାଙ୍କର ପତି ରାମଚନ୍ଦ୍ର, ଶୀଘ୍ର ପୃଥିବୀର ପତି ହେବା ପାଇଁ ଉତ୍ସୁକ ହୋଇଥିଲେ । ତାଙ୍କର ଏହି ପଶୁବୃତ୍ତି ଦେଖି ତାଙ୍କୁ ମୁଁ ବନକୁ ପେଷିଦେଲି ( ପଶୁ ବନ ମଧ୍ୟରେ ବାସ କରେ ) । ଲକ୍ଷଣଯୁକ୍ତ ମନୋହର ଚନ୍ଦ୍ର ଅସ୍ତ ହେଲେ ଯେପରି ରାତି ବିନଷ୍ଟ ହୁଏ, ସେହିପରି ରାମ ଲକ୍ଷ୍ମଣ ବନ ଗମନରେ ରାଜା ଦଶରଥ ବିନାଶ ହେଲେ ।"

୧୮ଶ ପଦ—"ରାହୁ ଗଲେ ସୂର୍ଯ୍ୟ ନିଜ ବରଣପ୍ରଭା ଦେଖାଇ ପୃଥିବୀରେ ଝଳସିଲା ପରି ତୁ ରାଜା ହୋଇ ପ୍ରଜାଙ୍କଠାରୁ କର ଆଦାୟ କରି ଅଯୋଧ୍ୟା ପୁରୀରେ ବିହାର କର ।" ଭରତ ମାତାଙ୍କର ଏହି କଥା ଶ୍ରବଣ କରି କହିଲେ, "ତୁମ୍ଭେ କି ମାତା, ତୁମ୍ଭଙ୍କୁ ଅଧିକ ବା କଅଣ କହିବି ? ରାହୁ ପ୍ରତିପଦ୍ ଯୁକ୍ତ ଅମାବାସ୍ୟା ଓ ପୂର୍ଣ୍ଣିମାରେ ଚନ୍ଦ୍ର ଓ ସୂର୍ଯ୍ୟ ଉଭୟଙ୍କୁ ଗ୍ରାସ କଲାପରି ତୁମ୍ଭେ ଅଯୋଧ୍ୟାର ଉତ୍ସବ ସମୟରେ ଆମ୍ଭ ତିନିକୁଳ ( ତୁମ୍ଭ କଥାନୁସାରେ ରାମଚନ୍ଦ୍ର, ଦୁଃଖୀ ଚନ୍ଦ୍ର ଓ ଆମ ପିତା ସୂର୍ଯ୍ୟକୁଳ ) ଗ୍ରାସ କଲ ।

୧୯ଶ ପଦ—"ଜଳ ମଧ୍ୟରେ ଜଳ ପକାଇ ତୁଲ ଭାଗ କରି ଦେଲ । ଏବେ ଏ ବୁଦ୍ଧି କାହୁଁ ଶିଖିଲ ?" ( ଅଗେ ତ ଏ ବୁଦ୍ଧି ନ ଥିଲା ) । ଭରତଙ୍କ କଥା ଶୁଣି କୈକେୟୀ କହିଲେ, "ଦାସୀ ମନ୍ଥରା ହସାରେ ମୋତେ ଭେଦ ଶିଖାଇଲା ।" ଏହା ଶୁଣି ରିସ ଜାଉ ପାଖକୁ ଧାଇଁ ଗଲେ ଏବଂ ଭରତ କେଶରେ ମନ୍ଥରା ପାଖକୁ ଦଉଡ଼ି ଗଲେ ।

ତପାଣ ବେଶ ଧଇଲେ ଲଗୁଡ଼ ପ୍ରହାର କଲେ
ଚରଣକୁ ବାନ୍ଧିଲେ ରଜୁରେ ଯେ ।
ବେନ ହସ୍ତ ଯୋଡ଼ ପଇଁ କୌଶଲ୍ୟା ପ୍ରାଣେ ବନସ୍ଥୀ
ବୋଧିଲେ ସେ ବଚନ ମଞ୍ଜରେ ଯେ । ୨୦ ।
କୃଷ୍ଣସ୍ଫାଦ ଶୁଣି ଅସି ମନ୍ତ୍ରୀପ୍ରଭୁ ନୃପ କସି
ବୋଇଲେ ସେ କ ହୋଇ ହୋବୁଦେ ହେ ।
ଭଲ୍ ସଙ୍ଗରେ ସ୍ଫଟିକ ସମମୂଲ୍ୟ ଅବିବେକ
ଏତେ ବିବେକ ନ କଲ ହୃଦେ ଯେ । ୨୧ ।
ଛଧିପୂର୍ବେ ଚଢ଼ି ଗଲେ ପ୍ରେତକିୟାକୁ ସାରିଲେ
ଅସ୍ଥାନେ ବସିଲେ ପ୍ରାନ୍ତ ଦନ ଯେ ।
ଟେକ୍ଷନ ଜନସମସ୍ତ ସୁଦଣ୍ଡେ ପୁଚ୍ଛେ ଭରତ
କେଉଁଦଗେ ଶ୍ରୀରାମ ଗମନ ହେ । ୨୨ ।

---

୨୦ଶ ପଦ—ବଷାଣ-ବେଶ—ବେଶରୂପକ ଶଙ୍ଗ । ଲଗୁଡ଼—ବାଡ଼ି । ମଞ୍ଜୁରେ—ମନୋହର ଭାବରେ ।

୨୨ଶ ପଦ—ଅସ୍ଥାନେ—ସଭାରେ । ପ୍ରାନ୍ତ—ଶେଷ ।

---

୨୦ଶ ପଦ—ଗରୁଡ଼ ପିଲା ଗାଈର ଶିଙ୍ଗ ଠେଲୁ ପରି ଭରତ ମନ୍ଥରାର ବେଶ ଧଇଲେ । ତାକୁ ବାଡ଼ି ଦ୍ୱାରା ପ୍ରହାର କରି ତାହାର ପାଦକୁ ଦଉଡ଼ିରେ ବାନ୍ଧିଲେ । ତତପରେ କୌଶଲ୍ୟାଙ୍କ ପାଖକୁ ଯାଇ ଦୁଇହାତ ଯୋଡ଼ି ବନସ୍ଥ ପ୍ରକାଶ ପୂର୍ବକ ତାଙ୍କୁ ବୋଧ କଲେ ।

୨୧ଶ ପଦ—ଭରତ ଆସିବାର ଶୁଣି କନିଷ୍ଠାଦ ପାତ୍ରମାନେ ଆସି କହିଲେ, "ତୁମ୍ଭେ ରଜା ହୁଅ" । ଭରତ କହିଲେ, "ହେ ଜ୍ଞାନକର୍ତ୍ତା ! କ କଥା କହୁଅଛ ? (ରଜା ହୋଇ ଅଗ୍ରଜନଙ୍କ ପଦ କହୁଅଛ) । ତୁମ୍ଭେ କଣ ହୃଦୟରେ ବିଚାର କରିପାରୁ ନାହିଁ ଯେ, କେବଳ ଅବିବେକୀ ଲୋକ ହୀରକର ମୂଲ୍ୟ ସହିତ ସ୍ଫଟିକ ପଥରର ମୂଲ୍ୟକୁ ସମାନ କରିଥାଏ । (ରାମଙ୍କ ସହିତ ମୋତେ ସମାନ କଲେ ତୁମ୍ଭେ ଅବିବେକୀଙ୍କ ସହିତ ଗଣନା ହେବ)।"

୨୨ଶ ପଦ—ତପୂରେ ଉଠି ଯାଇ ବିଧିପୂର୍ବକ ଶ୍ରାଦ୍ଧ ପ୍ରେତକର୍ମ ସମାପ୍ତ କଲେ । ଶେଷଦନ ସଭା ମଣ୍ଡପରେ ପାତ୍ରମନ୍ତ୍ରୀଙ୍କ ଦ୍ୱାରା ବେଷ୍ଟିତ ହୋଇ ବସି ସୁମନ୍ତ ମନ୍ତ୍ରୀଙ୍କି ପଚାରିଲେ, "ଶ୍ରୀରାମ କେଉଁ ବାଟରେ ଗଲେ କ. ?"

ବିନାୟକ ଲମ୍ବୋଦର — ହେବେ ହେଲେ ଗଣେଶ୍ୱର
ତାତ କୋଳେ ତାତ ତୋଷେ ଦେଲେ ଯେ ।
ବାଲ୍ୟଚର୍ଯ୍ୟା ଯେ ଅଛନ୍ତି — ରାମ ଥିଲେ ସେହି ମତ
ତୁଅ ନୃପ ବଶିଷ୍ଠେ ବୋଇଲ ଯେ । ୨୩ ।
ବାଣୀରେ ଭରତ ମୋହ — ଗଜମୂର୍ଖ ନୋହେ ମୁହ
ଗିରୀଙ୍କୁଣ ଧ୍ୟାନ କହିଁ କର ହେ ।
ବିଧିର ଅଜ୍ଞାତ ଦୋଷ — କଳଙ୍କ ଯଥା ପ୍ରକାଶ
ଧାତା ମାତା ରଖିଲ୍ଲ ମୋଠାର ଯେ । ୨୪ ।
ବାହାରିଲେ ରାମ ଅଣି — ନଗ୍ର ଶୂନ୍ୟ ସେହିକ୍ଷଣି
ବୃଥା ବୋଲି ମନ୍ତ୍ରୀ କରୁଁ ବାଧ୍ୟ ଯେ ।
ବିଶୁଦ୍ଧ ସ୍ୱର୍ଣ୍ଣ ତୈଳ — ମିଶିଛି ଯେବେ ତା ଜଳ
ପ୍ରତିଉତ୍ତର କଲେ ଶତ୍ରୁଘ୍ନ ଯେ । ୨୫ ।

---

୨୩ଶ ପଦ—( ମୁଁ ରାଜା ହେବାକୁ ଅଯୋଗ୍ୟ, ଏହା ଭରତ ପୂର୍ବେ କହିଥିବାରୁ) ବଶିଷ୍ଠ କହିଲେ, "ସାନ ପୁତ୍ର ଗଣେଶ 'ବିନାୟକ' ନାୟକ ପଦର ଅଯୋଗ୍ୟ, ପୁଣି ଲମ୍ବୋଦର ହୋଇ ମଧ୍ୟ ( ଅଯୋଗ୍ୟ ହେଲେ ସୁଦ୍ଧା ) ପିତା ମହାଦେବଙ୍କ କୋଳରେ ଗଣନାଥ ହୋଇ ଅଛନ୍ତି । ସେହିପରି ପିତା ଦଶରଥ ତୁମ୍ଭଙ୍କୁ ରାଜପଦ ଦେଇ ଅଛନ୍ତି । ତାଙ୍କ ଦେହ ଥାଉଁ ଥାଉଁ ଗଣେଶ ଗଣନାଥ ହେଲ ପ୍ରାୟ ରାମ ଥିଲେ ସୁଦ୍ଧା ପିତା କୋଳରେ ତୁମ୍ଭେ ରାଜା ହୁଅ ।"

୨୪ଶ ପଦ—ବଶିଷ୍ଠଙ୍କ କଥା ଶୁଣି ଭରତ ଉତ୍ତରରେ ମୋହିତ କରି କହିଲେ, "ମୁଁ ଗଜମୂର୍ଖ ନୁହେଁ, ମୋତେ କାହିଁକି ଏ ବଚନ ରୂପ ଅଙ୍କୁଶରେ ଅଘାତ କରୁଅଛ ? ଯେପରି ବିଧାତା ଅଜ୍ଞାତ ଦୋଷରେ ( ବିନା ଦୋଷରେ ) ଚନ୍ଦ୍ରଠାରେ କଳଙ୍କ ରଖିଲା, ସେହିପରି ମାତା କୈକେୟୀ ମୋଠାରେ ମୋର ଅଜ୍ଞାତରେ ଅପବାଦରୂପ କଳଙ୍କ ରଖିଅଛି ।"

୨୫ଶ ପଦ—ଏହା କହି ଭରତ ରାମଙ୍କୁ ଆଣିବା ପାଇଁ ବାହାରନ୍ତେ ନଗର ଶୂନ୍ୟ ହୋଇଗଲା, ( ନଗରର ପ୍ରଜାମାନେ ତାଙ୍କ ସହିତ ରାମଙ୍କୁ ଆଣିବାପାଇଁ ବାହାରିଲେ ) । ଏହା ଦେଖି ମନ୍ତ୍ରୀମାନେ 'ଯିବା ବୃଥା' ଏହା କହି ଯିବାପାଇଁ ବାଧା ଦିଅନ୍ତେ, ଶତ୍ରୁଘ୍ନ ପ୍ରତିଉତ୍ତର କଲେ, "ବିଶୁଦ୍ଧ ସୁବର୍ଣ୍ଣରେ ତୈଳ ମିଶିଗଲେ, ତାକୁ ପୋଡିଦେବା ଉଚିତ । ( ବିଶୁଦ୍ଧ ସୁବର୍ଣ୍ଣ ଭରତଙ୍କ ସଙ୍ଗରେ ମାତୃ ଦୁର୍ନାମ ରୂପ ତୈଳ ମିଶିଛି । ରାମଙ୍କୁ ଆଣିବା ରୂପ ଅଗ୍ନିରେ ପୋଡିଦେଲେ ଭରତଙ୍କ ବିଶୁଦ୍ଧତା ପ୍ରକାଶ ପାଇବ ) ।"

ହାଟରେ ହେଲା ଏମନ୍ତ — ଶୃଙ୍ଗବେର ଅଟଯାଟ-
ଭର ମଦ୍ଧଧନୀରେ ବିବାଦୀ ଯେ ।
ବିଧୃତ ଏକ ପଦିକା — ସେ ନାନାରତ୍ନେ ଶୋଭିକା
ନିର୍ମଳ ହୃଦେ ହେଲା ପ୍ରମୋଦ ଯେ । ୨୬ ।
ବହିନେ ଭରଦ୍ୱାଜର — ସବଳେ ପ୍ରବେଶ ବୀର
ତପୋବଳେ ସମସ୍ତ ରଞ୍ଜିଲେ ସେ ।
ବଟୁପ୍ରାୟେ ସୁଧାଭୁଜ୍ୟ — ଭୋଜନ ଦେଲେ ତହାଳ
ସୁରପ୍ରାପ୍ୟ ସନ୍ତୋଷେ ଭୁଞ୍ଜିଲେ ସେ । ୨୭ ।
ତ୍ର୍ୟଚପତ୍ର ଉତ୍ତରନ୍ତୁ — ଭୋଗ ପ୍ରାପ୍ୟ ଦିବ୍ୟସ୍ତ୍ରୀନ୍ତୁ
ସେବିଲେ ଫଳଚନ୍ଦନେ ଶୋହ ଯେ ।
ବିତାନ ତଳେ କ୍ଷେପରେ — ବିହରି ମହାସୁଖରେ
ବନ୍ଧୁ ନାହିଁ ସବ ଗଲ ପାହୁ ଯେ । ୨୮ ।

---

୨୬ଶ ପଦ—ଶୃଙ୍ଗବେର—ଘାଟ । ଏକପଦିକା—ଗୃହପଣ ।
୨୮ଶ ପଦ—ଭୋଗ— ସ୍ୱର୍ଗଭୋଗ । ଦିବ୍ୟସ୍ତ୍ରୀ—ସ୍ୱର୍ଗର ରମଣୀ !
ବିତାନ—ଚାନ୍ଦୁଆ ।

---

୨୬ଶ ପଦ—ଅଦ୍ୟ ବ୍ୟବସାୟୀ ଗୃହପଣ ଭଉଁ ଧରି ନାନାରତ୍ନରେ ମଣ୍ଡିତ ମହା ଧନବନ୍ତ ଲୋକ ସହିତ ବିବାଦ ହେଲାପରି, ଭରତ ଯାଉଁ ଯାଉଁ ଶୃଙ୍ଗବେରପୁରର ଅଧିପତି ଗୁହକ ଶବର ବହୁସୈନ୍ୟ ପରିବେଷ୍ଟିତ ଭରତଙ୍କ ସଙ୍ଗେ ବିବାଦ ହୋଇ ବାଟରେ ବାଧା ଦେଲା । ମାତ୍ର କଥାବାର୍ତ୍ତା ହେଲାପରେ ଚିହ୍ନାଚିହ୍ନି ହୋଇ ସ୍ୱଚ୍ଛ ହୃଦୟରେ ଆନନ୍ଦ ଅନୁଭବ କଲା ।

୨୭ଶ ପଦ—ସେଠାରୁ ଯାଇ ବୀର ଭରତ ସୈନ୍ୟ ସହିତରେ ଭରଦ୍ୱାଜ ମୁନିଙ୍କ ଆଶ୍ରମରେ ପ୍ରବେଶିଲେ । ସେ ମୁନି ତପଃପ୍ରଭାବରେ ସେମାନଙ୍କୁ ତର୍ପଣ କଲେ । ଯେମନ୍ତ ଦେବତାଙ୍କୁ ଅମୃତ ଦେଲା ପ୍ରାୟ, ଋଷି ତତ୍କ୍ଷଣାତ୍ ସେମାନଙ୍କୁ ଅମୃତ ସମ ଭୋଜନ ଦେଲେ । ସେମାନେ ଦେବତାଙ୍କ ପରି ସନ୍ତୋଷ ମନରେ ତାହା ଭୁଞ୍ଜିଲେ ।

୨୮ଶ ପଦ—ଋଷିଶ୍ରେଷ୍ଠ ଋଷି ସେମାନଙ୍କୁ ସ୍ୱର୍ଗସୁଖ ପ୍ରଦାନ କଲେ । ଦିବ୍ୟ ସ୍ତ୍ରୀମାନେ ଫୁଲ ଚନ୍ଦନରେ ଶୋଭିତ ହୋଇ ଆସି ସେମାନଙ୍କୁ ପୂଜା କଲେ । ଚାନ୍ଦୁଆ ତଳେ ମହାସୁଖରେ ବିହାର କରି ସେମାନଙ୍କର ରାତି ପାହିଗଲା । ପ୍ରଭାତରେ ସେମାନେ ଦେଖିଲେ ଯେ ଆଉ କିଛି ନାହିଁ । ( ଋଷିଙ୍କର ତପ ପ୍ରଭାବରେ ରାତିରେ ସବୁ ସୁଖ ମିଳିଲା, ମାତ୍ର ପ୍ରଭାତରେ ବିଲୀନ ହୋଇଗଲା ) ।

ଚର୍ମେଶ୍ୱର ମୁନି ଯେହୁ — ସୁବାହୁ ବଳେ ସୁବାହୁ
ନାଶେ ଭୂତ ବନା ଭୂତ ଭୂଷା ଯେ ।
ବନ୍ଧନ ଲକ୍ଷ୍ମଣେ ଯେହୁ — ସହିତ ଲକ୍ଷ୍ମଣେ ସେହୁ
ଜନକା ନୋହୁ ଜାନକୀ ଅଣା ଯେ । ୨୯ ।
ଭରତ ଚିତ୍ରକୂଟରେ — ବହିରେ ଚିତ୍ରକୂଟରେ
ଭରତକୁ ଚେଙ୍କା ଭେଟନ୍ତରେ ସେ ।
ଅଯୋଧ୍ୟାଧିପ ଶୁଣି ସେ — ଗମନ କଲେ ଭରତେ
ପରବେଶ ହୋଇ ନିକଟରେ ସେ । ୩୦ ।
ବ୍ୟାଳସମୂହକୁ ଚାପି — ସିଂହ କି ଘଉଡି ଅଛି
ଘୋଷି ଦନ୍ତେ ଢଟି ସୌମିତ୍ରେୟ ଯେ ।
ଚଳେ ଚଳେ ପ୍ରଚାରେ — ବାଜୀ ହସ୍ତେ ଧନୁକନ୍ତ
ହୟ ଚଢି ଅଛେ ଚଯ୍ୟ ଚଯ୍ୟ ଯେ । ୩୧ ।
ବାହନ ଦନ୍ତ ସୁଦନ୍ତୀ — କେତେ ବଢେ ରଥେ ଗତ
ଚଳନ୍ତି ଚତୁରଙ୍ଗ ସୈନ୍ୟ ଯେ ।

---

୨୯ଶ ପଦ—ମୁନି ଭରଦ୍ୱାଜ ଲକ୍ଷ୍ମଣ ଭାବ୍ୟରେ କହିଲେ, "ରାମଚନ୍ଦ୍ର 'ସୁବାହୁ' ଉତ୍ତମ ବାହୁବଳରେ ସୁବାହୁ ଦୈତ୍ୟକୁ ମାରି 'ଭୂତ' ସମସ୍ତ ତାଙ୍କ ବଳ 'ଭୂତ' ଭସ୍ମ ବର୍ଦ୍ଧିତ ହୋଇ ଅଛନ୍ତି । 'ଲକ୍ଷଣେ' ଛଡ଼ ରାମବନ୍ଧ ସଙ୍କେତ ହେଉ ଲକ୍ଷ୍ମଣଙ୍କ ସହିତ ଏବଂ 'ଜାନକୀ' ରଥ ସୁଖ ପରିହାର ପୂର୍ବକ ଜାନକୀ ସୀତାଙ୍କ ସଙ୍ଗରେ ବନରେ ବୁଲୁଅଛନ୍ତି ।"

୩୦ଶ ପଦ—"ଅଯୋଧ୍ୟାର ଅପୂର୍ବ ଭୂପଃରେ ଭରତ ହୋଇ ସେ ରାମ ଚିତ୍ରକୂଟ ପର୍ବତ ତଳଦେଶରେ ବାସ କରୁଅଛନ୍ତି ।" ଭରତ ଭରଦ୍ୱାଜ ଋଷିଙ୍କଠାରୁ ଏହିପରି ଅଯୋଧ୍ୟାଧିପ ଶୁଣି ସେଠାରୁ ବେଗରେ ଗମନ କଲେ ଓ ଚିତ୍ରକୂଟ ପର୍ବତ ନିକଟରେ ପ୍ରବେଶ ହେଲେ ।

୩୧ଶ ପଦ—ଭରତ ସୈନ୍ୟମାନଙ୍କ ସହିତ ଶୀଘ୍ର ବେଗରେ ଆସନ୍ତେ ବନଜନ୍ତୁମାନେ ପଳାଇ ଯିବାରୁ 'ବାଘ, ହାତୀ, ଶେଣୀ ଦୁରନ୍ତ ଜନ୍ତୁପଶୁଙ୍କୁ ତାସ ଦେଇ କିଏ ଘଉଡ଼ି ଅଛି କି ?" ଏହା ବିଚାରି ଲକ୍ଷ୍ମଣ ପର୍ବତ ଉପରେ ଉଠି ଦେଖିଲେ ଯେ, ପଦାତି ଅଶ୍ୱାରୋହୀ ସୈନ୍ୟମାନେ ହସ୍ତରେ ଧନୁଶର ଧରି ଶ୍ରେଣୀବଦ୍ଧ ଭାବରେ ଆସୁଅଛନ୍ତି ।

୩୨ଶ ପଦ—କେତେକ ସୈନ୍ୟ ଉତ୍ତମ ହସ୍ତୀ ଉପରେ ବସି, କେତେକ ରଥରେ ବସି ଆସୁଅଛନ୍ତି । ପତାକା ସମୂହ ଦେଖରେ ଉଡ଼ୁଅଛି ।

ବେଗେ ସଷ୍ଟାଙ୍ଗ ହୋଇଲେ          ଶିଷ୍ୟେ ଗୁରୁପାଦ୍ୱ ହେଲେ
ବେନିଭ୍ରାତ ମନ ରଞ୍ଜାରଞ୍ଜି ଯେ । ୩୫ ।
ବେଢିଲେ ଜନ ଜନନୀ          ଗୁରୁ ଚତୁରଙ୍ଗ ସେନା
ଦରିଦ୍ର ଧନ ଲଭିଲା ପରି ସେ ।
ବଶିଷ୍ଟ ସର୍ବ କହିଲେ,          ଭରତ ପଦ ଧଇଲେ
ଗମନ କରିବା ପାଇଁ ପୁଣି ଯେ । ୩୬ ।
ବୋଲେ ରାମ ସତ୍ୟବାଦୀ          ପଦେ ଅନାର୍ଥ ସମ୍ବାଦ
ହେମନ୍ତ ପଣ୍ଡିତ ଶୁଣ ଆପି ହେ ।
ବାତ ଯେହ୍ନେ ଜନକର          ନ ମାରିଲେ ସେ କ କୁମର ?
ଶେଷ ଧର ରେଣୁକାକୁ ନାଶି ହେ । ୩୭ ।
ବୋଲିଲେ କୈକେୟୀସୁତ          ଦୈତ୍ୟମାତାଙ୍କୁ ଜାତ
ହେଲେଁ ବାତ ଇନ୍ଦ୍ର ଘାତ କରି ହେ ।

---

ବଶିଷ୍ଠ ଯେତିକ ଦଣ୍ଡ ପ୍ରାୟ ମଣ୍ଡଳି ଭଜିଲେ ଅର୍ଥାତ୍ ଦଣ୍ଡେ ପର୍ଯ୍ୟନ୍ତ ଭୂମିରେ ଗୋଇ ସାଷ୍ଟାଙ୍ଗ ପ୍ରଣିପାତ କଲେ । ରାମଚନ୍ଦ୍ର ସ୍ନେହର ସହିତ ଗୁରୁ ଶିଷ୍ୟଙ୍କୁ କୋଳ ଧରିଲା ପ୍ରାୟ ତତ୍ପଶ୍ଚାତ୍ କୋଳ ଧଇଲେ । ତାହା ପରେ ଦୁଇ ଭାଇ ମନ ଯେନା ଯେନ ହେବେ ।

୩୫ଶ ପଦ—ତଦନନ୍ତର ପ୍ରଜାମାନେ ଓ ମାତାମାନେ ବଶିଷ୍ଠ, କଶ୍ୟପ, ଜାବାଳି, ବାମଦେବ—ଏହି ଗୁରୁ ବୃନ୍ଦଙ୍କ ସହିତ ଦରିଦ୍ର ଧନ ଲାଭ କଲା ପରି ରାମଚନ୍ଦ୍ରଙ୍କୁ ପାଇ ଆନନ୍ଦରେ ବେଢ଼ିଗଲେ । ବଶିଷ୍ଠ ସବୁ କଥା କହିଲେ । ଅଯୋଧ୍ୟାକୁ ଫେରିଯିବା ପାଇଁ ଭରତ ରାମଚନ୍ଦ୍ରଙ୍କ ପାଦ ଧରି ଅନୁନୟ କଲେ ।

୩୬ଶ ପଦ—ଅନନ୍ତର ରାମଚନ୍ଦ୍ର କହିଲେ, "ତୁମ୍ଭେ ସମସ୍ତେ ପଣ୍ଡିତ ହୋଇ କିପା ମୋତେ ପିତୃଦେବଙ୍କ ଅନାଜ୍ଞା କରିବାକୁ ଆସିଅଛ । ସେହି ପୁଣ୍ୟ ପିତାଙ୍କର ଆଜ୍ଞା ନ ପାଳିଲେ ସେ ଦୋଷ ମୁଁ କିପରି ସହିବି ? (ସେ ପୁତ୍ର ହୋଇ ସୁଦ୍ଧା ପୁତ୍ର ନୁହେ ) । ପୂର୍ବେ ଯେପରି ପିତାଙ୍କ କଥା ପାଳି ନିଜ ମାତା ରେଣୁକାକୁ ନାଶ କରିଥିଲେ ।"

୩୭ଶ ପଦ—ଏହା ଶୁଣି ଭରତ କହିଲେ, "ଦୈତ୍ୟମାତା ବଧଠାରୁ ଜାତ ହୋଇଥିବା ଦୋଷକୁ ଇନ୍ଦ୍ର ଅନେକ ଯଜ୍ଞ କରି ନାଶିଥିଲେ ସୁଦ୍ଧା ସେ ଦେବତା ହୋଇ ଇନ୍ଦ୍ରଙ୍କର ବିଶ୍ୱାସୀ ହେଲା, କେମାନେ ସେ ମନ୍ଦଭାଗ୍ୟ ଧରିଲା

ସ୍ୱାମୀ ଗାଦିର ହେଲ       ହେବ ହୋଇ ନ ଧରିଲ
ମନ୍ଦଗୁଣ, ମୁହିଁ ସେହୁସର ହେ । ୩୮ ।
ମହୁରିବା ମାନସର       ମଧ୍ୟେ ହଂସକୁ ସୁନ୍ଦର
ଆନ ପକ୍ଷିରେ କସେ ବାଞ୍ଛିତ ଯେ ?
ଲକ୍ଷଣ ବୁଦ୍ଧି ପ୍ରକାଶ       କେବେ ନୋହୁବ ନହୁଷ
ପ୍ରାପ୍ତ ନାଶ ଯିବାକୁ ମୋ ଶଙ୍କ ଯେ । ୩୯ ।
ତାହୁଣତାକୁ ସମ୍ମତ       ନ କରୁଁ ଜାନକୀପତ
କୁଶେଶୟ ହେଲେ ସଭ୍ରମରେ ଯେ ।
ତହିଁ ସ୍ୱୟଂ ବେଦବାଣୀ       ତୋ ପ୍ରସୂ ପୃଥ୍ୱୀରକ୍ଷିଣୀ
ନିଷ୍ଠା ଦୋଷା ହୋଇଲ ପ୍ରକାରେ ଯେ । ୪୦ ।
ବାହୁଡ଼ିଲେ ରାଘବ       ସୂର୍ଯ୍ୟବଂଶ ଭୂଷଣ
ଶୁଣି ଉଠି ଯଉଁବେଶ ବହୁ ଯେ ।

---

ନାହିଁ । ମୁଁ ସେହୁପର ମାତା ଦୋଷରେ ଦୋଷୀ ହିନା ! ( ମୋତେ ସେହୁପର ଦୋଷ ଦଉନ୍ତୁ ) ।

୩୯ଶ ପଦ—'ହଂସ ଯିନା ମାନସସରୋବରରେ ବହୁ'ର ଦଲେ ସୁନ୍ଦର ଦିଶିବ, ଅନ୍ୟ ପକ୍ଷୀ ତାହା ଇଚ୍ଛା କରିବା କି ? ( ଅନ୍ୟ ପକ୍ଷୀ ରହିଲେ କଅଣ ସୁନ୍ଦର ଦିଶିବ ? ସେହିପରି ଅଯୋଧ୍ୟାରେ ଆପଣ ରାଜା ହେଲେ ଯେପରି ସୁନ୍ଦର ଦିଶିବ, ମୁଁ ରାଜା ହେଲେ ସେପରି ଦିଶିବ କି ? ନହୁଷ ପ୍ରାପ୍ତ ନାଶ ଯିବା ପାଇଁ ମୋ ମନରେ ଶଙ୍କା ହେଉଛି । ଲକ୍ଷଣ ବୁଦ୍ଧି କେବେ ହେଲେ ପ୍ରକାଶିତ ହେବ ନାହିଁ ।" (ନହୁଷ ସ୍ୱର୍ଗରେ ଇନ୍ଦ୍ର ହେବାକୁ ଇଚ୍ଛା କରି ବିନାଶ ହୋଇଥିଲେ, ମୁଁ ସେହିପରି ଅଯୋଧ୍ୟାର ରାଜା ହେବାକୁ ଇଚ୍ଛା କଲେ ବିନାଶ ହେବି ) ।

୪୦ଶ ପଦ—ସୀତାପତି ରାମଚନ୍ଦ୍ର, ଅଯୋଧ୍ୟାକୁ ଫେରି ଯିବାକୁ ସମ୍ମତ ନ ହେବାରୁ ଭରତ ପଦ୍ମ ଭ୍ରମରଯୁକ୍ତ ହେଲା ପ୍ରାୟ ଭ୍ରମବଶତଃ ଅନଶନ ବ୍ରତ ସହିତ କୁଶଶଯ୍ୟା କଲେ । ସେହି ସମୟରେ ଆକାଶରୁ ଦୈବ ବାଣୀ ହେଲା, "ହେ ଭରତ ! ତୋହର ମାତା ପୃଥିବୀ ରକ୍ଷାକାରିଣୀ ଅଟନ୍ତି । ବିନା ଦୋଷରେ ସିଏ ତୋ ଆଗରେ ଦେଖ ପ୍ରାୟ ସେ ପ୍ରକାରରେ ଦୋଷୀ ହୋଇ ରହିଲେ ।"

୪୧ଶ ପଦ—"ତୁମ୍ଭେ ଏପରି କଠୋର ଅନଶନ ବ୍ରତ ଦ୍ୱାରା ନାଶ ହେଲେ ଆମ୍ଭେ ସବୁ ମରିବୁ, ତେଣୁ ସୂର୍ଯ୍ୟବଂଶ ବୁଡ଼ିଯିବ"—ଏମନ୍ତ କଥା ଶୁଣି ଦେବ ଭରତଙ୍କୁ ଅଯୋଧ୍ୟା ଫେରିଯିବା ପାଇଁ ବୁଝାଇଲେ । ରାମଙ୍କ କଥା ଶୁଣି କୁଶଶଯ୍ୟାରୁ ଉଠି ଭରତ ଯତି ବେଶ ଧରି ଫେରିଲେ । ରାମଙ୍କ

ବନ୍ଦିଲେ ପାଦୁକା ରଜା    ସମ୍ପଦେ କରଣ ପୂଜା
ନନ୍ଦୀଗ୍ରାମେ ପୁର କରି ରହି ସେ । ୧ ।
ବିଶେଷ କାରୁଣି ହୋଇ    କରୁଣାସାଗର ତହିଁ
ତାତବାର୍ତ୍ତା ଶୁଣି କ୍ରିୟା ସାରି ସେ ।
କଲ୍ୟାଣ ପଦେ ଛାନ୍ଦ    କହେ ଭଞ୍ଜ ଉପେନ୍ଦ୍ର
ସୀତା ରାମ କାନନବିହାରୀ ସେ । ୬୨ ।

---

## ଊନବିଂଶ ଛାନ୍ଦ

### ରାଗ—ପଞ୍ଚମବରାଡ଼ି

ବିସ୍ତାରଇ ମାଳଯମକରେ କବି ମନେ ।
ବୁଲେ ରାମ ରାମ ରାମନେତ୍ରୀ ସଙ୍ଗେ ବନେ ସେ ।
ବୃହଦ୍ଭାନୁ ଭାନୁ ଭାନୁ ପ୍ରକାଶ ତାପ ନାହିଁ ।
ବୃତ ତମାଳମାଳ ମାଳତୀଲତା ଯହିଁ ସେ । ୧ ।

---

୧ମ ପଦ—ରାମ—ରମଣୀୟ, ସୁନ୍ଦର । ରାମ—ରାମଚନ୍ଦ୍ର । ରାମନେତ୍ରୀ—ମୃଗନେତ୍ରୀ । ବୃହଦ୍ଭାନୁ—ଅଗ୍ନି । ଭାନୁ—ସୂର୍ଯ୍ୟ । ଭାନୁ—କିରଣ । ତମାଳମାଳ—ତମାଳ ବୃକ୍ଷ ସମୂହ ।

---

ପାଦୁକାକୁ ଆଡ଼ମ୍ବର ସହିତ ପୂଜା କରି ରାଜା କଲେ, ନିଜେ ଦାସ ପ୍ରାୟ ବନ୍ଦନା କଲେ । ନନ୍ଦୀଗ୍ରାମରେ ପୁର ନିର୍ମାଣ କରି ରହିଲେ, ( ଅଯୋଧ୍ୟାକୁ ଫେରି ଗଲେ ନାହିଁ ) ।

୬୨ଶ ପଦ—ଭରତ ବାହୁଡ଼ି ଯିବା ପରେ କରୁଣାସାଗର ରାମ ପିତାଙ୍କର ବିନାଶ ବାର୍ତ୍ତା ପାଇଥିବା ହେତୁ ବିଶେଷ ଭାବରେ ରୋଦନ କଲେ । ପ୍ରେତ କ୍ରିୟାମାନ ସମାପ୍ତ କରି ସୀତା ରାମ ବନବିହାରୀ ହେଲେ । ଏ ଛାନ୍ଦକୁ କଲ୍ୟାଣ ପଦରେ ଉପେନ୍ଦ୍ର ଭଞ୍ଜ କହିଲେ ।

—୦—

## ଊନବିଂଶ ଛାନ୍ଦ

୧ମ ପଦ—କବି 'ମାଳଯମକରେ' କବିତା କରିବାକୁ ମନରେ ବିଚାର କରେ । ( ମାଳଯମକ ଲକ୍ଷଣ,—ଏକମାତ୍ର ଶବ୍ଦ ଭିନ୍ନାର୍ଥରେ ତିନିରୁ ଅଧିକ ଥର ପ୍ରୟୋଗ ହେଲେ ମାଳଯମକ ହୁଏ । ଯଥା,—'ରାମ ରାମ ରାମ ନେତ୍ରୀ' ) ।

ସୁନ୍ଦର ରାମଚନ୍ଦ୍ର ମୃଗନେତ୍ରୀ ସୀତାଙ୍କୁ ସଙ୍ଗରେ ଘେନି କାନନରେ ଭ୍ରମଣ କରନ୍ତି । ସେହି ବନରେ ତମାଳ ବୃକ୍ଷମାନଙ୍କ ଦେହରେ ମାଳତୀ ଲତା ଘନ ଭାବରେ ମାଡିବାରୁ ଅଗ୍ନି ଓ ସୂର୍ଯ୍ୟ କିରଣର ଉତ୍ତାପ ବାଧେ ନାହିଁ ।

ବହଇ ନିର୍ଝର ଝରଝର ନିରନ୍ତର ।
ଝଟେକ୍ଷ ତରଙ୍ଗ ରଙ୍ଗ ରଙ୍ଗିଣୀ ଶୋଭିତ ଯେ ।
ବହୁ ଚନ୍ଦ୍ର ଚନ୍ଦ୍ର ଚନ୍ଦ୍ର ଶୀତଳ ବାତ ।
ବନ୍ଦେ ମନ୍ଦ ମନ୍ଦ ମନ୍ଦସୁତ କରେ ରୁତ ଯେ । ୨ ।
ଝଟେ ଘନଘନ ଘନ କୁଶକଣ ଯଥା ।
ବୃଷ୍ଟି ମଧୁର ମଧୁର ମଧୁରଜେ ତଥା ଯେ ।
ଶୋଭାଜନ ଭୃଙ୍ଗ ଭୃଙ୍ଗ ଭୃଙ୍ଗ କରେ କେଳି ।
ବନୀ ବନୀ ବନିତା କି ପୁଷ୍ପହାସେ ଝଳି ଯେ ।୩।
ବୋଧ ଶୃଙ୍ଖଳାରେ ରଘୁନାଥ ସୀତା ମତି ।
ବିଶଦ ଶିଖିକୂଟ ଯେ କୁଟଜେ ବ୍ରତତି ଯେ ।

---

୨ୟ ପଦ—ନିର୍ଝର—ଝରଣା । ଚନ୍ଦ୍ର—ଚନ୍ଦନ । ଚନ୍ଦ୍ର—କର୍ପୂର । ଚନ୍ଦ୍ର—ଜଳ । ମନ୍ଦସୁତ—କୋକିଳ । ରୁତ—ଧ୍ୱନି ।

୩ୟ ପଦ—ଘନ—ମେଘ । କୁଶକଣ—ଜଳକଣା । ମଧୁର—ମହୁଲ ଗଛ । ମଧୁର—ମନୋହର । ମଧୁରଜ—ଫୁଲରେଣୁ । ଭୃଙ୍ଗ—ଗୁଡ଼ତ୍ୱକ୍ ଗଛ । ଭୃଙ୍ଗ—ଭୃଙ୍ଗରାଜ ଗଛ । ଭୃଙ୍ଗ—ଭ୍ରମର । ବନିତା ସ୍ତ୍ରୀ ।

୪ର୍ଥ ପଦ—ବ୍ରତତୀତତି—ଲତାସମୂହ । ଅତିଶ୍ରୀ—ଅତ୍ୟନ୍ତ ଶୋଭା । ବାସନ୍ତୀ—ମାଧବୀଲତା । ବିଶଦ—ସୁଶୋଭିତ । କୁଟଜ—ଗିରିମଲ୍ଲିକା । ବ୍ରତତି—ମଣ୍ଡିତ ।

---

୨ୟ ପଦ—ଝରଣା ସବୁବେଳେ ଝର ଝର ହୋଇ ବହୁଅଛି । ସେହି ଝରଣା ସ୍ରୋତର ଦୁଇ ପାର୍ଶ୍ୱରେ ବହୁଳ ରଙ୍ଗର ରଙ୍ଗିଣୀ ପୁଷ୍ପ ଫୁଟି ଶୋଭା ପାଉଅଛି । ପବନ ଜଳ, କର୍ପୂର ଓ ଚନ୍ଦନର ଶୀତଳ ଗୁଣକୁ ଧାରଣ କରି ଧୀରେ ଧୀରେ ବହୁଅଛି । କୋକିଳ ଅନବରତ ଧ୍ୱନି କରୁଅଛି ।

୩ୟ ପଦ—ଯେପରି ମେଘ ଖୁବ୍ ଘନଭାବରେ ଜଳକଣାସବୁ ବର୍ଷେ ( ମେଘ ବୃଷ୍ଟି ଦିଏ ), ସେହିପରି ମହୁଲ ଗଛ ମାଧୁର୍ଯ୍ୟ ଗୁଣ ବା ମହୁ ଓ ଫୁଲର ରେଣୁ ବର୍ଷୁଅଛି । ଶୋଭା ପାଉଥିବା ଭୃଙ୍ଗରାଜ ଓ ଗୁଡ଼ତ୍ୱକ ବୃକ୍ଷରେ ଭ୍ରମରମାନେ କେଳି କରୁଅଛନ୍ତି । ସେ 'ବନୀ' । କାନନ 'ବନୀ' ସୁନ୍ଦର ସ୍ତ୍ରୀ ପ୍ରାୟ ପୁଷ୍ପବ୍ୟାଜ ଛଳରେ ହାସ ପ୍ରକାଶ କରୁଅଛି । ( ସୁନ୍ଦରୀ ସ୍ତ୍ରୀ ହସିଲେ ଯେପରି ଅତ୍ୟନ୍ତ ସୁନ୍ଦର ଦିଶେ, ସେହିପରି କାନନରେ ଫୁଲ ଫୁଟିଥିବାରୁ ବେଶୀ ମନୋହର ସୁନ୍ଦର ଦିଶେ, ସେହିପରି କାନନରେ ଫୁଲ ଫୁଟିଥିବାରୁ ବେଶୀ ମନୋହର ହୋଇଅଛି ) ।

୪ର୍ଥ ପଦ—ରାମଚନ୍ଦ୍ର, ସୀତାଙ୍କର ମନ ବୋଧ କରିବା ନିମିତ୍ତ ଶୃଙ୍ଖଳାକ୍ରମେ କହିଲେ, "ଦେଖ, ନାନା ଶୋଭାରେ ଶୋଭିତ ଚିତ୍ରକୂଟ ପର୍ବତ

ବନଷଣ୍ଡରେ ଜୟନ୍ତୀ ଅଟନ୍ତି ବାସନ୍ତୀ ।
ବାସନ୍ତୀ ସଭରେ ଫୁଲ୍ଲ ଫୁଲରେ ପ୍ରବର୍ତ୍ତି ଯେ । ୪ ।
ବର୍ତ୍ତିକ ରଚ ଅଳି ଦଳି ଯେ ବାହ୍ଲନ୍ତ
ବନ୍ଧୁରିତ ମାନ ମାନ ଶୁକ ଧ୍ୱନିବନ୍ତ ଯେ ।
ବଉର ତରଳ ନେତ୍ର ନେତ୍ରସୁବାସିନୀ
ବାସିନୀ ସୁଜାତ କାନ୍ତି ସ୍ୱଭାବ ଭ୍ରମନି ଯେ । ୫ ।
ଜଣାଯାଉ ସ୍ୱଚ୍ଛ ଶୋଭନ ସ୍ଥିତ ବୈଭ୍ରାଜ
ବୈଭ୍ରାଜ ସୁରସା ରସା ଦରକର ବୀଜ ଯେ ।

---

୫ମ ପଦ—ବର୍ତ୍ତିକ—ବଣି ବତ୍ତାଇ । ରଚ—ବାନ୍ଧି ବଢାଇ । ଅଳି ଅଳି—ଦଳ ଦଳ । ବାସିନୀ । ସୁଗନ୍ଧଯୁକ୍ତ । ସ୍ୱଭାବ—ସ୍ୱଭାବତଃ । ଭ୍ରମନି—ଭ୍ରମବତୀ ।

୬ଷ୍ଠ ପଦ—ବୈଭ୍ରାଜ—ସ୍ୱର୍ଗୋଦ୍ୟାନ । ବୈଭ୍ରାଜ—ଦେଦୀପ୍ୟମାନ । ରସା—ପୃଥିବୀ । ଦରକର—ଡାଳିମ୍ବର । ରସବାର—ଅନୁଚ୍ଛେଦ । କାଲଣବୃଷା—କଦଳୀଗଛ । ପୁର—ଗୁଳ୍ମଗଛ । ପୁର—ଅଗରେ ।

---

ଗିରିମଲ୍ଲିକାରେ ମଣ୍ଡିତ ହୋଇଅଛି, ଲତାସମୂହ ବେଷ୍ଟିତ ଜୟନ୍ତୀ ବୃକ୍ଷସବୁ ଅତି ଶୋଭା ପାଉଅଛନ୍ତି; ହେ ସଖି ! ମାଧବୀ ଓ ଯୂଥିକା ଲତା ପ୍ରସ୍ଫୁଟିତ କୁସୁମରେ ଭୂଷିତ ହୋଇଅଛନ୍ତି ।"

୫ମ ପଦ—"ବଣି ଓ ବାୟସମାନେ ଦଳ ଦଳ ହୋଇ ବିହାର କରୁଅଛନ୍ତି । ( ଅନ୍ୟାର୍ଥ 'ରଚ' ସମୀପରେ 'ବର୍ତ୍ତି' ପ୍ରବର୍ତ୍ତି 'କ' ମୟୂରମାନେ ଦଳ ଦଳ ହୋଇ ନୃତ୍ୟ କରୁଅଛନ୍ତି ) । ଉତ୍ତମ ବର୍ବର ଗାନପଟୁ ଶୁକପକ୍ଷୀର ମନୋହର ଗାନ ମନରୁ ଅଭିମାନକୁ ହରଣ କରୁଅଛି । ହେ ମୃଗମଦସୁବାସିନି ( କସ୍ତୁରୀ ବାସନାପରି ଯାହାର ଦେହର ବାସନା ) ମୀତେ ! ହେ ପ୍ରିୟେ ! ତୁମ୍ଭର ତରଳ ନେତ୍ର ପକାଇ ଦେଖ, ସୁଗନ୍ଧିନୀ ଓ ଉତ୍ତମ ଜାତୀୟ ମାଳତୀ ଲତା ସ୍ୱଭାବ କୁସୁମବତୀ ହୋଇଅଛି ।"

୬ଷ୍ଠ ପଦ—"ଏହା ସ୍ୱତଃସିଦ୍ଧ ଯେ, ସ୍ୱର୍ଗୋଦ୍ୟାନର ଶୋଭା ଏ ବନର ଶୋଭାଠାରେ ସ୍ଥିତ ହୋଇଅଛି (ଏ ବନର ଶୋଭା ବୈଭ୍ରାଜ ନାମକ ଦେବ ଉଦ୍ୟାନର ଶୋଭାଠାରୁ ବେଶୀ ମନୋହର ) । ହେ ସୁରସା ! ପୃଥିବୀ ଦାଡିମ ଫଳର ମଞ୍ଜିରେ ଦେଦୀପ୍ୟମାନ ହୋଇଅଛି । ( ଡାଳିମ୍ବ ଫଳ ବୃକ୍ଷରେ ପାଚି ଫାଟି ମଞ୍ଜିସବୁ ତଳେ ପଡି ସୁନ୍ଦର ଦିଶୁଅଛି ) ହେ ସଖି ! କଦଳୀଗଛ, ବଡ଼ ବଡ଼ ଗାଳ

ବଜନମିତ ମିତ ହରଷ ଉସବାର
ବାରଣବୃଷା ବୃଷାଳିସାଳ ସୁର ସୁର ଯେ । ୬ ।
ବୋଧନ୍ତି ରାମ ସିଂହାବଲୋକନେ ଅବଳା
ବଳାକାପନ୍ତି କରନ୍ତି ଧ୍ରୁବକୁ ଧବଳା ଯେ ।
ବଳାଇ ମାନସ ମାନ ଅନା ପ୍ରାଣବନ୍ଧୁ
ବନ୍ଧୂକ ରଞ୍ଜନ ଅତ ରଙ୍ଗ ନୀରବନ୍ଧୁ ଯେ । ୭ ।
ବନ୍ଧୁରପଥଟି ହେଳା ହେଳ ପଦ ବଳା
ବଳାଦ୍ଧ୍ୱନ ପ୍ରାୟେ ଝିଲ୍ଲୀ ରବଦ ପ୍ରବଳା ଯେ ।
ବଳାପନ୍ତି ଫଳବନ୍ତୀ ପ୍ରଫୁଲ୍ଲ ସେବନ୍ତୀ
ବତଣଲକ୍ଷଣା ଦେଖ ବହୁବେ ପାବଂତୀ ଯେ । ।
ବନ୍ତୀର୍ଣ୍ଣ ଅପୂର୍ବ ହୋଇ ଦେଖେ ନାଗବଲ୍ଲୀ
ବଲ୍ଲି ବା ତଳେ ଶପୂଜ ଗୁମସ୍ତିଅବଳ ଯେ ।

---

୭ମ ପଦ—ବଳାକାପନ୍ତି—ବଗପକ୍ଷୀସମୂହ । ଧ୍ରୁବକୁ—ଲମ୍ବା ଓଛକୁ ।
୮ମ ପଦ—ବନ୍ଧୁରପଥ—ଖାଲଢିପ ସ୍ଥାନ । ଝିଲ୍ଲୀ—ଝିଙ୍କାରି ।
ବଳାପନ୍ତି—କାଉଁଆଁଳା । ପାର୍ବତୀ—ପ୍ରଜାପତି ।

---

ତନ୍ତି, ଗୁଟ୍ଗୁଳ ପ୍ରଭୃତି ବୃକ୍ଷମାନେ ପଳରେ ରକ୍ତ ବର୍ଣ୍ଣ ଓ ଅନୁରାଗ ସମୂହକୁ ଭାବ କରୁଅଛନ୍ତି । ( ଏମାନଙ୍କୁ ଦେଖିଲେ ହର୍ଷ ଓ ଅନୁରାଗ ହୃଦୟରେ ଜନ୍ମୁଅଛି ) ।”

୭ମ ପଦ—ପୁଣି ରାମଚନ୍ଦ୍ର ସିଂହାବଲୋକନ ଲକ୍ଷଣରେ ସୀତାଙ୍କୁ ବୋଧ ଦେଇ କହୁଅଛନ୍ତି, “ହେ ପ୍ରାଣବନ୍ଧୁ ! ମୋ କଥା ମାନ ଥରେ ଗୃହିଁ ଦେଖ, ବଗସବୁ ମୂର୍ଣ୍ଣା ଗଛମାନଙ୍କୁ ଧବଳିତ କରୁଅଛନ୍ତି । ( ମୂର୍ଣ୍ଣା ଗଛରେ ବହୁତ ବଗ ବସିଥିବାରୁ ତାହା ଧବଳିତ ହୋଇଅଛି ) । ବନ୍ଧୁଳି ଫୁଲ ଗାଢ଼ ଲାଲରଙ୍ଗ ହେବାରୁ ଅନୁରାଗଜନକ ହୋଇଅଛି ।”

୮ମ ପଦ—“ହେ ବନ୍ଧୁ ! ଏ ଖାଲ ଢିପ ବାଟ, ଏଥି ମନେ ଦେଇ ( ସାବଧାନ ହୋଇ ) ପାଦ ପୋଇ ଚାଲ ( ଢୋଲ ବଳା ଧ୍ୱନି ପ୍ରାୟ ଝିଙ୍କାରି ରବ ପ୍ରବଳ ହୋଇଅଛି । କାଉଁଆଁଳା ଗଛସବୁ ଫଳବନ୍ତ ହୋଇଅଛନ୍ତି । ସେବତୀ ଲତାରେ ଫୁଲ ଫୁଟିଅଛି । ହେ ଲକ୍ଷଣବତୀ ସୀତେ ! ପ୍ରଜାପତି ଯାଉ ବହୁଁରେ କିପରି ବିହାର କରୁଛି ଦେଖ ।”

୯ମ ପଦ—“ଦେଖେ ପାନ ଲତା ‘ଅପୂର୍ବ ବନ୍ତୀର୍ଣ୍ଣ’ ଅବତୀର୍ଣ୍ଣ ହୋଇ ଅଛି । ଲତାମାନଙ୍କ ତଳେ ଗୃହସ୍ଥ ନୃତ୍ୟେବୁ ଯାପନ କରୁଅଛନ୍ତି । ତାହା ଦେଖି

ବଲ୍ଲିକ ଚୈତ୍ରରଥୁଁ ଏମନ୍ତ ଭାବନା
ବନାଳୀ ପ୍ରଭୁ କରିଣ କର ସମ୍ଭାବନା ଯେ । ୯ ।
ବ୍ୟାଘ୍ରଗଡରେ ସଖୀରେ କହନ୍ତି ବୀର ସେ
ବୀରତରୁ ରେ ତରୁଣୀ କୁସୁମ ବରଷେ ଯେ ।
ଦର ଉନ୍ନତ ଉନ୍ନତ ଉପମା-ବିହୀନ
ବିହିତ କରିଛନ୍ତି ବିଧି କକୁଭ ବଚନ ଯେ । ୧୦ ।
ବଟ ସହିତରେ ସଖି ପ୍ରକାଶେ ବିଭୂତି
ଦ୍ୱିଭୂଷଣ ଚମ୍ପା ଷଣପୁଷ୍ପ ପରିରମ୍ଭ ଯେ ।
କରଇ ଭାରତୀ ବର ଭାରତୀ ବିହାରେ
ବିହାୟସେ ଲାସ୍ୟ ଉଲ୍ଲାସକୁ ନ ବସରେ ଯେ । ୧୧ ।

---

୯ମ ପଦ—ନାଗବଲ୍ଲୀ—ପାନଲତା । ବଲ୍ଲିକା—ଲତା । ଚୈତ୍ରରଥ କୁବେରଙ୍କ ଉଦ୍ୟାନ । ବନାଳି—ବନସମୂହ

୧୦ମ ପଦ—ବୀରତରୁ—ଅର୍ଜୁନ ଗଛ । ଦରଉନ୍ନତ—ଅଳ୍ପ ଉଚ୍ଚ । କକୁଭ—ଦିଗ, ଅର୍ଜୁନବୃକ୍ଷ ।

୧୧ଶ ପଦ—ବଟ—କୋକିଳ । ଭାରତୀ—ଭରଦ୍ୱାଜ ପକ୍ଷୀ । ବିହାୟସେ—ଆକାଶରେ । ଲାସ୍ୟ— ସ୍ତ୍ରୀମାନଙ୍କର ମଣ୍ଡଳାକୃତି ନୃତ୍ୟ ।

---

ମନରେ ଭାବନା ହେଉଛି, ଏ ବନ କୁବେର ଉଦ୍ୟାନଠାରୁ ମଧ୍ୟ ଅଧିକ ମନୋହର ଅଟେ । ଏ ବନ ବନମାନଙ୍କର ପ୍ରଭୁ—ଏହା ସମ୍ଭାବନା କର ।"

୧୦ମ ପଦ—ବୀର ରାମଚନ୍ଦ୍ର ତତ୍ପରେ ବ୍ୟାଘ୍ରଗଡ ଲକ୍ଷଣରେ ଧୀରସ୍ୱରରେ କହୁଅଛନ୍ତି, "ହେ ତରୁଣି । ଅର୍ଜୁନବୃକ୍ଷ ପୁଷ୍ପମାନଙ୍କୁ ବର୍ଷଣ କରୁଅଛି ! ସେ ବୃକ୍ଷ ଟିକେ ଉଚ୍ଚ ଓ ଉପମାବିହୀନ ଅଟେ । ବିଧାତା ଏହାକୁ ଯେଉଁ କକୁଭ ନାମ ଦେଇଅଛି, ତାହା ଉଚିତ ହୋଇଅଛି ।"

୧୧ଶ ପଦ—"ହେ ସଖି ! ଏହି ଅର୍ଜୁନ ବୃକ୍ଷ ଶୁକପକ୍ଷୀଙ୍କ ସହିତ 'ଦ୍ୱି-ଭୁଜ' ପକ୍ଷୀ ରୂପ ଐଶ୍ୱର୍ଯ୍ୟ ପ୍ରକାଶ କରୁଅଛି ( ବୃକ୍ଷରେ ବହୁତ ପକ୍ଷୀ ବସିଥିବାରୁ ବୃକ୍ଷ ତାଙ୍କଦ୍ୱାରା ଆଚ୍ଛାଦିତ ହୋଇଅଛି ) ଏବଂ ସଙ୍ଗତା ଚମ୍ପା ଓ ଷଣପୁଷ୍ପ ଗଛର ଫୁଲ ଦ୍ୱାରା ଏ ବୃକ୍ଷ ଭୂଷିତ ହୋଇଅଛି । ( ବୃକ୍ଷ ଉପରେ ଶୁକପକ୍ଷୀ ଏବଂ ତଳେ ଘେରି ରହିଥିବା ଚମ୍ପା ଓ ଷଣପୁଷ୍ପଗଛର ଫୁଲ ଯୋଗେ ଶୋଭିତ ହୋଇଅଛି ) ଭରଦ୍ୱାଜପକ୍ଷୀ ସୁନ୍ଦର ଶବ୍ଦ କରି ବିହାର କରୁଅଛି । ଉଲ୍ଲାସ ମନରେ ନୃତ୍ୟଛଳରେ ଆକାଶକୁ ଉଡିଯାଇ ପୁଣି ଆସି ବସୁଛି । ( ଭରଦ୍ୱାଜ ପକ୍ଷୀ କୌଣସିଠାରେ ସ୍ଥିର ହୋଇ ବସେ ନାହିଁ । ସେ ଆନନ୍ଦ ମନରେ ଆକାଶରେ ଉଡୁଛି ପୁଣି ଆସି ସେ ବୃକ୍ଷରେ ବସୁଛି )

ବିଶଦ ମଲ୍ଲିକାକୁଳ ବକୁଳ ବସତି
ବଣରେ ବସନ୍ତି ମଧୁକରେ ବିଳସନ୍ତି ଯେ ।
ବିଳଶୟା ଗନ୍ଧସାର ଗନ୍ଧରେ ବିଦିତ
ବିଦିଗ ଦିଗ ଜବନେ ପବନେ ବାସିତ ଯେ । ୧୨ ।
ବସନ୍ତବସନ ମଗ୍ନ ମହାଯମକରେ
ବସନ୍ତ ବସନ୍ତପକ୍ଷୀ ବସନ୍ତଦ୍ରୁମରେ ଯେ ।
ବିଥୀ ବିଥୀ ଶୋଭା ଦିଶି କୁମୁଦ କୁମୁଦ
ବିଲୋକ ହାସ ପ୍ରକାଶି କୁମୁଦ କୁମୁଦ ଯେ । ୧୩ ।

---

୧୨ଶ ପଦ—ବିଶଦ—ଶୁକ୍ଳ । ମଧୁକର—ଭ୍ରମର । ଗନ୍ଧସାର—ଚନ୍ଦନ ଜବନେ—ଶୀଘ୍ର ।

୧୩ଶ ପଦ—ବସନ୍ତବସନ—ପୀତାମ୍ବର ( ରାମଚନ୍ଦ୍ର )। ବସନ୍ତ—ଆସୀନ ବା ଉପବିଷ୍ଟ । ବସନ୍ତପକ୍ଷୀ—ହଳଦୀବସନ୍ତ । ବସନ୍ତଦ୍ରୁମରେ—ଆମ୍ବଗଛରେ । ବିଥୀ ବିଥୀ—ଶ୍ରେଣୀ ଶ୍ରେଣୀ । କୁମୁଦ—ରକ୍ତପଦ୍ମ କୁମୁଦ କଇଁ । କୁମୁଦ—ବୃଥା ଆନନ୍ଦ ।

---

୧୨ଶ ପଦ—"ମଲ୍ଲିଲତା ବକୁଳ ଫୁଲ ଫୁଟିଥିବା ଯୋଗୁ ଶୁକ୍ଳବର୍ଣ୍ଣ ହୋଇଅଛି । ଏ ବନ ବକୁଳ ବୃକ୍ଷରେ ପୂର୍ଣ୍ଣ ହୋଇଅଛି । ( ଅନ୍ୟାର୍ଥ—ଏ ବନ ଶୁକ୍ଳ ମଲ୍ଲି ଓ ବକୁଳ ଚଢ଼ିର ବାସସ୍ଥାନ ହୋଇଅଛି ) । ଭ୍ରମରମାନେ ବଶୀଭୂତ ହୋଇ ଫୁଲମାନଙ୍କରେ ବସୁଅଛନ୍ତି । ସୁଗନ୍ଧରେ ମୋହିତ କରୁଥିବା ଚନ୍ଦନ ବୃକ୍ଷମାନଙ୍କରେ ସର୍ପମାନେ ବିହାର କରନ୍ତି । ଦିଗ ବିଦିଗ ସବୁ ପବନ-ଯୋଗେ ଅହରହ ସୁବାସିତ ହେଉଅଛନ୍ତି ।"

୧୩ଶ ପଦ—ବସନ୍ତବସନ ରାମଚନ୍ଦ୍ର ମହାଯମକରେ ମଗ୍ନ ହୋଇ କହୁଅଛନ୍ତି, ( ମହାଯମକ ଲକ୍ଷଣ—ଗୋଟିଏ ପାଦରେ ଏକଶବ୍ଦ ଯମକ ନିୟମରେ ରହିଥାଏ ) "ହେ ସଖୀ ! ହଳଦୀବସନ୍ତ ପକ୍ଷୀ ଆମ୍ବଗଛରେ ବସିଅଛନ୍ତି । ପୁଷ୍କରିଣୀରେ ରକ୍ତପଦ୍ମ ଓ କଇଁଫୁଲସବୁ ଧାଡ଼ି ଧାଡ଼ି ହୋଇ ଫୁଟି ଶୋଭା ପାଉଅଛି । ତୁମ୍ଭେ ସେମାନଙ୍କୁ ହାସ ପ୍ରକାଶ କରି ଦେଖ ଏବଂ ସେମାନଙ୍କ କୁତ୍ସିତ ପ୍ରକାଶକୁ ମୁଦ୍ରିତ କରି ଦିଅ । ( ତୁମ୍ଭର ହାସ ଦେଖି କଇଁ ଓ ନେତ୍ରର ଶୋଭା ଦେଖି ପଦ୍ମ ଲଜ୍ଜାରେ ମୁଦ୍ରିତ ହୋଇଯିବେ )।

ବିକଶିତ ହୋଇଛନ୍ତି କେଶରୀ କେଶରୀ
ବିଳସେ ଶାଖାରେ ଦେଖ କେଶରୀ କେ ସବୁ ହେ ।
ବିଦାରି ଯାଉଛି କରିକେଶରୀ କେଶରୀ ।
ବିହୀନ ହୋଇଛି ମାତ୍ର କେଶରୀ କେଶରୀ ହେ । ୧୪ ।
ବାଳାକୁ ହସ୍ତ ଦେଖାଇ ପୁଣି ରଘୁବର
ବାକ୍ୟ ସମ୍ବୋଧନ କଲେ ସର୍ବ ଯମକରେ ହେ ।
ବଇଦେହି ସୁମନା ସୁମନା ଏ ସୁରଭି
ବଇଦେହି ସୁମନା ସୁମନା ଏ ସୁରଭି ହେ । ୧୫ ।
ବିଦ୍ୟଲୋକରେ ପ୍ରିୟକ ମାଧବୀ ସଂଘାତ
ବିଦ୍ୟ ଲୋକରେ ପ୍ରିୟକ ମାଧବୀ ସଂଘାତ ହେ ।

---

୧୪ଶ ପଦ— କେଶରୀ—ନାଗେଶ୍ୱର । କେଶରୀ—ପୁନ୍ନାଗ । କେଶରୀ—ମର୍କଟ ବିଶେଷ । କରିକେଶରୀ—ଶ୍ରେଷ୍ଠ ହସ୍ତୀ । କେଶରୀ—ସିଂହ । କେଶରୀ—ଘୋଟକ ।

୧୫ଶ ପଦ—ସୁମନା—ଦେବପୁଷ୍ପ ବା ଲବଙ୍ଗ ବୃକ୍ଷ । ସୁରଭି—ସୁନ୍ଦର । ବଇଦେହି—ପିପ୍‌ଳୀ ଗଛ—ସୁମନା—ମନୋରମା । ସୁମନା—ଧୀରା । ସୁରଭି—ଜାଇଫଳ ଗଛ ।

---

୧୪ଶ ପଦ—"ପୁଣି ଏ ବନରେ ପୁନାଗ, ନାଗେଶ୍ୱର ବୃକ୍ଷମାନେ ପୁଷ୍ପିତ ହୋଇଅଛନ୍ତି । ତାଙ୍କ ତଳରେ ବାନରମାନେ ରତିକ୍ରୀଡ଼ା କରୁଅଛନ୍ତି । ତାଙ୍କ ରତିକ୍ରୀଡ଼ା ସହିତ ଆଉ କିଏ ସମାନ ହେବ ? (ଆଉ ଦେହସମାନ ନୁହନ୍ତି)। ଦେଖ, ଏଠାରେ ସିଂହ ଶ୍ରେଷ୍ଠହସ୍ତୀକୁ ବିଦାରଣ କରି ଯାଉଅଛି । (ତୁ ମନେ କରିବୁ, ମୁଁ ତ କରିଗମନା ଓ କରିକୁମ୍ଭସ୍ତନା, ସିଂହ ମୋତେ ବା କେ ବିଦାରିବ । ମାତ୍ର ସେ ଭୟ କର ନାହିଁ । କାରଣ, ସେ ହସ୍ତୀକୁ ବିଦାରଣ କରି ଗୃହ ଯାଇ ଅଛି—ଏଠାରେ ନାହିଁ) । ଏ ବନ ସହିତ କେହି ସମାନ ହେବେ ନାହିଁ । କିମ୍ବା ଏ ବନ କେବଳ ଶ୍ରେଷ୍ଠ ଘୋଟକ ବିହୀନ ହୋଇଅଛି । (ଏ ବନରେ ସବୁ ଅଛି ମାତ୍ର ଉତ୍ତମଜାତୀୟ ଅଶ୍ୱ ନାହାନ୍ତି) ।"

୧୫ଶ ପଦ—ତତ୍‌ପରେ ରଘୁବୀର ସୀତାଙ୍କୁ ସମ୍ବୋଧନ କରି ହସ୍ତ ଦ୍ୱାରା ଦେଖାଇ ଦେଇ ସର୍ବଯମକରେ କହିଲେ, ( ସର୍ବଯମକ ଲକ୍ଷଣ,—ସମସ୍ତ ପାଦ ଶ୍ଳୋକରେ ଏକେକ ବର୍ଣ୍ଣିଷ୍ଟ ହେଲେ ସର୍ବଯମକ ହୁଏ ) 'ହେ ବୈଦେହି । ହେ ମନୋରମେ । ହେ ଧୀରେ ! ଦେଖ, ଏ ମାଳତୀ ପୁଷ୍ପ, ଏ ଚମ୍ପାପୁଷ୍ପ, ଏ ପିପ୍‌ଳୀ ବୃକ୍ଷ, ଏ ଲବଙ୍ଗ ବୃକ୍ଷ, ଏ ଜାଇଫଳ ବୃକ୍ଷ ।"

୧୬ଶ ପଦ—"ହେ ସଙ୍ଗାତ । ହେ ବାଳେ । ହେ ଚମ୍ପକବର୍ଣ୍ଣେ । ଦେଖ, ଏ ଧାର୍ମିକ ଲୋକଙ୍କର ପ୍ରିୟ ତୁଳସୀ ବୃକ୍ଷ । କଦମ୍ବ ବୃକ୍ଷ ମାଧବୀ ଲତା

ବାଳକା କନକକାନ୍ତି କନକ କନକ
ବାଳକା କନକକାନ୍ତି କନକ କନକ ଯେ । ୧୭ ।
ବିଳାସିନୀ ଏ ସାରଙ୍ଗ ସାର ସଚକ୍ରରେ
ବିଳାସିନୀଏ ସାରଙ୍ଗ ସାରସ ଚକ୍ରରେ ଯେ ।
ବସନ୍ତ ବରେ ପ୍ରକାଶ ମାନ ଯେ ଦନ୍ତରେ
ବସନ୍ତବରେ ପ୍ରକାଶମାନ ଯେ ଦନ୍ତରେ ଯେ । ୧  ।
ବୋଲନ୍ତି ସୌମିତ୍ରି ଛନ୍ଦେ ହସ ହସ ହୋଇ
ବୀଣାପ୍ରବନ୍ଧ ରେ ଅନା ବୋଲାକୁ ଖେଳାଇ ଯେ ।

---

୧୬ଶ ପଦ—ଜଗତରେ—ସଂସାରରେ । ସେବ—ବେଶ । ତ୍ରିସୁବ—କଦମ୍ବ ଗଛ । ମାଧବୀ—ତୁଳସୀଗଛ । ସଂବାଦ—ସମ୍ବନ୍ଧ । ବାଳକା—ବାଳକେ କା ବାଳେ ବୋଲି ସମ୍ବୋଧନ । ବାଳକା—ଲଟିପଲଶ । କନକକାନ୍ତି—ସୁବର୍ଣ୍ଣ ଓ ଚମ୍ପକ ପରି କାନ୍ତିବିଶିଷ୍ଟା ସ୍ତ୍ରୀ ।

୧୭ଶ ପଦ—ବିଳାସିନୀ—ବିଳାସବତୀ ସ୍ତ୍ରୀ । ସାରଙ୍ଗ—ଭୃଙ୍ଗ, ଭଦ୍ରଭଦଳିଆ, ପଦ୍ମ, ଚକ୍ରବାକ, ମଞ୍ଜୁହସ୍ତୀ । ସାର—ଶ୍ରେଷ୍ଠ । ସଚକ୍ରରେ—ସମ୍ମୁଖରେ । ସାରଙ୍ଗ—ହଂସ । ସାରସ—ସାରସ ପକ୍ଷୀ । ଚକ୍ରରେ—ଚକ୍ରବାକ ପକ୍ଷୀ । ବସନ୍ତବରେ—ଶ୍ରେଷ୍ଠ ବସନ୍ତମାନେ । ମାନ—ଗର୍ବ । ବସନ୍ତବରେ—ପ୍ରଧାନ ଯୁଦ୍ଧରେ । ଦନ୍ତରେ—ପର୍ବତ ଶୃଙ୍ଗରେ ବା ଲତା କୁଞ୍ଜରେ ।

୧୮ଶ ପଦ—ବୀଣାପ୍ରବନ୍ଧ—ବହୁଂଡ୍ପର ଗୌରାଙ୍ଗୀ । ବାର ବାର—ପୁନଃପୁନ । ତାରତର—ଅତ୍ୟୁଜ୍ଜ୍ୱଳ । ବରତର—ରତିକ୍ରୀଡ଼ାରେ ବିଶେଷରେ ଅସକ୍ତ । ଏଣୀ ଏଣ—ମୃଗୀ ମୃଗ ।

---

ସମ୍ମୁଖରେ ବେଷ୍ଟିତ ହୋଇ ଶୋଭା ପାଉଅଛୁ । ପୁଣି ନାଗେଶ୍ୱର, ପୁନାଗ, କିଂଶୁକ ଓ ଚମ୍ପା ବୃକ୍ଷ କପର ଶୋଭା ବିସ୍ତାର କରୁଅଛନ୍ତି ।”

୧୭ଶ ପଦ—“ହେ ବିଳାସିନି । ଏ ପୁଷ୍କରିଣୀର ଜଳ ଚକ୍ରବାକ ସହିତରେ ଶୋଭମାନ ହୋଇଅଛି । ଏ ଭ୍ରମର ପଦ୍ମ ସମ୍ମୁଖରେ ବିଳାସବତୀ ହୋଇଅଛି । ହେ କରେ । ଦେଖ, କପର କୋରକର ଯୁଦ୍ଧରେ ମତ୍ତ ହେଲ ପ୍ରାୟ ଦନ୍ତ ଦେଖାଇ ପର୍ବତରେ ଶୂକରମାନେ ବୁଲୁଅଛନ୍ତି ।”

୧୮ଶ ପଦ—ପୁଣି ରାମଚନ୍ଦ୍ର ହସ ହସି ହୋଇ ସୌମ୍ୟ ଛନ୍ଦରେ କହନ୍ତି, “ହେ ବହୁଂଡ଼ଗୌର । ମଣି ପୃଷ୍ଠରେ ସମୁଜ୍ଜ୍ୱଳ ତୋର ଚନ୍ଦ୍ରସୁର

ବାରବାର ଭାରତର ମଣିଗଣ ଜ୍ୟୋତ
ଝରଡର ସୁରତର ଏଣୀ ଏଣ ପ୍ରୀତ ଯେ ।୧୮।
ବଣ ରତ୍ନନିଧି ଗୁଞ୍ଜ ସଙ୍ଗ ଅସନରେ
ବଣ ଯନ୍ତ୍ର ବଧି କୁଞ୍ଜଭୃଙ୍ଗ ପ୍ରସନ୍ନରେ ଯେ ।
ବାଦୀବାଦ ବେଣୁ ଥାଇ ଥାଇ ପ୍ରେମଶୀଳା
ବେଦବତ ମଣ୍ଡିଥାଇ ସାଇ ସ୍ୱମ ଶିଳା ଯେ ।୧୯।
ବ୍ୟଥା କରଇଣ ପାଦ ପ୍ରକାଶେ ବସିଲେ
ବସାଇ ଜାନୁରେ ଅନ୍ତର୍ଲିପେ ଏ ଭାଷିଲେ ଯେ ।
ବିହାରସ୍ଥାନ କେ ମୀନମାନଙ୍କ ଅଟଇ (ବନ)
ବାୟସରେ କେହ୍ଲୁ ପ୍ରତିପାଳିତ ହୁଅଇ ଯେ ।୨୦। (ଦିଭ)
ବଭ୍ରବଶ୍ରୀ ପ୍ରକାଶେ କ ବଲେ ପକ୍ଷୀଅଳି (ଲୁଚ)
ବହୁପାଶ ନେତାନଙ୍କେ କେହ୍ଲୁ ଗର୍ଜ୍ଜ ଜଳ ଯେ (ମାର)

---

୧୯ଶ ପଦ—ଗୁଞ୍ଜ—ଚାଇଁଚ । ସ୍ୱମଶିଳା—ସୁନ୍ଦର ପ୍ରସ୍ତର । ଉତ୍କଣ୍ଠ ଉନ୍ନସମୂହ ।

୨୦ଶ ପଦ—ବଭ୍ରବଶ୍ରୀ—ସନ୍ଧ୍ୟା । ପକ୍ଷିଅଳି—ପକ୍ଷୀସମୂହ । ବହୁପାଶ—ମହାଦେବ ।

---

ଚୋଳାକୁ ବାରମ୍ବାର ଖେଳାଇ ନିରୀକ୍ଷଣ କରି, ମୃଗୀ ଓ ମୃଗମାନେ ପରସ୍ପର ସୁରତରେ ବିଶେଷଭାବରେ ରତ ହୋଇ କ୍ରୀଡ଼ା କରୁଅଛନ୍ତି ।"

୧୯ଶ ପଦ—"ଅସନ ବୃକ୍ଷରେ ମାଡିଥିବା ଚାଇଁଚ ଲତାର ଫଳସବୁ ରତ୍ନମାନଙ୍କୁ ସୁଦ୍ଧା ଧିକ୍କାର କରୁଅଛି । ବିଧାତା କଳ୍ପିତ ବୃକ୍ଷମାନଙ୍କରେ ଭ୍ରମରସବୁ ବସି ଅଛନ୍ତି । ହେ ପ୍ରେମଶୀଳେ ! ବାଉଁଶ ଗଛରେ ପବନ ପଶି ତାକୁ ପରସ୍ପର ବାଦନଶୀଳ କରୁଅଛି, ଶୁଣ ।" ତତ୍ପରେ ରାମଚନ୍ଦ୍ର ଖଣ୍ଡିଏ ସୁନ୍ଦର ପଥର ପଡିଥିବାର ଦେଖି ତାକୁ ବେଦୀ ପ୍ରାୟ ମନେ କଲେ ।

୨୦ଶ ପଦ—"ହେ ସୀତେ ! ତୋର ପାଦ ବ୍ୟଥା କରୁଛି ।" ଏପରି କହି ସେ ଶିଳା ଉପରେ ବସିଲେ । ସୀତାଙ୍କୁ ଜାନୁ ଉପରେ ବସାଇ ଅନ୍ତର୍ଲାପରେ କହିଲେ, "ମୀନମାନଙ୍କର ବିହାର ସ୍ଥାନ କଅଣ ? 'ବାୟସ' ବାଦ ଦ୍ୱାରା କିଏ ପ୍ରତିପାଳିତ ହୁଏ ?

ବିଷ୍ଣୁ କୋଳେ ସବୁକାଳେ କେହୁ ମନୋହର (ରମା)
ବିଶ୍ୱରେ କରୁଛୁ କେହୁ ପର ଉପକାର ଯେ ।୧୧। (ତରୁ)
ବାନରଙ୍କର ପ୍ରସିଦ୍ଧ ନାମ କେ ଜଗତେ (କପି)
ବିନ୍ଦୁର ଉଚ୍ଚଗଣନା ସଂଖ୍ୟା ପୁନଃ କେତେ ଯେ (ନବ)
ବରୁଷୀ ସ୍ୱୟମ୍ବରେ କନ୍ୟାକୁ କିସ କହୁ (ବର)
ବୋଲଇ ଜୀବ ମଧ୍ୟରେ ସାରସ୍ୱତ କେହୁ ଯେ ।୧୨। (ନର)
ବୋଲନ୍ତି ଯବନେ ଇଷ୍ଟଦେବରେ କି ସ୍ୱରୂପ (ପିର)
ବସୁଧାପତି ପ୍ରଜାଙ୍କଠାରୁ ନେନେ କିସ ଯେ । (କର)
ବାମନମୂର୍ତ୍ତି ନନ୍ଦନ ବୋଲନ୍ତି ତାହାର (ସୁତ)
ବାଞ୍ଛି ସଂସାରୁ କି ହୋଏ ଗୁରୁଶିଷ୍ୟଠାରୁ ଯେ ।୧୩। (ତର)
ବିଧୂରେ ଯୁଦ୍ଧରେ କେହୁ ବଚନ ଚଞ୍ଚଳ । (ମାର)
ବସନ୍ତ ହୋଇଲେ କିସ କରଇ କୋକିଳ ଯେ । (ରବ)
ବିପ୍ରଲବ୍ଧା ପ୍ରଭାତେ କି କରେ ଉପକାନ୍ତେ (ମାନ)
ବ୍ରହ୍ମାଣ୍ଡେ ଜୀବନମୁକ୍ତ ଅଟଇ କେ ସତେ ଯେ ।୧୪। (ତପୀ)

---

୧୧ଶ ପଦ—"ରାତ୍ର ପ୍ରଭାତ ହୁଅନ୍ତେ ପକ୍ଷୀ ସମୂହ କଣ କରନ୍ତି? ମହାଦେବଙ୍କ ନେତ୍ରାନଳରେ କିଏ ଜଳିଗଲା? ସବୁ ସମୟରେ ବିଷ୍ଣୁଙ୍କ କୋଳରେ କିଏ ଶୋଭା ପାନ୍ତି? ସଂସାରରେ ପରର ଉପକାର କିଏ କରୁଛି?"

୧୨ଶ ପଦ—"ଜଗତରେ ବାନରମାନଙ୍କର କେଉଁ ନାମ ପ୍ରସିଦ୍ଧ? ପୁଣି ଗଣନା କଲେ ଉଚ୍ଚସଂଖ୍ୟା କେତେ ହେବ? ବାଗୁର କର, ସ୍ୱୟମ୍ବର କାଳରେ ସଖୀ କନ୍ୟାକୁ କଣ କହେ? ଜୀବମାନଙ୍କ ମଧ୍ୟରେ ଶ୍ରେଷ୍ଠ କିଏ?

୧୩ଶ ପଦ—"ଯବନମାନେ ଇଷ୍ଟଦେବଙ୍କୁ କଣ ବୋଲି କହନ୍ତି? ରାଜା ପ୍ରଜାଙ୍କଠାରୁ କଣ ନିଅନ୍ତି? ବାମନମୂର୍ତ୍ତି ବିଷ୍ଣୁ କାହାର ପୁତ୍ର ଅଟନ୍ତି? ଏ ସଂସାରରେ ଗୁରୁ ଶିଷ୍ୟଠାରେ କଣ ହେବାକୁ ଇଚ୍ଛା କରନ୍ତି?

୧୪ଶ ପଦ—"ଘୋର ଯୁଦ୍ଧରେ କି ଚଞ୍ଚଳ ବାକ୍ୟ ଶୁଣାଯାଏ? ବସନ୍ତ ସମୟରେ କୋକିଳ କଣ କରେ? ବିପ୍ରଲବ୍ଧା କାମିନୀ ଜାରପୁରୁଷ-ଠାରେ ପ୍ରଭାତରେ କଣ କରେ? ସଂସାରରେ ପ୍ରକୃତରେ କିଏ ଜୀବନ୍ମୁକ୍ତ ଅଟେ?"

ବେଦେ କେ ଅଛି ଅଥର୍ବ ଯଜୁଃ ସାମ ତେଜି (ଋକ)
ବସନ୍ତେ କେ କେ ବିୟୋଗୀ ଶତ୍ରୁ, କହ ହେବ ଯେ ।
ଜନ ପିକ ଭୃଙ୍ଗ ମାର ବୋଲେ ବଇଦେହୀ
ଶ୍ରୀଶେଷ ତୋଷ ଚୁମ୍ବନ ଆଲିଙ୍ଗନ ଦିଅନ୍ତି ଯେ । ୨୫ ।
କହିଲି ପି କାହ୍ନୁ ବେନି ବେନି ବର୍ଣ୍ଣ ଲେଖି
ବାମ ନାଶି ଦକ୍ଷିଣବର୍ଣ୍ଣକୁ ଭଜ ସଖି ଗୋ ।
( ଶିବ ) ବନ୍ଦ୍ୟ କେ ଜଗତେ, କେଉଁ ଜଳଚର ସ୍ଥାନ ( ଜଳ )
( ସଭ ) ବସି ରଜା କି କରୁ ବେଶ୍ୟାର କି ରଞ୍ଜନ ଯେ ।୨୬। ( ରୂପ )
( ଚଣ୍ଡୀ ) ବ୍ୟୋମକେଶମୋହିନୀ କେ, ଶିଶୁ କେ ପାଳଇ (ମାତା )
( ପଶା ) ବର୍ଣ୍ଣ ଖେଳରେ କେ ଶେଷ, ଘନ କି ମୁଞ୍ଚଇ ଯେ ? ( ନୀର )
( କବି ) ବିରଚେ କେଉଁ ପ୍ରବନ୍ଧ, ଉଡ଼ି କି କରନ୍ତି ( ଉପ )
( ଗିରି ) ବହେ ଉତ୍ତୁଙ୍ଗ ଶୃଙ୍ଗ କେ, ବିପ୍ରେ କି ଦିଅନ୍ତି ଯେ ।୨୭। (ବ୍ରତ)

---

୨୭ଶ ପଦ—ବ୍ୟୋମକେଶ—ମହାଦେବ । ଘନ—ମେଘ ; ଉତ୍ତୁଙ୍ଗ—ଅତି ଉଚ୍ଚ । ବିପ୍ରେ—ବ୍ରାହ୍ମଣମାନେ ।

---

୨୫ଶ ପଦ—"ଅଥର୍ବ, ଯଜୁ, ସାମବେଦକୁ ଛାଡି ଆଉ କି ବେଦ ରହିଲା ? ବସନ୍ତ କାଳରେ ବିରହୀମାନଙ୍କର ଶତ୍ରୁ କେଉଁମାନେ ? ଏହା କହିବ ତୁ । ( ୧୯ଶ ପଦଠାରୁ ୨୫ଶ ପଦ ପର୍ଯ୍ୟନ୍ତ ରାମଙ୍କ ପ୍ରତ୍ୟେକ ପ୍ରଶ୍ନର ଉତ୍ତର 'ଜନ ପିକ ଭୃଙ୍ଗ ମାର' 'ରମା ତରୁ କପି ନର' 'ଧର ନର ହର ଚର' 'ଭୁର ତର ମାର ରଜ' 'ମାନ ତପୀ ଭୁଜ' ହେଲା ) ଶେଷରେ ରାମଚନ୍ଦ୍ର ପଚାରିଲେ, ବନସ୍ତରେ ବିରହୀର ଶତ୍ରୁ କିଏ ? ( ବିରହୀକୁ କେଉଁମାନେ କଷ୍ଟ ଦିଅନ୍ତି ? ) ରାମଙ୍କ ପ୍ରଶ୍ନ ଶୁଣି ବୈଦେହୀ କହିଲେ, "ଜନ, ପିକ, ଭୃଙ୍ଗ ମାର ।" ଏହା ଶୁଣି ରାମ ଖୁବ୍ ଆନନ୍ଦିତ ହୋଇ ତାଙ୍କୁ ଚୁମ୍ବନ ଓ ଆଲିଙ୍ଗନ କଲେ ।

୨୬ଶ ପଦ—ପୁଣି କହିଲି ପରେ କାବ୍ୟ ପ୍ରକାଶ କରି କହିଲେ, "ଗୋ ସଖି ! ଦୁଇ ଦୁଇ ଅକ୍ଷର ଲେଖି ବାମ ଅକ୍ଷର ନାଶ ଦକ୍ଷିଣ ଅକ୍ଷରକୁ ହେବୁ କର । ଜଗତରେ ପୂଜ୍ୟ କିଏ ? ଜଳଚର ସ୍ଥାନ କିଏ ? ରାଜା କଣ କରି ବସନ୍ତି ? ବେଶ୍ୟାର ରଞ୍ଜନ କଅଣ ?"

୨୭ଶ ପଦ—"ଶିବଙ୍କର ମୋହିନୀ କିଏ ? ପିଲାଙ୍କୁ କିଏ ପାଳେ ? ଖେଳ ମଧ୍ୟରେ ବଡ଼ କିଏ ? ମେଘ କଣ ତ୍ୟାଗ କରେ ? କିଏ ପ୍ରବନ୍ଧ ରଚନା କରନ୍ତି ? ଉଚ୍ଚ ଶୃଙ୍ଗ କିଏ ବହେ ? ବ୍ରାହ୍ମଣମାନେ କଣ ଦିଅନ୍ତି ?"

ତତକ୍ଷଣ ଚାନ୍ଦବଦନ ବଚନ ପ୍ରକାଶି
ବାଳା ପୁଂସ ସ୍ୱଭ ରାଗ ରାଗ ଛନ୍ଦେ ବଶି ଯେ ।
ତାରେ ହସି ମଉନ ହଳତ୍ରପା ଧଲା
ବସ୍ତ୍ରୀର୍ଣ୍ଣ ମଧ୍ୟପମତ ଏ ଝୁଡେ ହୋଇଲା ଯେ । ୩୧ ।
କାରଣବେଶର ପୁଷ୍ପ ତୋଳନ୍ତେ ଖଣ୍ଡ ଜଳ
ତାର ଜଲ୍ଲାଣି ଅଭ୍ରୁତେ ନେତ୍ର ସରସିଜ ଯେ ।
ନିରେଖଣ ହ୍ରିୟା ମାନ ପ୍ରିୟେ ଚଞ୍ଚଳତ
ତଲେମଲେମ ମେଷପୁଚ୍ଛରେ ଗ୍ରନ୍ଥେ ଲୁଡ଼ ଯେ । ୩୨ ।
ବଦନ ବନସ ନାଳ ସାର ବିଦାରଦ
ବଧ ମାନ ଜରଭ ଚରଜିନ ମାଧବ ଯେ ।

---

୩୧ଶ ପଦ—ରାଗ—ଅନୁରାଗ ବା ସ୍ନେହ । ସ୍ୱଭୁ—ରଙ୍ଗ ।
୩୨ଶ ପଦ—କାରଣବେଶର—ନାଗକେଶର । ସରସିଜ—ପଦ୍ମ ।

---

୩୧ଶ ପଦ— ତାହା ଦେଖି ଚନ୍ଦ୍ର ସମ ମନୋହର ବଦନ ପ୍ରକାଶ କରି କହିଲେ, "ହେ ପ୍ରିୟେ ! ବାଳାର ସ୍ୱେଦଜଳର ସ୍ନେହ ରଙ୍ଗ ଛନ୍ଦରେ ବଶିଲ । ( ବିପରୀତ ରତିବେଳେ ପୁରୁଷ ସ୍ତ୍ରୀ ଓ ସ୍ତ୍ରୀ ପୁରୁଷ ରୂପେ ରମଣରତ ହୋଇଥିବାରୁ ପୁରୁଷଠାରେ ସ୍ତ୍ରୀର ସ୍ୱଭାବର ଗୁଣ ଦେଖାଗଲା ) । ଏହା ଶୁଣି ଉତ୍କଣ୍ଠିତା ବାଳା ସୀତା ଥରେ ହସି ମୌନ ହେଲେ । ଏହି ଭାବରେ ମଧ୍ୟସମତ ଲକ୍ଷଣ ବସ୍ତ୍ରୀବଦ ହେଲା । ( ୨୧ଶ ପଦଠାରୁ ୩୧ଶ ପଦ ପର୍ଯ୍ୟନ୍ତ ମଧ୍ୟସମତ । ମଧ୍ୟସମତର ଲକ୍ଷଣ—ପାଦର ମଧ୍ୟସ୍ଥଳରେ ଯମକ ନିୟମ ଅନୁସୃତ ହୋଇଥିଲେ ମଧ୍ୟସମତ ହୁଏ ) ।

୩୨ଶ ପଦ—ତାହାପରେ ରାମଚନ୍ଦ୍ର ନାଗେଶ୍ୱର ଫୁଲ ତୋଳିବାବେଳେ ଫୁଲର ପରାଗ ସୀତାଙ୍କ ନେତ୍ର ପଦ୍ମରେ ପଡ଼ିବାରୁ ଜଳ ଜନ୍ମି ଅଶ୍ରୁ ଦେଖାଗଲା । ( ଜଳରୁ ପଦ୍ମ ଜାତ ହୁଏ, ମାତ୍ର ଏ ନେତ୍ରପଦ୍ମରୁ ଜଳ ଜାତ ହେଉଅଛି, ଏଣୁ ଅଦ୍ଭୁତ ) । ତାହା ଦେଖି 'ହ୍ରିୟା ମାନ କଲ କି ?' ଏପରି ବଚନ ରାମଚନ୍ଦ୍ର କହି ଲେମଲେମ ମେଷପୁଚ୍ଛ ଛନ୍ଦରେ ଗ୍ରନ୍ଥିତ କଲେ । ( ଲେମ ଲେମ ମେଷପୁଚ୍ଛ ଲକ୍ଷଣ—ଗୀତର ପ୍ରତ୍ୟେକ ପାଦକୁ ମୂଳରୁ ଶେଷକୁ ପାଠ କଲେ ଯାହା ଶେଷରୁ ମୂଳକୁ ପାଠ କଲେ ତାହା ) ।

୩୩ଶ ପଦ—"ହେ ପ୍ରିୟେ ! ପ୍ରସନ୍ନା ହୁଅ । ତୁମର ଶ୍ରେଷ୍ଠ ମୁଖରେ ଲୁଚିଥିବା କମଳ ଭାବକୁ ନାଶ କର, ମୋ ପ୍ରେମରେ ଦ୍ରବୀଭୂତ ହୁଅ । ( ଯାତ ତାଙ୍କର

ଜଳ ମାର ତ ହେବ ବଦ୍ଧେ ତର ମାଧବ
ବଦ୍ଧେ ସଦା ତପେ ଶରତ ଦାସ ହେବି ଯେ । ୩୩ ।
ଚକୋର ପ୍ରକାଶ କରି ଚନ୍ଦ୍ରାସ୍ୟରତନ
ବିସ୍ତାରିଲୁ ନୃତ୍ୟ ଶେଷ ହେଲା କି କହି ମାନ ଯେ ।
କଳ୍ପିଲେ ତହୁଁ ମଧୁର ଟେଣକ ରଚନା
ବେଣୀ ନ ଗଲେ ନାଚନ୍ତା ଉତ୍ଫୁଲ୍ଲ ସୁମନା ଯେ । ୩୪ ।
ବଦନକୁ ନୁଆଇଁ କହିଲେ ରସବତୀ
ବସୋଇବ ନାହିଁ ପଣ୍ଡା ସେ ଧୂରସପତି ଯେ ।

---

୩୩ଶ ପଦ—ବରଦ—ପ୍ରସନ୍ନ । ଚରସାନନ—ଵିମର୍ଷ ମୁଖ । ଵିଦରବ—ବିଶେଷରେ ଦ୍ରବୀଭୂତ । ବଧ—ନାଶ । ଜବତ—ବୃକ୍ଷ । ତର୍ଜନ—ଭୟ । ମାଧବ—ବସନ୍ତକାଳ । ବନ୍ଧ—ଭେଦନ । ମର—କନ୍ଦର୍ପ ।

---

କର ) ବଡ଼ନ୍ତ ତର୍ଜନ କରି ଅସୁଅଛି । ସେ ତାର ଶର ବନ୍ଧିବ ଓ ମାରିବ । ବାସନ୍ତୀଲତା ଉଦ୍‌ବେଳିତ ହେଉଅଛି । ଏହା ଦେଖି ମୋ ମନରେ ତ୍ରାସ ଜାତ ହେଉଛି । ତୁ ତୋର ବିଶେଷ ଭାବରେ ବଢ଼ିଥିବା ଏ ମାନକୁ ତ୍ୟାଗ କର । ମୁଁ ସାନୁରକ୍ତ ହୋଇ ତୋର ଦାସ ହେବି । (ବସନ୍ତର ଶୋଭା ଦେଖି ମୋ ମନରେ କନ୍ଦର୍ପର ଭୟ ଜାତ ହେଉଛି । ତୁ ଏତେବେଳେ ମାନ କଲେ କନ୍ଦର୍ପ ମୋତେ ବହୁତ ଦୁଃଖ ଦେବ । ତୁ ମୁଖ ନ ଶୁଖାଇ ପ୍ରସନ୍ନା ହୁଅ, ମୁଁ ତୋର ଦାସ ହେବି ) ।"

୩୪ଶ ପଦ—ଏହା ଶୁଣି ଚନ୍ଦ୍ରାସ୍ୟ ରତନ ସୀତା ଚକୋର ପ୍ରକାଶ କରି କହିଲେ, "ହେ ନୃତ୍ୟ ବିସ୍ତାର କରୁଥିଲ, ଶେଷ ହେଲା କି ? ମାନ ବୋଲି କଣ କହୁଛ ? ( ନୃତ୍ୟ ଶେଷରେ ମାନ ହୁଏ, ଏଠାରେ କେହି ନୃତ୍ୟ କରୁ ନ ଥିଲ, ମାନ ବୋଲି କଣ କହୁଛ ? )" ତାହା ଶୁଣି ରାମଚନ୍ଦ୍ର ମଧୁର ସ୍ୱରରେ ଧନ୍ୟଙ୍କୁ ଚତୁରତା କରି କହିଲେ, "ଦେଖ ଅର୍ଥାତ୍ ମୟୂର 'ସୁମନା' ମାଳତୀଫୁଲ 'ଉତ୍ଫୁଲ୍ଲ' ଫୁଟିବା ସମୟରେ ନୃତ୍ୟ ବିସ୍ତାର କରେ । ବର୍ଷାଦିନେ ମାଳତୀ ଫୁଲ ଫୁଟେ ଓ ମୟୂର ନୃତ୍ୟ କରେ ) । ତୁ ତ ସୁମନା, 'ଉତ୍ଫୁଲ୍ଲ' ଉଲ୍ଲସିତ ହେଲେ ତୋ ବେଣୀ ନାଚନ୍ତା ।" ( ଅର୍ଥାତ୍ ତୁ ବିପରୀତରତ କଲେ ତୋର ବେଣୀ ନାଚନ୍ତା ସିନା ) ।

୩୫ଶ ପଦ—ରସବତୀ ସୀତା କାନ୍ତଙ୍କର ବିପରୀତ ରତ ମାଗିବାର ଅଭିପ୍ରାୟ ବୁଝି ଲଜ୍ଜାରେ ମୁହଁ ତଳକୁ ନୋଇ କହିଲେ, "ସେ ରସସାରକୁ

ଚଳସି ଚଳସି ଚନେ ପର୍ଣ୍ଣବାସେ ଯାଇ
ଛଦ୍ୟ ଅଦ୍ୟଯମକ ପିଶିତ ଶୁଷ୍କେ ଚହ୍ନି ଯେ । ୩୫ ।
ଚଳ ଚଳପୁଷ୍ଟ ଝାମ୍ପେ ଅହାର ଲୋଭରେ
ଚଳ ଚଳଶୋଭନା ତାହା ର ନିବାରନ୍ତେ ଯେ ।
ବାସ ବାସଅଙ୍ଗୀର ଖସିଲା ଦୀପ୍ତ ସ୍ତନ
ଜମ୍ବୁ ଜମ୍ବୁଅରୁଣର ଯେ ଓଷ୍ଠ ନିନ୍ଦନ ଯେ । ୩୬ ।
ଛଗଦ ଛ-ଗଦ ଚଞ୍ଚୁ ଘାତରେ ଛହନ୍ତେ
ବିରସ ବୀରସତ୍ତପ ଭାଷଣର ଲୁଚେ ନଯ ।
ବୃନ୍ଦ ବୃନ୍ଦ ମନ୍ଦର ଛାଡ଼ିଲା ନେତ୍ର ଧବେ
ବିଧିରେ ବଧୀରେ ମଜ୍ଜି ଏକଦୋଷେ ସର୍ବେ ଯେ । ୩୭ ।

---

୩୬ଶ ପଦ—ଚଳ—କାରଣ ନ ମାନି । ଚଳପୁଷ୍ଟ—କାକ । ଚଳଶୋଭନା—ନିଷ୍କଳୀ ଶୋଭିତା । ବାସ—ବସ୍ତ୍ର । ବାସଅଙ୍ଗୀ—ସୌରଭାଙ୍ଗୀ । ଜମ୍ବୁ—ଜଇଁ ଓ ଜାକୁଡ଼ି ।

୩୭ଶ ପଦ—ଜମ୍ବୁ—ମଣ୍ଡଳ । ଛ—ପକ୍ଷୀ । ଚଞ୍ଚୁ—ଥଣ୍ଟ । ଭମ—କ୍ରୋଧ । ମନ୍ଦ—ବାଜ । ଓର ସ୍ୱର୍ଗ ବା ଆକାଶ । ବିଧିରେ—ଦୈବଯୋଗରେ । ବଧୀରେ—ଧୀରତା ବିହୀନରେ ବା ମୂର୍ଖତାରେ ।

---

ମନରୁ ପାସୋରିବ ନାହିଁ ପରା ? ( ଅନ୍ୟାର୍ଥ—ସେ ସୁରମ୍ୟମଣ୍ଡଳ ପାସୋରିବ ନାହିଁ ପରା ) ?" ଏହାପରେ ସେ ଦୁହେଁ ବନରେ ବିହାର କରି କରି ପର୍ଣ୍ଣ-କୁଟୀରରେ ପହଞ୍ଚିଲେ । ସେଠାରେ ମାଂସ ଶୁଖାଉଥିବାରେ ଅଦ୍ୟଯମକ ପ୍ରକାଶ ହେଲା । ( ଅଦ୍ୟଯମକ ଲକ୍ଷଣ—ପ୍ରତ୍ୟେକ ପାଦର ପ୍ରଥମରେ ଯମକ ଶୃଙ୍ଖଳା ଅନୁସୃତ ହେଲେ ଅଦ୍ୟଯମକ ହୁଏ ।

୩୬ଶ ପଦ—ଚଳଚାନ୍ କାକ ଅହାର ଲୋଭରେ ଶୁଖୁଥିବା ମାଂସକୁ ଝାମ୍ପନ୍ତେ ସୀତା ତାହା ନିବାରଣ କରିବାକୁ ଗଲାବେଳେ ସେଇ ସୀତାଙ୍କ ଓଷ୍ଠ ଜମ୍ବୁଫଳକୁ ଓ ସୂର୍ଯ୍ୟମଣ୍ଡଳକୁ ନିନ୍ଦା କରେ, ସେହି ସୌରଭାଙ୍ଗୀ ନିଷ୍କଳୀ-ଶୋଭନା ସୀତାଙ୍କ ଦେହରୁ ଲୁଗା ଖସି ପଡ଼ିଲା । ତେଣୁ ସ୍ତନ ଦେଖାଗଲା ।

୩୭ଶ ପଦ—କାକପକ୍ଷୀ ପାଦ ଓ ଥଣ୍ଟ ଘାତରେ ସୀତାଙ୍କର ଓଷ୍ଠ ଓ ସ୍ତନକୁ ଆଘାତ କରନ୍ତେ ବୀରଶ୍ରେଷ୍ଠ ରଘୁଚନ୍ଦ୍ର, ତାଙ୍କ ଶିକାଶର ପ୍ରୟୋଗ କରି ସୈନ୍ୟରେ ଥିବା ଅପସରା ମାନଙ୍କର ନେତ୍ର ଉପାଡ଼ି ପକାଇଲେ । ଦୈବ ଯୋଗରେ ଓ ବିଧାନାନୁସାରେ ଗୋଟିକ ଦୋଷରେ ସମସ୍ତେ ମଜ୍ଜିଲେ ।

ବନସ୍ଥ ବନସ୍ଥ ରଖି ଲୋଚନେ ସେ ଅଗେ
ବିହଙ୍ଗମେ ବିହ ଗମେ ଜାହ୍ନ ସୀତା ମଗେ ଯେ ।
ବାରେ ବାରେ ଖେଦ କେବ ବାଣୀ ଏ ଦେଅନ୍ତି
ବିଷ ବିଷମ ଯେମନ୍ତ ସନ୍ଦିପତେ ହୃତ ହେ । ୩
ବିଦ୍ୟା ପ୍ରାନ୍ତପମଟେ ବହୁବା ନୀରଦାନ
ବଳ ଶିଙ୍କ ରଖି ମାଜ ଭଲେ ନୀର ଦାନ ଯେ ।
ବଢ଼ିଲ ତୋଷ ଅଶେଷ ଲଭି ଶବେ ଗତ ।
କୃଷ୍ଣା-ସୁତ ଖଗବର୍ଗ ଦେଲେ ଶଂରେ ଗତ ଯେ ।୩୯।
ବିଶ୍ୱେରେ ଅନୁକୂଳ ପୁଂସ ଧୀନବନ୍ଧୁ
ବିନୋଦରେ ସଙ୍ଗେ ଘେନି ହରେ ଧୀନବନ୍ଧୁ ଯେ ।

---

୩୮ଶ ପଦ—ବି—ପକ୍ଷୀ । ନଦ୍ଧ—ନତ । ବନସ୍ଥ—ନମ୍ରତା । ବିହଙ୍ଗମେ—ପକ୍ଷୀମାନେ ।

୩୯ଶ ପଦ—ଶବେ—ଶବସରେ । ଗତ—ଗମନ । ଶଂରେ—ପତାଗରେ ।

---

୩୮ଶ ପଦ—ଅଶ୍ୱି ଫୁଟି ପିଠାରୁ ସେ ପାତପକ୍ଷୀମାନେ ବନସ୍ଥରେ ଓ ଶିଙ୍ଘାଗ୍ରର ପୂର୍ବତ ସୀତାଙ୍କ ଅଗେରେ ପଡ଼ିଲେ । ତାହା ଦେଖି ସୀତା ପ୍ରାର୍ଥନା କଲେ, "ଏ ପକ୍ଷୀମାନଙ୍କୁ ଖାଓ ଦିଅ । ଏମାନଙ୍କର ବନ୍ଧୁ ଭୂଣି ପ୍ରଦାନ କର ।" ଶ୍ରୀରାମଚନ୍ଦ୍ର କହିଲେ, "ଏ ଓଷ୍ଟ ଓ ସ୍ତନର ସାଦୃଶ୍ୟ ବାରମ୍ବାର ମୋ ମନରେ ହୁଏ ହେଉ । ତେଣୁ ତାଙ୍କୁ ନଷ୍ଟ କରିବା ଉଚିତ ନୁହେଁ ।" ସୀତା ଦୁଃଖରେ କହିଲେ, "ଗରଳ ଜଳଧି ସନ୍ନିପାତରେ ହତ, ଏ ପ୍ରତାପ ସେହିପରି ବନେ ହେଲେ ହତଚ୍ଛିଦ୍ର ହେବ ।"

୩୯ଶ ପଦ—ବର୍ଦ୍ଧିମାନ ପ୍ରାନ୍ତପମତରେ ବହୁବା । ନୀର ଖଣ୍ଡନଙ୍କର ସମ ଦସ୍ୟା ପୂର୍ବତ ବେତଳ ମାଜ ଭଲ ଶିଙ୍କ ରଖି ପାତମାନଙ୍କୁ ନୀର ଦାନ କଲେ । ( ପାତମାନେ ନୀର ପାଇଲେ ମଧ ତୃପ୍ତ ହେଲେ ) ଏହିପରି ଖଗ-ଗଣଙ୍କ ପାତମାନେ ନୀର ପାଇ ଅତ୍ୟନ୍ତ ତୋଷ ହେଲେ ଓ ଶାନ୍ତ ହୋଇ ଆକାଶରେ ଉଡ଼ି ଚାଲି ଗଲେ ।

୪୦ଶ ପଦ—ବିଶେଷ ଭାବରେ ସ୍ତ୍ରୀର ଅନୁଗତ ଧୀନବନ୍ଧୁ ଶ୍ରୀରାମଚନ୍ଦ୍ର ପ୍ରିୟା ସୀତାଙ୍କୁ ସଙ୍ଗରେ ଘେନି ବେଶ ବିନୋଦରେ ବନ ଚାହିଁଲେ । ସେ

ବଣ ଧ୍ୟାନମାନସେ ସାର ସେ ସୁଖ ପଦେ
ବୋଲେ ଭଞ୍ଜ ଉପେନ୍ଦ୍ର ବେଣୁବଂଶ ପଦେ ଯେ ।୪୦।

---

## ବଂଶ ଛାନ୍ଦ

### ରାଗ—ବଙ୍ଗଳାଶ୍ରୀ

ଦେଖାଇଲେ ସୀତା ଶିତାଂଶୁମୁଖୀ ଏକଦିନେ ଅତି ମ୍ଳାନ ହୋଇ ।
ବିଧି ବଢ଼ଲ ବନବାସ ବାସରେ ନୃପତି ହେବାର ପାଇ ।
ଅଳସାଇ ଯଥା ଅଳକା ତେଜାଇ ଈଶ୍ୱରଙ୍କୁ ଶମଶାନେ ।
ବିଷ୍ଣୁଙ୍କୁ ରତନପଲଙ୍କ ଛଡ଼ାଇ ଉଡ଼ାଇ ସର୍ପ-ଶୟନେ ।୧।
ଅସୋଢ଼ ନ ପାରି ଅବଧି ବିଧିଙ୍କ କପାଳ ବୋଲାଇ ବିଧି ।
ବସାଇ କୋଳେ ଶ୍ରୀରାମ କତେହ ଖେଳେ ରସାଇ ଲାବଣ୍ୟନିଧି ।

---

୧ମ ପଦ—ଶୀତାଂଶୁମୁଖୀ—ଚନ୍ଦ୍ରବଦନା । ଅତି ମ୍ଳାନ—ଅତି ଦୁଃଖିତ । ବାସରେ—ଦିନରେ ଅର୍ଥାତ୍ ଅଭିଷେକ ଦିନରେ ।

---

ଶ୍ରୀରାମଚନ୍ଦ୍ର ଓ ସତୀ ସୀତାଙ୍କ ପାଦରେ ଧ୍ୟାନମଗ୍ନ ହୋଇ ଉପେନ୍ଦ୍ର ଭଞ୍ଜ ଏ ଗ୍ରନ୍ଥକୁ ଶୃଙ୍ଖଳ ପଦରେ କହିଲେ ।

---

## ବଂଶଛାନ୍ଦ

୧ମ ପଦ—ଦିନେ ଚନ୍ଦ୍ରମୁଖୀ ସୀତା ଅତି ଦୁଃଖସ୍ୱରରେ କହିଲେ, "ସ୍ୱାମୀ ! ଆଜି ରାଜା ହେବାର କଥା ଥିଲା । ବିଧାତା ଯେପରି ଶିବଙ୍କୁ ଅଳକା ଭୁବନ ଛଡ଼ାଇ ଶ୍ମଶାନରେ ବୁଲାଇଲା, ବିଷ୍ଣୁଙ୍କୁ ରତ୍ନପଲଙ୍କ ଛଡ଼ାଇ ସର୍ପ ଶଯ୍ୟାରେ ଶୁଆଇଲା, ସେହିପରି ଆମ୍ଭ କପାଳରେ ରାଜ ସୁଖ ଛଡ଼ାଇ ବନବାସ ବିଧାନ କଲା ।"

୨ୟ ପଦ—" 'ଅବଧି' ଅନୁଚିତ ବିଧାନକୁ ଯେ ପାଶୋର ନ ପାରେ ସେ ତାହାଁକୁ ବିଧି ନାମ କହନ୍ତି ?" ଏହା ଶୁଣି ଶ୍ରୀରାମ ଲାବଣ୍ୟନିଧି ସୀତାଙ୍କୁ କୋଳରେ ବସାଇ ପ୍ରେମଖେଳରେ ତାଙ୍କ ମନକୁ ରସାଇ କହିଲେ, "ବିରଞ୍ଚି (ଯେ ଅଦ୍ଭୁତ ଆଚରଣ କରନ୍ତି) ପାର୍ବତୀଙ୍କ ସଙ୍ଗରେ ଏକାନ୍ତରେ କେଳି କରିବା ପାଇଁ ଈଶ୍ୱରଙ୍କୁ ଶ୍ମଶାନରେ ବୁଲାଇଲା, ଲକ୍ଷ୍ମୀଙ୍କ ସଙ୍ଗେ ଏକାନ୍ତରେ ବିହରିବା ପାଇଁ

ଚରିଷ୍ଣୁ ଏକାନ୍ତ କେଳିକି ଚରଣ ଗଉରୀ କମଳା ସଙ୍ଗେ ।
ନିର୍ଜନ ସ୍ଥାନ ବୋଲି ବିଧାତା ମୋତେ ପଠନ୍ତି ବହୁବିଧ ରଙ୍ଗେ ।
ବିବେକ କର ରସିକ ରସିକାର ଏଥୁଁ ଅଛି କି ଉତ୍ସବ ।
ପୁଲୋମସୁତା ତେଜି ମଳୟପର୍ବତେ ବସନ୍ତେ ଅସେ ବାସବ ।
କୁହୁଡ଼େକ ସ୍ଥଳ ସେହୁ ପୁଣି ଲୋଡ଼ ଗନ୍ଧମାଦନ ଶିଖରୀ ।
କରନ୍ତି ଅମ୍ବର ସୁରସୁନ୍ଦରୀଙ୍କା କି ଭୁଷା ଅଛି କି ବଳି ? ୩ ।
କହନ୍ତି ସଉଧ ସଦନେ କହନ୍ତି ସଉଦ୍ଧସଦନେ ଧନ ।
ବେଢ଼ି ତାଳୁଥାନ୍ତି କଣ୍ଟୁକନ ବେଢ଼ି ତାଳୁଛନ୍ତି କଣ୍ଟୁକନ ।

---

୩ୟ ପଦ—ବାସବ—ଇନ୍ଦ୍ର । ସୁରସୁନ୍ଦରୀଣା—ରତିପଣ୍ଡିତା ।

୪ର୍ଥ ପଦ—ସଉଧ ସଦନେ—କୋଠାଘରେ । ସଉଦ୍ଧ ସଦନେ—ଗଛିଗୁହରେ । କଣ୍ଟୁକନ—ସ୍ତୋକ୍ତା କା ଅନ୍ତଃପୁରସ୍ଥ ନପୁଂସକପୁତ । କଣ୍ଟୁକନ—ସର୍ପ । ଚନ୍ଦ୍ରାତପ—ଚାନ୍ଦୁଆ । ଚନ୍ଦ୍ରାତପ—ଚନ୍ଦ୍ର କିରଣ । ସହଚରୀ—ସଖୀ ସପ୍ତସ୍ୱା—ହିଙ୍ଗୁଳ ।

---

ଶମ୍ଭୁଙ୍କୁ ସାଗର ମଧ୍ୟରେ ସର୍ପ ଶୟନରେ ବିଳାସାଉସ । ଏ ବନ ନିର୍ଜନ ସ୍ଥାନ ବୋଲି ସେ ବିଧାତା ତୋତେ ଓ ମୋତେ ଏକାନ୍ତରେ ନାନାରଙ୍ଗରେ କେଳି କରିବା ପାଇଁ ପଠାଇଅଛନ୍ତି ।" ( ବିଧାତା ଯାହା କରନ୍ତି ତା ଅବଧ୍ୟ ହୁଏ, ଉଚିତ କାର୍ଯ୍ୟ କରନ୍ତି । ଏହାଦ୍ୱାରା ରାମଙ୍କର ସୁଖ ଦୁଃଖରେ ସମଧୀରତା ଗୁଣ ସୂଚିତ ହେଉ ) ।

୩ୟ ପଦ—"ହେ ପ୍ରିୟେ ! ମନରେ ବିଚାର କର, ରସିକ ରସିକାର ଏଥୁଁ ଉଚ ଅଉ ଆନନ୍ଦ ଅଛି କି ? ଇନ୍ଦ୍ର ଏକାନ୍ତରେ ବିହାର କରିବା ନିମିତ୍ତ ପୁଲୋମଜା ଛାଡ଼ି ବସନ୍ତ କାଳରେ ମଳୟ ପର୍ବତକୁ ଆସନ୍ତି । ସେହି ଭାଷାରେ ପୁଣି କୁହୁଡ଼େକ ସ୍ଥଳ ବିହାର କରିବାକୁ ଗନ୍ଧମାଦନ ପର୍ବତ ଖୋଜି ଆସନ୍ତି । ହେ ରତିକମ୍ପୁଣା ! ଅମ୍ବର ଏଠାରେ ସୌନ୍ଦର୍ଯ୍ୟର କିଛି ଊଣା ଅଛି କି ?"

୪ର୍ଥ ପଦ—"ହେ ଧନ ! ଅମେ ଅଯୋଧ୍ୟାର ରାଜନଗରରେ ରହୁଥିଲେ, ଏଠାରେ ଋଷିମାନଙ୍କର ଗୁମ୍ଫାରେ ରହୁଥାଉଁ ; ସେଠାରେ 'କଣ୍ଟୁକୀ' ଲୋକମାନେ ବେଢ଼ି ରହି ତାଳୁଥିଲେ, ଏଠାରେ 'କଣ୍ଟୁକନ' ସର୍ପମାନେ ଚାରିପାଖେ ବେଢ଼ି ରହି ଶଙ୍କା କରୁଅଛନ୍ତି । ସେଠାରେ ଚାନ୍ଦୁଆ ତଳେ ବସୁଥିଲେ, ଏଠାରେ ଚନ୍ଦ୍ରକିରଣ ତଳେ ବସୁଥାଉଁ । ସେଠାରେ ସଖୀ ସମୂହଙ୍କ

ବସିଥାଇ ଚନ୍ଦ୍ରାତପ ତଳେ ବସିଥାଇ ଚନ୍ଦ୍ରାତପ ତଳେ ।
ବେଷ୍ଟିତ ଯେ ସହଚରୀକୁଳେ ବେଷ୍ଟିତ ଯେ ସହଚରୀକୁଳେ ।୭।
ଭୁଲିବା ଥିଲା ଜଗତୀରେ ଭୁଲିବା ଜଗତୀରେ ହେଲା ଯେନ ।
ଅଳେଖ୍ୟ ଥାଇ ଶଶିଲେଖା ଅଳେଖ୍ୟ ଥାଇ ଶଶିଲେଖା ପୁନ ।
ବିକ୍ଷିପ୍ତ ଯେତେ ରଜନୀକର ଯେତେ ବିକ୍ଷିପ୍ତ ରଜନୀକର ।
ବୋଧକ ସୁରବ ଗିର ହେଉଥିଲା ବୋଧକ ଶୁକ-ର ଗିର ।୮।
ବାରେ ବାରେ ଦେଖି ଭଦ୍ର ଉତ୍ସବକୁ ଭଦ୍ର ଉତ୍ସବକୁ ଦେଖି ।
ଅଶେଷ ଖଦିର ଜଳିତ ଅଶେଷ ଖଦିର ଜଳିତ ସଖି ।

---

୧ମ ପଦ—ଜଗତୀ - ଅଟ୍ଟାଳିକା । ଜଗତୀରେ—ପୃଥିବୀରେ । ଶଶିଲେଖା—ସାମ୍ବପତ୍ନୀ । ରଜନୀକର—କର୍ପୂରଚୂର୍ଣ୍ଣ । ରଜନିକର—ଧୂଳିରାଶି । ସୁରବ—ଉତ୍ତମ ରବ । ଶୁକ-ର ଶୁକପକ୍ଷୀ ।

୨ୟ ପଦ—ଭଦ୍ରଉତ୍ସବ - ମଙ୍ଗଳ ଉତ୍ସବ । ଭଦ୍ରଉତ୍ସବ—ଭଡ଼ଭଡ଼-ଜଅପକ୍ଷୀ । ଖଦିର—ଖଇର । ଖଦିର—କାଷ୍ଠନିର୍ମିତ । ଅଞ୍ଜଳିକା—ପଟାଶେଳ । ଅଞ୍ଜଳିକା—ଚଢ଼ୁଇ ବଳୟ । ଶାଖୀ—ବୃକ୍ଷ । ସୁଶିଳ—ଭଲ ପଥର ।

---

ବେଷ୍ଟିତ ହୋଇଥିଲେ, ଏଠାରେ ହିଣ୍ଡିରଙ୍କ ସମୂହରେ ବେଷ୍ଟିତ ହୋଇ ରହିଛନ୍ତି ।"

୧ମ ପଦ—"ସେଠାରେ 'ଜଗତୀରେ' ଅଟ୍ଟାଳିକାରେ ବୁଲୁଥିଲେ, ଏଠାରେ 'ଜଗତୀ'ରେ ମହୀରେ ବୁଲିବାର ହେଲା । ସେଠାରେ କାନ୍ଥମାନଙ୍କରେ ଲିଖିତ ହୋଇଥିବା ଚିତ୍ର ସବୁ ଦେଖୁଥିଲେ, ଏଠାରେ ସ୍ଥଳ ପଟରେ ଲେଖା ହୋଇଥିବା ଚନ୍ଦ୍ରକୁ ପରସ୍ପର ପରସ୍ପରର ଦେଖୁଛନ୍ତି । ସେଠାରେ ଶଯ୍ୟାରେ 'ରଜନୀକର' କର୍ପୂର ଚୂର୍ଣ୍ଣ ବିଞ୍ଚା ହୋଇଥିଲା, ଏଠାରେ ଶଯ୍ୟାରେ 'ରଜନିକର' ଧୂଳି ସମୂହ ବିଞ୍ଚା ହୋଇଅଛି । ସେଠାରେ ଉତ୍ତମ କବିଙ୍କର ବାଣୀ ଅର୍ଥାତ୍ କବିତା ଶୁଣି ଚିତ୍ତ ବୋଧ ହେଉଥିଲା, ଏଠାରେ ଶୁକ ପକ୍ଷୀର ଗାନ ଚିତ୍ତ ବୋଧ କରୁଅଛି ।"

୨ୟ ପଦ—"ସେଠାରେ ଥରେ ଥରେ ମଙ୍ଗଳ ଉତ୍ସବକୁ ଦେଖୁଥିଲେ, ଏଠାରେ 'ଭଦ୍ର' ଭଡ଼ଭଡ଼ଜଅ ପକ୍ଷୀଙ୍କ ଖେଳ ଦେଖୁଛନ୍ତି । ହେ ସଖି ! ସେଠାରେ ଅନେକ ଦେବ ବ୍ରାହ୍ମଣମାନଙ୍କର ପୂଜନ ହେଉଥିଲା, ଏଠାରେ ଅନେକ ଖଇରଗଛ ଅଗ୍ନିଦ୍ୱାରା ଜଳିତ ହେଉଅଛି । ସେଠାରେ ପଟାଶେଳ ନିର୍ମିତରେ ହେଉଥିଲା, ଏଠାରେ 'ଅଞ୍ଜଳିକା' କେଉଁର ବଳୟ

ଲଗ୍ନ ନୋହେ ତଥି ଅଷଲ୍ଲିକା ଏଥି ଲଗ୍ନ ନୋହେ ଅଷଲ୍ଲିକା ।
ବସିଥାନ୍ତି ସାକ୍ଷୀ ସୁଶୀଳା ଅଛନ୍ତି ଏବେ ତ ଶାଖୀ ସୁଶିଳା ।୬।
ପାନ କରୁଥିଲେ ଶତ କ୍ଷୀରପାନ ବଣ କରେ କ୍ଷୀରପାନ ।
ବାଳା ଶୁଣୁଥାଇ ଅନକ ସ୍ୱନକୁ ଶୁଣିମା ଅନକ ସ୍ୱନ ।
ଗୃହରେ ଗନ୍ଧର୍ବେ ଗାୟନ କରନ୍ତି ବୋଧନ୍ତି ସୁମନା ବାସେ ।
ବିଧିରେ ଗାନ୍ଧର୍ବେ ଗାୟନ କରନ୍ତି ବୋଧନ୍ତି ସୁମନା ବାସେ ।୭।
ବାନ୍ଧବ ଏଥିରେ ଦେଖାଯାଉ ନାହିଁ ନାଚିବାର ନୃତ୍ୟକାରୀ ।
ବେଣୀ ନାସ ମଣି ରମଣୀମଣିରେ ନବ୍ଧ ଅନୁଗ୍ରହ କର ।
କହନ୍ତି ନହିଁନ ନହିଁକବରହିଁ ଅଛି ନହିଁକବରହି ।
ବୋଲି ତନୁଶ୍ରୀ ନାସାପୁଟା ପୁଲଇ ଶିରସ୍ଥାଳି ଦେଇ ରହି ।୮।

---

୭ମ ପଦ—କ୍ଷୀରପାନ—ଦୁଗ୍ଧପାନ । କୀରପାନ—ଜଳପାନ । ଅନକ—ପଞ୍ଚବାଦ୍ୟ । ଅନକସ୍ୱନ—ଘନଙ୍କ ମେଘ । ସୁମନା—ପଣ୍ଡିତମାନେ । ବାସେ—ଗୃହରେ । ଗନ୍ଧର୍ବେ—କୋକିଳମାନେ । ସୁମନା—ଫୁଲ ।

---

ନଦୀରେ ହେଉଅଛି । ସେଠାରେ ସାକ୍ଷୀ ହୋଇ ସୁଶୀଳା ସଖୀମାନେ ବସିଥାନ୍ତି, ଏଠାରେ 'ଶାଖୀ' ବୃକ୍ଷସବୁ ଓ 'ସୁଶିଳା' ଉତ୍ତମ ପଥର ଖଣ୍ଡମାନ ରହିଅଛି ।”

୭ମ ପଦ—“ସେଠାରେ 'କ୍ଷୀରପାନ' ଦୁଗ୍ଧପାନ ଶତ ଜଣ କରୁଥିଲେ, ଏଠାରେ 'କ୍ଷୀର' କୀରଗଣ ଓ 'ପାନ' ପାନ ଲତା—ଏମାନେ ଅଥବା ପକ୍ଷୀ ଜଳ ପାନ ଶତଜଣ କରୁଅଛି ! ହେ ବାଳା । ସେଠାରେ, 'ଅନକସ୍ୱନକୁ' ପଞ୍ଚବାଦ୍ୟ ନାଦକୁ ଶୁଣୁଥିଲେ, ଏଠାରେ 'ଅନକସ୍ୱନ' ମେଘ ଧ୍ୱନିକୁ ଶୁଣିବା । ସେଠାରେ 'ଗନ୍ଧର୍ବମାନେ' ଯୁବମାନେ ଉଚ୍ଚରେ ଗାନ କରୁଥିଲେ, ଗୃହରେ ସ୍ତ୍ରୀମାନେ ବୋଧ କରୁଥିଲେ ଅଥବା ପଣ୍ଡିତମାନେ ବୋଧ କରୁଥିଲେ ), ଏଠାରେ 'ଗନ୍ଧର୍ବେ' କୋକିଳମାନେ ବୃକ୍ଷଗଣରେ ଗାୟନ କରୁଅଛନ୍ତି ଓ ପୁଷ୍ପମାନେ ବାସନାରେ ମନକୁ ତୋଷ କରୁଛନ୍ତି ।”

୮ମ ପଦ—“ହେ ବାନ୍ଧବ ! ସେଠାରେ ଯାହା ଥିଲା, ତାର ଅନୁରୂପ ସବୁ ଏଠାରେ ଅଛି, କିନ୍ତୁ ସେଠାରେ ନୃତ୍ୟକାରୀମାନେ ଥିଲେ, ମାତ୍ର ଏଠାରେ ନୃତ୍ୟକାରୀମାନେ ନାଚିବାର ଦେଖାଯାଉ ନାହିଁ । ହେ ରମଣୀମଣି ! ଅନୁଗ୍ରହ କରି ବେଣୀ ଓ ନାସାମଣିକି ଧରେ ନବ୍ଧ ।” (ଏହାହାସ ବିପରୀତ ରତି ମାଗିବାର ଜଣାଉଛି ) । ଏହା ଶୁଣି ସୀତା କହିଲେ, “ସେଠାରେ ଶ୍ରେଷ୍ଠ ନାଟୁଆମାନେ ନୃତ୍ୟ କରୁଥିଲେ, ଏଠାରେ ନାଟୁଆ ମୟୂରସବୁ ଅଛନ୍ତି”—ଏହା କହି ତନୁଶ୍ରୀ ସୀତା ନାସା ପୁଟା ଫୁଲଇ ମୁଣ୍ଡ ହଲାଇ ଦେଇ ରହିଗଲେ । [ଏହାହାସ ନାସାମଣି ଓ ବେଣୀ ଦୁହେଁ ନାଚିଲେ ]।

ବ୍ୟାଜ ପାଳନା ଏତକ ବୋଲନ୍ତେ ଭଣେ ମୁଗ୍ଧା ଶ୍ରବେ ଖେଳେ କସ ।
ବହୁ ଯାହା ତାହା ସୁଦେହା ସୁସ୍ନେହା ଜାଣି ତ ଥିବୁ ଅବଶ୍ୟ ।
ବିମଳ ଆଦରଶ ପରି ତୋ ହୃଦ ମୋ ବାଞ୍ଛିବା ବିମ୍ବ ଥିବ ।
ବରୁଣ ଦିଗ ତରୁ ଲତା ତରୁଣୀ ଅନାଇଁ ଅନାଇଁ ଧବ । ୯ ।
ବାଞ୍ଛିଲ ସମ୍ପତ୍ତି ଦରିଦ୍ରକେ ପରାପତ ପରି ପତି ଭଣି ।
ବଳି ଉଦରେ ଶରଣ ଦାନପଣେ ଭୁଲିଥିଲି ସୁଲକ୍ଷଣି ।
ବୀଣା-କଳକଣ୍ଠି, କଣ୍ଠାକଣ୍ଠି ! ଗଣ୍ଠିରତ୍ନ ମନ-କୃପଣର ।
ବିଦେହ-ନରେଶ୍ୱର-ରମା ତୁ ମୋର ପ୍ରାଣ ଯେ ପ୍ରାଣର ।୧୦।
ବନ୍ଧୁଜୀବଅଧର ବାରୁଅଧରକେ ବନ୍ଧୁ ତୁ ମୋ ରକ୍ଷଣରେ ।
ବଣ୍ଡିଲ ଉରୁ ଭୁଜା ବୋହିବା ଦନ ଦିଶୁଲା ମୋ ଲକ୍ଷଣରେ ।

---

୯ମ ପଦ—ଆଦରଶ—ଦର୍ପଣ । ବରୁଣଦିଗ—ପଶ୍ଚିମଦିଗ । ତରଣୀ—ସୂର୍ଯ୍ୟ । ଧବ—ସ୍ୱାମୀ ।

---

୯ମ ପଦ—ଏହା ଦେଖି ରାମ କହିଲେ, "ଏ ଛଳ ପାଳନା ସିନା, [ମୁଁ ଯାହା କହିଲି—ଏ ସେପରି ନୁହେଁ]" ଏତିକି କହନ୍ତେ ଚତୁରୀ ସୀତା ପ୍ରେମ ଖେଳରେ ଜାଣି ସୁଦ୍ଧା ନ ଜାଣିଲା ପରି କହିଲେ, "କି କଥା ? (ତୁମ୍ଭେ ଆଉ କଣ କହୁଥିଲ କି) ?" ରାମ ଉତ୍ତର ଦେଲେ, "ହେ ସୁଦେହା ! ହେ ସୁସ୍ନେହା ! ତୁ ଯାହା କହୁ ଓ କରୁ, ତାହା ତ ଅବଶ୍ୟ ଜାଣିଥିବୁ । ତୋହର ହୃଦୟ ଦର୍ପଣପରି ନିର୍ମଳ, ତେଣୁ ମୋର ମନ କଥା ସେଥିରେ ପ୍ରତିବିମ୍ବିତ ହୋଇଥିବ ନିଶ୍ଚୟ, (ତୁ ହୃଦୟରେ ମୋ କଥା ନିଶ୍ଚୟ ବୁଝିପାରୁଅଛୁ )।" ରାମଙ୍କ ଏହି କଥାରେ ତରୁଣୀ ସୀତା ପଶ୍ଚିମଦିଗ ଓ ତରୁଲତାକୁ ଅନାଇଁ ପତିଙ୍କୁ ବୋଧ କଲେ । ( ସୂର୍ଯ୍ୟ ପଶ୍ଚିମରେ ଅସ୍ତ ଗଲେ ବୃକ୍ଷର ଲତା ବେଷ୍ଟିତ ହେଲା ପ୍ରାୟ ମୁଁ ତୁମ୍ଭ ଅଙ୍ଗରେ ବେଷ୍ଟିତ ହେବି, ତୁମ୍ଭ କାମନା ପୂର୍ଣ୍ଣ ହେବ ।"

୧୦ମ ପଦ—ସୀତାଙ୍କ ସମ୍ମତି ପାଇବାରୁ ରାମଚନ୍ଦ୍ର ଦରିଦ୍ର ଲୋକ ବାଞ୍ଛିତ ଧନ ପ୍ରାପ୍ତ ହେଲା ପ୍ରାୟ ଆନନ୍ଦିତ ହୋଇ କହିଲେ, "ହେ ସୁଲକ୍ଷଣି ! ଦାତାପଣରେ ବଳି ତୋହଠାରେ ହାରି ମାନି ତ୍ରିବଳୀ ଆକାରରେ ତୋ ଉଦରରେ ଶରଣ ପଶିଅଛି, ମାତ୍ର ମୁଁ ସେ କଥା ଭୁଲି ଯାଇଥିଲି । ବୀଣାକଣ୍ଠି ! ହେ କୋକିଳକଣ୍ଠି ! ମୋ ମନରୂପ କୃପଣର ତୁ ଗଣ୍ଠିରତ୍ନ ! ହେ ବୈଦେହି ! ତୁ ଯେ ମୋର ପ୍ରାଣର ପ୍ରାଣ ।"

୧୧ଶ ପଦ—"ହେ ବନ୍ଧୁଜୀବଜିତ ଅଧର ! (କଧୁଲି ଫୁଲର ରଙ୍ଗ ମାରେ ହରି ନେଇଛି ଯାହାର ଅଧର ) ହେ ପ୍ରିୟେ ! ମୋତେ

ବଦେହସ୍ତେଭ ଝାଡ଼ିବାକୁ ଅନ୍ତରଗତରୁଁ ତୋ ବାଣୀ ମନ୍ତ୍ର ।
ବୈଦ୍ୟ ହୋଇ ଶୃଙ୍ଗ ରସ ଦାନ ହତଚେତନେ ବିରହଜ୍ୱର ।୧୧।
ବାହୁବଲ୍ଲୀ ଗଳାମାଳା କର ପୁଷ୍ପହାସରେ ମଣ୍ଡନ କରୁ ।
ବଢ଼ ସେନାସେଣ ସେନା ମନୋରମ ତରମ ଦେଖାଇ ନାହୁଁ ।
ବଟକ୍ଷୋଭ ସ୍ୱୟମ୍ଭୁ ଶମ୍ଭୁ ଚରଣପଦ୍ମେ ପୂଜା ଚାଳ ଭୟ ନାହିଁ ।
ଭଲ୍ଲ ତୁ ମୁଁ ଦାସ ଏହି ରୂପେ ଏଥା ହୋଇଥିବୁ ଅନୁକ୍ଷଣ ।୧୨।

---

୧୧ଶ ପଦ—ଇନ୍ଦୁ—ଚନ୍ଦନ । ଚୂଳାଦୋହି—ନୂପୁର । ଉଷଣ—ଭୂଷଣ । ବଦେହସ୍ତେଭ—ତାମଭୂତ ।

୧୨ଶ ପଦ—ବାହୁବଲ୍ଲୀ—ବାହୁଲତା । ତରମ—ପୁଷ୍ପଦେଶ ବା ପିଠି । ସ୍ୱୟମ୍ଭୁଶମ୍ଭୁ—ସ୍ତନରୂପ ସ୍ୱୟମ୍ଭୁଶିବ ।

---

ଭୂଷା କହିବାରେ ତୁ ଏକମାତ୍ର ମୋର ବନ୍ଧୁ । (ଚନ୍ଦର୍ପ ଭସ୍ମକୁ ରକ୍ଷିବାରେ ତୁ ଏକମାତ୍ର ବନ୍ଧୁ ) । ହେ ଚନ୍ଦ୍ରିଜଲକୁ ! ହେ ନୂପୁରବାଦନ ! ତୁ ମୋର ଦେହସିଦ୍ଧିଳା ଅଛୁ । ମୋର ଅନ୍ତର୍ଗତରୁ ତାମ ଭୂତକୁ ଝାଡ଼ିବାପାଇଁ ତୋର ବାଣୀ ମନ୍ତ୍ରପ୍ରାୟ ଅଟେ । ମୋର ବିରହଜ୍ୱରକୁ ନାଶ କରିବାରେ ତୁ ବୈଦ୍ୟ ପ୍ରାୟ ହୋଇ ଶୃଙ୍ଗାର ରସରୂପ ରସାୟନ ( ଜ୍ୱର ନାଶକ ଔଷଧ ) ଦାନ କରୁ ।”

୧୨ଶ ପଦ—“ତୁ ତୋ ବାହୁଲତାକୁ ଗଳାର ମାଳା ସ୍ୱରୂପ କରି ପୁଷ୍ପ ସମ ହାସ ପ୍ରକାଶ ପୂର୍ବକ ମୋ ଗଳାରେ ମଣ୍ଡନ କରୁ । ହେ ପ୍ରିୟେ ! ମୋଠାରେ ତୋର ବହୁ ସ୍ନେହ ଥିବାରୁ, ତୁ ଅଙ୍ଗସ୍ୱାଏ ମୋତେ ତୋର ସୁନ୍ଦର ପୃଷ୍ଠଦେଶ ଦେଖାଉ ନାହୁଁ । ଏ ପର୍ଯ୍ୟନ୍ତ କେବେ ହେଲେ ସୁଦ୍ଧା ଅଭିମାନରେ ମୋ ଆଡ଼କୁ ପିଠି କରି ଶୋଇ ନାହୁଁ ) ତୋହର ବକ୍ଷରେ ଥିବା ସ୍ୱୟଂଭୂତ ମହାଦେବଙ୍କୁ ( ସ୍ତନଶମ୍ଭୁଙ୍କୁ ) ଚରଣପଦ୍ମରେ ପୂଜିବାକୁ ମୋହର କ୍ଷମ ରୂପ ତାମର ଭୟ ଆଉ ନାହିଁ । ମୁଁ ତୋର ସ୍ତନଶମ୍ଭୁକୁ ପୂଜିବାକୁ ତୁ ପ୍ରଭୁ ଓ ମୁଁ ଦାସ । ଏହିପରି ସବୁଦିନେ ଅନୁକ୍ଷଣ ରହିଥିବୁ । (ତୁ ସେବ୍ୟ, ମୁଁ ସେବକ ହୋଇ ଉଭୟ ସେହିପରି ସବୁଦିନ ଥିବା—ଅର୍ଥାତ୍ ତୋର ସ୍ତନ ଶମ୍ଭୁଙ୍କୁ ମୁଁ ସେହିପରି ସବୁଦିନ ଚରଣପଦ୍ମରେ ପୂଜିଥିବି )।”

ବୋଇଲେ ସୁମତି ଏ ସତ ସମ୍ମତ ପୁଂସ ପ୍ରଭୁ ନାସ୍ତି ଦାସୀ ।
ବୋଲଇ ତେ ଏଣ ବନ୍ଧୁର ମାନସ ନ ହେଜିମ ହେଲେ ଦୋଷୀ ।
ବେଗେ ଓଳଗି ସରାଗେ ଏତେ ଚନ୍ଦ୍ର ଉପୁଜାଇ ବେଳେ ଭାବ ।
ବିବାହକାଳେ ତେ ଚରଣ ଛୁଏଁ ଉତ୍ତର କଲେ ରାଘବ । ୧୩ ।
ଚନ୍ଦ୍ରବଦନି ଅନୁପମା ସୁଷମା ଧବଳ ଗୁଣରେ ଝଳ ।
ଭାଲ ଅଧର ହାସ ବାସ କୋମଳ ପରାଇଲେ ଗର୍ବଫଳ ।
କଜ୍ଜଳ ଅଞ୍ଜନ ସିନ୍ଦୂର କର୍ପୂର କସ୍ତୁରୀ ଲବଣୀ ଆସି ।
ବୋଧନ୍ତି ତୋ ଶବ୍ଦ ଶଙ୍କ ଲେପନ ହୋଇ ଯେ ତାହିଁରେ ମିଶି । ୧୪
ବାରିଜ ଲକ୍ଷ୍ମୀ ନିଳୟ ତୁ ଲାବଣ୍ୟଲକ୍ଷ୍ମୀ ବୋଲାଉଛୁ ଯେଣୁ ।
ବଦନ ସୁଷମା ସମ ନୋହି ପଦତଳରେ ଶରଣ ତେଣୁ ।

---

୧୫ଶ ପଦ—ବାରିଜ—ପଦ୍ମ । ନିଳୟ—ଘର । ସୁଷମା—ଶୋଭା ।

---

୧୩ଶ ପଦ—ଏହା ଶୁଣି ବୁଦ୍ଧିମତୀ ସୀତା କହିଲେ, 'ଏହା ସତ୍ୟ ସମ୍ମତ ଅଟେ ଯେ, ପୁରୁଷ ପ୍ରଭୁ ଓ ନାରୀ ଦାସୀ । କିଏ ସେବ୍ୟ ଓ କିଏ ସେବକ— ଏ କଥା ମନରେ ବିଚାର କର । ମୁଁ ଦୋଷୀ ହେଲେ ମୋ ଦୋଷ ମନରେ ଧରିବ ନାହିଁ ।' ଏହା କହି ସୀତା ନାନା ରହସ୍ୟ କରି ସ୍ନେହ ଉପୁଜାଇ ଶୀଘ୍ର ଯାଇ ରାମଙ୍କ ଚରଣରେ ପ୍ରଣାମ କଲେ । ( ଏହାଦ୍ୱାରା ରାମ ସେବ୍ୟ ଓ ସୀତା ସେବିକା—ଏହା ସୂଚିତ ହେଲା) । ତାହା ଦେଖି ରାମ ଉତ୍ତର କଲେ, 'ବିବାହ କାଳରେ କିଏ ଚରଣ ଛୁଏଁ ? (ବିବାହ କାଳରେ ପୁରୁଷ ସ୍ତ୍ରୀର ପାଦ ଛୁଏଁ । ତେଣୁ ପୁରୁଷ ସେବକ ଓ ସ୍ତ୍ରୀ ସେବ୍ୟା ) ।

୧୪ଶ ପଦ—ରାମଚନ୍ଦ୍ର ପୁଣି ପ୍ରଶଂସା କରି କହିଲେ, 'ହେ ଚନ୍ଦ୍ରବଦନି ! ତୋର ଶୋଭା ସର୍ବପ୍ରକାର ଗୁଣରେ ଝଳି ଅନୁପମ ହୋଇଅଛି । ତୋର କେଶ କଜ୍ଜଳ ଅଞ୍ଜନର ଗର୍ବକୁ ଦଳି ପକାଉଛି, ତୋର ଓଷ୍ଠ ସିନ୍ଦୂର ଗର୍ବକୁ ହରୁଅଛି, ତୋର ହାସ କର୍ପୂରର ଗର୍ବକୁ ହରୁଅଛି, ତୋର ଦେହର ବାସନା କସ୍ତୁରୀ ଗନ୍ଧକୁ ହରୁଅଛି, ତୋର କୋମଳତା ଲବଣୀର ଗର୍ବକୁ ହରୁଅଛି । ତେଣୁ କଜ୍ଜଳ ଅଞ୍ଜନ, ସିନ୍ଦୂର, କର୍ପୂର, କସ୍ତୁରୀ, ଲବଣୀ ଆସି ଏକ ଅନ୍ୟ ସହିତ ମିଶି ତିଳକ ଓ ଅଙ୍ଗର ଲେପନ ହୋଇ ତୋର ସେବା କରିବା ଦ୍ୱାରା ମନକୁ ବୋଧ କରନ୍ତି । [ ଅଞ୍ଜନ ଓ ସିନ୍ଦୂର ଲବଣୀରେ ମିଶି ତିଳକ ହୁଅନ୍ତି, କସ୍ତୁରୀ ଓ କର୍ପୂର ମିଶି ଅଙ୍ଗଲେପ ହୁଅନ୍ତି ] ।"

୧୫ଶ ପଦ—"ପଦ୍ମ ଲକ୍ଷ୍ମୀଙ୍କର ବାସସ୍ଥାନ ଅଟେ । ଯେ ହେତୁରୁ ତୁ ଶୋଭାଲକ୍ଷ୍ମୀ ବୋଲାଉଛୁ, ତେଣୁ ପଦ୍ମ ତୋର ବଦନ ଶୋଭାକୁ ସମ ନ ହୋଇ

ବଦନ-ବାଣୀ ଆନ ନାରୀମାନଙ୍କେ ରମ୍ଭା ରତି ସରି କହି ।
ବଲ୍ଲଭ ନଖକୋଣ କଣ ଶୋଭାକୁ କଉଡ଼ା ଭାବନ୍ତି ନସହି । ୧୫ ।
ବାରାଣସୀରେ ଶମ୍ଭୁ ସେବ କରଇ ବୋଲନ୍ତି ନୁହଇ କିଛି ।
ବପୂଜସ୍ତନ ସ୍ୱୟମ୍ଭୁ ଶମ୍ଭୁ ପ୍ରଭୁ ସେ ଶୋଭା ପରେ ହୋଇଛି ।
ବୋଲନ୍ତି ତୋ ସଙ୍ଗ ମନାସି କନାଣିଥିଲି ଅଙ୍ଗ ଗଙ୍ଗାମାରେ ।
ବସ୍ତରେ ସ୍ୱଚ୍ଛରେ ଶଳସିଦ୍ଧା ହାରେ ସବଳରୂପେ ସେ ହାରେ ।୧୬।
ବଜ୍ରସିଦ୍ଧିକୁ ଜାଣିଛୁ ଅଛୁ ନାହିଁ ଦୁର୍ବଳବର୍ତ୍ତୀ ବାଦୀରେ ।
ବଣ୍ଡିତ ପ୍ରଶଂସାକୁ ମନ ଉଦରେ ପାଏ ସାଦ ପ୍ରାସାଦରେ ।

---

ତୋର ପଦତଳରେ ଶରଣ ପଶିଅଛି । ଅନ୍ୟ ନାରୀମାନଙ୍କୁ ପ୍ରଶଂସା କଲାବେଳେ ତାଙ୍କୁ ରମ୍ଭା ରତି ପ୍ରାୟ ବୋଲି ଉପମା ଦେଇଥାନ୍ତି । ( ଏ ନାରୀ ରମ୍ଭା ପ୍ରାୟ ସୁନ୍ଦରୀ ବା ରତି ପରି ସୁନ୍ଦରୀ ବୋଲି କହିଥାନ୍ତି ) । ହେ ବଲ୍ଲଭ ! ସେହି ରମ୍ଭା ଓ ରତି ତୁହେଁ ତୋର ନଖକୋଣର ଶୋଭାକୁ ସାମାନ୍ୟ ମାତ୍ର ଲଭିବା ପାଇଁ ସ୍ତବ କରୁଅଛନ୍ତି ।”

୧୬ଶ ପଦ—‘ବାରାଣସୀରେ ମହାଦେବଙ୍କୁ ସେବ ତୋତେ ଲାଭ କରିଛି,—ମୁଁ ଏହା କା କହନ୍ତି, ମାତ୍ର ତାହା ଠିକ୍ ନୁହେଁ । କାରଣ, ତୋର ସ୍ୱୟମ୍ଭୂ ଶମ୍ଭୁ ରୂପ ସ୍ତନର ଶୋଭା ସେ ବାଣୀଶ୍ୱରଙ୍କ ଶୋଭା ଉପରେ ପ୍ରଭୁ ହୋଇଛି । [ସ୍ୱୟଂ ବାଣୀଶ୍ୱର ତ ତୋ ସ୍ତନ ନିକଟରେ ଅଛି, ତେଣୁ ତାଙ୍କୁ ସେବ ତୋତେ ପାଇଛି—ଏ କଥା କିପରି କହିବ ? ] ତୋସଙ୍ଗ ପାଇବା ମାନସ କରି ଗଙ୍ଗା ଜଳରେ ମୋ ଦେହ ବନାଣିଥିଲି—ଏହା ବା କହନ୍ତି; ମାତ୍ର ତାହା ମଧ୍ୟ ଭୁଲ । କାରଣ ତୋ କଣ୍ଠରେ ନିର୍ମଳ ଭାବରେ ଝଟକୁଥିବା ହାର ଶୀତଳ, ନିର୍ମଳ ଓ ଶୁଭ୍ର ଗୁଣରେ ଗଙ୍ଗାକୁ ହଟାଇଅଛି । [ ନିକୃଷ୍ଟକୁ ସେବା କରି ଉତ୍କୃଷ୍ଟ ବସ୍ତୁ ପ୍ରାପ୍ତ ହେବା ଅସମ୍ଭବ ] ।”

୧୬ଶ ପଦ—‘ତୋହର କ୍ଷୀଣ କଟୀ ବଜ୍ରକୁ ପଠିନଭାବରେ ଓ ସିଂହକୁ କୃଶଭାବରେ ଜିଣିଅଛି । ତେଣୁ ତା ସହିତ ବରାବରି ହେବାକୁ ଆଉ କିଛି ଅଛି କି ? ଯେଉଁ କଟୀ ପ୍ରସାଦକୁ ଉଠାଇବେ ମନ୍ଦ ଶବ୍ଦ ମଧ୍ୟ ପ୍ରଶଂସା ପାଇଥାଏ, ଯେଉଁ କ୍ଷୀଣକଟୀ ଯୋଗୁ ଉଦରକୁ ପ୍ରଶଂସା କରି ମନୋଦରୀ ବା କ୍ଷୀଣୋଦରୀ କହିଥାନ୍ତି ] ତା ପ୍ରସାଦକୁ ଭଲ ଗୁଣ କା କି ପ୍ରଶଂସା ନ ପାଇବ ? ମୋଠାରେ ଦୟା ପୂର୍ବକ ‘କଟାକ୍ଷପାତ କରି ମୋର କାମଜ୍ୱରରେ ବାରଧନ୍ଦର

ବହୁ ନୃପ ତଥା ଅଙ୍ଗଦ ଗର୍ବ ଭଙ୍ଗିଥିଲୁ ଭ୍ରୂଭଙ୍ଗୀରେ ।
ବାମେ ଟେକି ତେଣୁ ସେ ଧନୁ ଭଙ୍ଗିଲୁ ମୁଁ ଧନ୍ୟ ତୋର ସଙ୍ଗରେ ।୧୭।
ବନଜଗର୍ଭଲ୍ଲରଜା ଶୁଣି ଭଣି ପ୍ରୀତିମନ୍ତ ମନୋହାରୀ ।
ବୃନ୍ଦାଅସୁରୀ ତୁଳସୀ ଭଇ ହରି ଶିରେ ଦେଖିଲାର ପରି ।
ବିଧୁ ମହେଶଙ୍କୁ ବଡ଼ ତ ନୁହଇ ସେ ମୁକୁଟ କଲା ପ୍ରାୟେ ।
ବସୁଧାପରେ ଜନ୍ୟ ଧନ । ସେରୂପେ ମୋଠାରେ ପ୍ରଭୁ ସଦୟେ ।୧୮।
ବୋଲବୋଲି ହେଉଁ ସ୍ନେହ ବଚନ ସେ ବିଚିନ୍ତ ରଜନୀ ମିଳ ।
ବିରଞ୍ଚିଇଲା ଯେ ରମଣୀରତନେ ଯତନେ ସ୍ୱରୂପ ଦେଳ ।

---

ଗର୍ବ ମୁ ଭଗ୍ନ କରିଥିଲୁ ( ମୁଁ ତୋର ପଶ୍ଚାଦ୍ଭାଗରେ ଲୀନ ହୋଇ ଥିବାରୁ ହରଧନୁ ବାମ ହସ୍ତରେ ଧରି ଭଙ୍ଗିବାକୁ କ୍ଷମ ହୋଇଥିଲି ) । ତେଣୁ ତୋ ସହାୟେ ମୁଁ ଧନ୍ୟ ହୋଇଅଛି ।"

୧୮ଶ ପଦ—ରାମଙ୍କର ଏହିପରି ବିନୟ ବଚନମାନ ଶୁଣି ଚିତ୍ତହାରିଣୀ ପ୍ରିୟା ସୀତା କହିଲେ, "ବିଷ୍ଣୁ ବୃନ୍ଦାବତୀ ଅସୁରୀକୁ (ବୃନ୍ଦାବତୀ ପ୍ରଥମେ ଜଳନ୍ଧର ଅସୁରର ସ୍ତ୍ରୀ ଥିଲେ ) ତୁଳସୀ କରି ଶିରରେ ଧାରଣପୂର୍ବକ ଏ ହୋଇଛି । (ମୁଁ ତୁମ୍ଭ ଅନୁଗ୍ରହରୁ ବଡ଼ ହୋଇ ତୁମ୍ଭ କହିବା ମୁତାବକ ଗୁଣମାନ କହୁଅଛି ) ଶିବଙ୍କଠାରୁ ଚନ୍ଦ୍ର ତ ବଡ଼ ନୁହେ, ସେ ଶିବ ଚନ୍ଦ୍ରଙ୍କୁ ମୁକୁଟ ପ୍ରାୟ ମସ୍ତକରେ ବହୁଅଛନ୍ତି । ସେହିପରି ମୁଁ ବସୁଧାରୁ ଜାତ ହୋଇଥିଲେ ସୁଦ୍ଧା ତୁମ୍ଭ ଯୋଗେ ଧନ୍ୟ ହୋଇଅଛି । ( ଶିବ ଦୟାପୂର୍ବକ ଚନ୍ଦ୍ରଙ୍କୁ ଶିରରେ ବହନ କରି ତାଙ୍କୁ ଧନ୍ୟ କଲା ପ୍ରାୟ ତୁମ୍ଭେ ଦୟା କରି ମୋତେ ଏପରି ଗୌରବ ଦେଇ ଧନ୍ୟ କରିଅଛ । ପ୍ରକୃତରେ ମୁଁ ଉପଯୁକ୍ତ ନୁହେଁ ) ।

୧୯ଶ ପଦ—ସେହି ରାମ ସୀତା ତୁହେଁ ଏହିପରି ଅନୁରାଗ ମିଶା ବାଣୀ କଥାବାର୍ତ୍ତା ହେଉଁ ହେଉଁ ବିଚିତ୍ର ରାତ୍ରି ଆସି ପ୍ରବେଶିଲା । ( ରାତ୍ରି ବିଚିତ୍ର କାହିଁକି ? ) ସେ ରାତ୍ରି ରମଣୀରତ୍ନ ସୀତାଙ୍କଦ୍ୱାରା ଯତ୍ନ ପୂର୍ବକ 'ସ୍ୱରୂପ ଦେଳ' ବିପରୀତ ରତି ବିରଚନ କଲା ( ସ୍ତ୍ରୀ ପୁରୁଷର ନ୍ୟାୟ ଦେଳ କରିବାରୁ ରାତ୍ରି ବିଚିତ୍ର ହେଲା ) ପୁଣି ଦେଳର ମଧ୍ୟଭାଗରେ 'ବ୍ରହ୍ମଶିରଃ' ହର ସମସ୍ତଙ୍କୁ ପ୍ରଦାନ କଲା ଅର୍ଥାତ୍ ଦିଗମ୍ବର କରାଇଲା । ଦିଗମ୍ବର ମହାଦେବ ତାଣ୍ଡବ ନୃତ୍ୟ କଲାବେଳେ ସ୍ୱର୍ଗରହି ମର୍ଦ୍ଦଳ ବାଜେ ଓ ନାରଦ ବୀଣା ବାଦନ କରନ୍ତି, ସେହିପରି ବିପରୀତ ସମୟରେ ସୀତାଙ୍କର ରସନା ( ଅଳଙ୍କାର ବିଶେଷ )

ବାଙ୍କଲ ରଚନା ବାଦ୍ୟ ମରଦଳ ମଧ୍ୟେ ବ୍ରହ୍ମଶିଖ ଦେଇ ।
ବୀଣାନାଦ ହୁଁ ହୁଁ କୃତ ଜାତ ବଶେ ଭଣୁ ନାରଦ ଜସ୍ରଇ ।୧୯।
ବିଚଳିତ ରମ୍ଭା ଉର୍ବଶୀ ସ୍ଵମା ଚଞ୍ଚଳ ଶେଷ ସଂଶୁଭ ।
ବୃନ୍ଦ ଯନ୍ତ୍ରଭଟରେ ତନ୍ତ୍ରି ସନ୍ତ୍ରକ କାଟିଲେ ହେଲେ ରସଭ ।
ବରାବରି ପନ୍ତ ବଲେ ବିତ୍ୟକୃତ୍ୟ ଶିଷକୁଣ୍ଠ ବେଳି ଶେଷ ।
ବଂଶପଦେ ସ୍ମଣ ଉପେନ୍ଦ୍ର ବୀରବର ରଚିବାରେ ତୋଷ ।୨୦।

## ଏକବିଂଶ ଛାନ୍ଦ

### ରାଗ—ଦେଶାକ୍ଷ

ବିଚକ୍ଷଣ ଗୀତ ସୁଜନେ ଶୁଣ । ବଙ୍କାଣୀ ଶିଷକୁଣ୍ଠ ଉପିଗଣ ।
ବସ୍ତ୍ରକର ଶ୍ରୀରାମଙ୍କୁ ନ ଭକ୍ତି । ବସ୍ତୁର ଏ ଉପ୍ର ସ୍ଵଷସ ସେବା ।
ବନାଶେ ଅମ୍ବ ଧନ୍ୱୀ ପୋଷିତ । ବୋଲବୋଲି ହୋଇ ଗୁର୍ଜରୀ ପ୍ରବନ୍ତ

୧ମ ପଦ—ଧଣା—ଧନୁର୍ଦ୍ଧର ।

ବାଦ୍ୟ ବାଜିବାରୁ ଓ ହୁଁ ହୁଁ କୃତ ବୀଣାତାନ ଶୁଭିବାରୁ ସେ ସଙ୍ଗି 'ବ୍ରହ୍ମଶିଖ' ସ୍ଵର୍ଗ ସୁଖ ଦାନ କଲା ।

୨୦ଶ ପଦ—ସ୍ଵର୍ଗରେ ରମ୍ଭା ଓ ଉର୍ବଶୀ ସ୍ଵର୍ଗବେଶ୍ୟା ହୁଅନ୍ତି ନୃତ୍ୟକାଳରେ ବିଚଳିତ ହେବାରୁ ତାଙ୍କ ଲୁଗାର ପଣତ ଚଞ୍ଚଳ ହୋଇଥାଏ । ସେହିପରି ଏ ବିମଣ୍ଡିତ ରଙ୍ଗ କାଳରେ ରମ୍ଭୋରୁ ସୀତା ନୃତ୍ୟ କଲ ପ୍ରାୟ ବିଚଳିତ ହେବାରୁ ବସନର ଶେଷ ମଧ୍ୟ ରହିଲା ନାହିଁ । ସେ ସମୟରେ ଇଚ୍ଛିତ ରାମଚନ୍ଦ୍ର ଅଞ୍ଚଳରେ ଶମ୍ଭୁ ରୂପ ସୀତାଙ୍କ କର୍ଣ୍ଣୂଳ ସ୍ତନଯୁଗଳରେ ସେ ନଖକ୍ଷତ କାଟି ସନ୍ତକ ରଖିଲେ, ତାହା ଇନ୍ଦ୍ରଙ୍କ ଉପରେ ସନ୍ତକ କାଟିଲା ପ୍ରାୟ ହେଲା । ( ରତି ସୁଖ ଯେ ଇନ୍ଦ୍ରସୁଖରୁ ଉଚ୍ଚ ସ୍ତରର, ତାହାର ସୂଚନା ରଖିବା ପାଇଁ ଏ ସନ୍ତକ କାଟିଲେ ) । ସଙ୍ଗ ଶେଷରେ କର୍ତ୍ତବ୍ୟକର୍ମମାନ ଶେଷ କଲେ । ଏଠାରେ ଶିଷକୁଣ୍ଠ ବେଳି ସମାପ୍ତ ହେଲା । ଚୋଡ଼ଏ ପଦରେ ଏ ଗ୍ରନ୍ଥ ବୀରବର ଉପେନ୍ଦ୍ର ରଚନା କରି ତୋଷ ଲଭିଲେ ।

## ଏକବିଂଶ ଛାନ୍ଦ

୧ମ ଓ ୨ୟ ପଦ—ହେ ସାଧୁଜନମାନେ ! ଦୋଷଶୂନ୍ୟ ଏ ଗୀତକୁ ଶ୍ରବଣ କର । ଶିଷକୁଣ୍ଠ ପର୍ବତରେ ଥିବା ଅଶେଷ ଋଷିମାନେ ଶ୍ରୀରାମଙ୍କ ଭକ୍ତ

ଶତ୍ରୁଚ୍ଛେଦକର ଶୁଣି ଥାଅ ସ୍ଥିତି । ଚାଲି ଭ୍ରାତ ସେନ ଦଣ୍ଡକେ ପଶି ।
ବରଷାରେ ରସା ତେଜି ମାନସ । ଚରଣା ସଖା ସଙ୍ଗେ ଯେସନ ହଂସ ।
ପଦ୍ମନାଳ ସମ୍ବଳ କରି । ବାଣ ଶରାସନ ତେସନ ଧରି ।୨।
ବୀରାଧିବୀର କେତେ ଦୂର ଗଲେ । ବିରାଧ ଅସୁର ଧରିଣ ଶୂଳେ ।
ବରାହ ହରିଣ ଗୁନ୍ଥିଛି ତହିଁ । ବହୁବା ରକତ ନେଉଛି ଲେହି ।
ବିସ୍ତାରୁଁ ତୁଣ୍ଡ ଏମନ୍ତ ଦିଶି । ଦରୀରେ କି ଭାନୁ ଯାଏ ପଶି ।୩।

---

୨ୟ ପଦ:—ରସା—ପୃଥିବୀ । ଚରଣା—ହଂସୀ । ପଦ୍ମନାଳ—ପଦ୍ମନାଡ଼ । ସମ୍ବଳ—ପାଥେୟ, ଖାଦ୍ୟ । ଶରାସନ—ଧନୁ ।

୩ୟ ପଦ:—ବୀରାଧିବୀର—ବୀରଶ୍ରେଷ୍ଠ । ଲେହି—ଚାଟି । ଭାନୁ—ସୂର୍ଯ୍ୟ । ଦରୀ—କନ୍ଦର ।

---

ବୋଲି ଚିନ୍ତି ପାରିଲେ ନାହିଁ । ସେ ଭୟ ପାଇ ବିଚାର କଲେ, "ରାକ୍ଷସମାନେ ମନେ କରିବେ, ଆମ୍ଭର ବିନାଶ ପାଇଁ ଋଷିମାନେ ଆଣି ଏ ଧନୁର୍ଦ୍ଧାରୀ ଦୁଇ ବୀରଙ୍କୁ ପୋଷିଅଛନ୍ତି [ ରାକ୍ଷସମାନେ ଏହା ବିଚାରି ଆମ୍ଭଙ୍କୁ ମାରିବେ ]। ଏହି ପରି ପରସ୍ପର ଗୁହାଗୋହି ହୋଇ ଚିତ୍ରକୂଟ ପର୍ବତ ଗୁହା ଛାଡ଼ିବାକୁ ବାହାରନ୍ତେ, ଶତ୍ରୁଚ୍ଛେଦକର ରାମଚନ୍ଦ୍ର, ତାହା ଜାଣିପାରି କହିଲେ, "ତୁମ୍ଭେ ଥାଅ (ଚିତ୍ରକୂଟ ଗୁହା ତୁମ୍ଭେ ଛାଡ଼ ନାହିଁ ।)" ତତ୍ପରେ ସୀତା ଓ ଭାଇ ଲକ୍ଷ୍ମଣଙ୍କୁ ସଙ୍ଗରେ ନେଇ ଚିତ୍ରକୂଟ ଛାଡ଼ି ଯାଇ ଦଣ୍ଡକାରଣ୍ୟରେ ପ୍ରବେଶ କଲେ । ଯେପରି ବର୍ଷାକାଳରେ ହଂସ ଓ ହଂସୀ ପୃଥିବୀକୁ ଛାଡ଼ି ସାଙ୍ଗ ସାଥୀମାନଙ୍କୁ ସଙ୍ଗରେ ଧରି ପଦ୍ମନାଡ଼କୁ ପାଥେୟ ସ୍ୱରୂପ ନେଇ ମାନସସରୋବରରେ ପଶେ, ସେହିପରି ରାମ ଓ ସୀତା ଚିତ୍ରକୂଟ ତ୍ୟାଗ କରି ଲକ୍ଷ୍ମଣଙ୍କୁ ସାଙ୍ଗରେ ନେଇ ଧନୁର୍ବାଣକୁ ସମ୍ବଳ କରି ଦଣ୍ଡକାରଣ୍ୟରେ ପହଞ୍ଚିଲେ । ( ପଥରେ କାଳ ଦେଇ ସବୁ ବିପଦରୁ ରକ୍ଷା କରିବ ବୋଲି ଧନୁର୍ବାଣ ସମ୍ବଳ ହୋଇଅଛି )।

୩ୟ ପଦ—ବୀରଶ୍ରେଷ୍ଠ ରାମଚନ୍ଦ୍ର ସେଠାରୁ କିଛି ଦୂର ଗଲାପରେ ଦେଖିଲେ, ବିରାଧ ନାମକ ରାକ୍ଷସ ଗୋଟାଏ ଶୂଳ ଧରି ଆସୁଅଛି । ସେ ଶୂଳରେ ସେ ରାକ୍ଷସ ବରାହ ମୃଗ ପ୍ରଭୃତି ପଶୁମାନଙ୍କୁ ଗୁନ୍ଥିଛି ଓ ପଶୁମାନଙ୍କଠାରୁ ବୋହି ପଡ଼ୁଥିବା ରକ୍ତକୁ ଚାଟି ପକାଉଛି । ସେ ରାକ୍ଷସ ପାଟି ବିସ୍ତାର କଲାବେଳେ ଗୁହାରେ ସୂର୍ଯ୍ୟ କିରଣ ପଡ଼ିଲେ ଯାହା ଦେଖାଯାଉଛି ।

ବର୍ଷ୍ମରେ ପଳାଶ ବୃକ୍ଷର ସଙ୍ଗ । ଉଦକ୍ଷିପ୍ତ ପୁଷ୍ପ ସମସ୍ତେ ସଙ୍ଗ ।
ବାହୁ ଶାଖାରେ ହୋଇଛନ୍ତି ଧୀତ । ବିଗଳିତ ଝାଳ ମଧୁ ସଂଜାତ ।
ବୁଲଇ ତୋଳା ଦେଉଛନ୍ତି ଘୂର୍ଣ୍ଣି । ବନଖଣ୍ଡ ଭୃଙ୍ଗ ଚକ୍ରଗତ ବହି ।୪।
ଦେଖିଲ ସେହି ତିନିଜଣଙ୍କୁ । ବିଚାରମାନ ଆଣିଲ ମନକୁ ।
ଦେଖନ୍ତାରେ ଚମ୍ପା ତମାଳ ତରୁ । ବିକଚପୁଷ୍ପେ ଦଳ ସଙ୍ଗେ ବେ ସ୍ଥିତ ।
ବହୁଛନ୍ତି ମଧ୍ୟେ ଲାବଣ୍ୟ ସର । ବାରିଜ କୁମୁଦ କହ୍ଲାରେ ସାର ।୫।

---

୪ର୍ଥ ପଦ:—ପଳାଶ—ରାକ୍ଷସ, ପଲ୍ଲାଶଗଛ । ଭୃଙ୍ଗ—ଭ୍ରମର ।
୫ମ ପଦ:—ବିକଚ—ପ୍ରସ୍ଫୁଟିତ । ସର—ଜଳ । ବାରିଜ—ପଦ୍ମ । କହ୍ଲାର—ଶ୍ୱେତପଦ୍ମ ।

---

୪ର୍ଥ ପଦ— ସେ ରାକ୍ଷସ ପ୍ରକୃତରେ ଗୋଟାଏ ପଳାଶ ବୃକ୍ଷପରି ହୋଇ ଅଛି । ତା ଦେହରେ ଲାଗିଥିବା ରକ୍ତବିନ୍ଦୁସବୁ ପଳାଶ ବୃକ୍ଷରେ ଫୁଲ ଫୁଟିଲା ପ୍ରାୟ ଦେଖା ଯାଉଅଛି । ତାହାର ବାହୁଦ୍ୱୟ ଡାଳରୂପେ ଶୋଭା ପାଉଅଛି ଓ ଦେହରୁ ବହୁଥିବା ଝାଳ ମଧୁ ପରି ବୋଧ ହେଉଅଛି । ସେ ରାକ୍ଷସ ତୋଳା ବୁଲାଇ ଘୂର୍ଣ୍ଣି ଦେଲାବେଳେ, ଭ୍ରମର ଚକ୍ରାକାର ଗତିକଲା ପରି ଜଣା ଯାଉଅଛି । [ ରାକ୍ଷସ ରୂପ ପଳାଶ ବୃକ୍ଷର ରକ୍ତ ବିନ୍ଦୁ ରୂପ ପୁଷ୍ପରୁ ସ୍ରବୁଥିବା ଝାଳ ରୂପ ମଧୁ ପାନ ନିମନ୍ତେ ତୋଳା ରୂପ ଭ୍ରମର ଚକ୍ରାକାରରେ ଭ୍ରମୁ ଅଛି କି ? ]

୫ମ ପଦ—ସେ ବିରାଧ ରାକ୍ଷସ ରାମ, ଲକ୍ଷ୍ମଣ ଓ ସୀତା, ଏ ତିନିଜଣଙ୍କୁ ଦେଖି ମନରେ ବିଚାର କଲା, ଏକ ପାଖରେ ପ୍ରସ୍ଫୁଟିତ ପୁଷ୍ପ ଶୋଭିତ ଚମ୍ପା ବୃକ୍ଷ ଓ ଅନ୍ୟ ପାଖରେ ମନୋହର ପତ୍ର ଶୋଭିତ ତମାଳ ବୃକ୍ଷ ବିରାଜୁ ଅଛି ଏବଂ ମଧ୍ୟ ଭାଗରେ ମନୋରମ ଜଳପ୍ରବାହ ବହୁଅଛି । ସେହି ମନୋରମ ଜଳ ପ୍ରବାହ ଫୁଟିଥିବା ପଦ୍ମ, ଜାଳ ଭଉଁ ଓ କହ୍ଲାର ପୁଷ୍ପ ଯୋଗେ ଶ୍ରେଷ୍ଠତ୍ୱ ଲାଭ କରୁଅଛି । (ଏଠାରେ ରାମଚନ୍ଦ୍ର, ମନୋହର ତମାଳ ବୃକ୍ଷ ଓ ଲକ୍ଷ୍ମଣ ପୁଷ୍ପିତ ଚମ୍ପକ ବୃକ୍ଷ ରୂପେ କଳ୍ପିତ ହୋଇଅଛନ୍ତି । ଦୁହେଁ ଦୁଇ ପାଖରେ ଓ ସୀତା ମଧ୍ୟରେ ଥିବାରୁ ସୀତା ବୃକ୍ଷ ଶୋଭିତ ଦୁଇ ତଟର ମଧ୍ୟରେ ଥିବା ଲାବଣ୍ୟ ଜଳପ୍ରବାହ ରୂପେ ଗତ କହୁଅଛନ୍ତି । ଜଳପ୍ରବାହରେ ପଦ୍ମ ଫୁଟିଲା ପରି ସୀତାଙ୍କର ମୁଖପଦ୍ମ ମନୋହର, ନୀଳୋତ୍ପଳ ପ୍ରାୟ ସୀତାଙ୍କ ନୟନଦ୍ୱୟଙ୍କ ଢଳଢଳ ଓ କହ୍ଲାର ଦେହ ନଖପନ୍ତି ସବୁ ଶୁଭ୍ର ହୋଇଅଛି ) ।

ବାତେ ଚଳନ୍ତ ଅଚ୍ଛ ନୀଳୋତ୍ପଳ । ବୀଚି ଭୃଙ୍ଗାଳିରେ କି ମନୋହର ।
ବିହାର କରୁଛନ୍ତି ମତ୍ତମରାଳୀ । ବୃତ ଶରଦାଳେ ବିମଳ ଜଳ ।
ବିଲୋଳ ଘନରସ ପୂରିତ । ବିତର୍କ ସର୍ବ ଶ୍ରେଷ୍ଠ ଏତେ ମାତ୍ର ।୬।
ଜନମି କରୁଁ ନିକଟକୁ ଗତ । ବିଗ୍ରହବନ୍ତ ଦରଶନେ ଚିନ୍ତ ।
ହରର ନେତ୍ରେ କାମ ଜଳିଗଲା । ବୃଷ୍ଟିସୁଧା ଇନ୍ଦୁ ଅଙ୍ଗିରେ କଲା ।
ବସନ୍ତ ସଙ୍ଗୀ ରତି ସ୍ୱରୂପ । ବଂଶ ଲୋହ ପୁଷ୍ପ କମାଣ ରୋପ ।୭।
ବ୍ରହ୍ମାଣ୍ଡେ ଏକ ସୁନ୍ଦରୀ ଏ ରତି । ବିନା ଏଡ଼େ ଶୋଭା କେଉଁ ଯୁବତୀ ।
ବେଳେ ନେଇଥିଲା ଶମ୍ବରପୁରୀ । ଜବାକେ ଜାଣି କି କରନ୍ତି ଚୋରୀ ।
କଟେବକ ଏହି ରୋକରି ପ୍ରମାଣ । ବଚନେ ପରେ ଶେଷ ଉଚ୍ଚାରଣ ।

---

୬ଷ୍ଠ ପଦ—ବୀଚି—ଲହରୀ । ଭୃଙ୍ଗାଳି—ଭ୍ରମରସମୂହ । ମରାଳୀ—ହଂସୀ । ବିଲୋଳ—ଚଞ୍ଚଳ । ଘନରସ—ବହୁଜଳ, ଶୃଙ୍ଗାରରସ ।

୭ମ ପଦ—ବିଗ୍ରହବନ୍ତ—ଦେହବନ୍ତ । ହର—ମହାଦେବ । ପୁଷ୍ପକମାଣ—ଫୁଲଧନୁ ।

---

୬ଷ୍ଠ ପଦଃ—ପବନ ଯୋଗରେ ନୀଳୋତ୍ପଳ ଦୋହଲିଲା ପ୍ରାୟ ସୀତାଙ୍କର ନୟନଯୁଗଳ ଟଳ ଟଳ ହେଉଅଛି । ତାହାଙ୍କର ଭ୍ରୂଯୁଗଳ ଲହରୀ ସଦୃଶ ଆନ୍ଦୋଳିତ ହେଉଅଛି ଓ ପଦ୍ମ ଉପରେ ଭ୍ରମରସବୁ ବସି ଶୋଭା ପାଉଥିବା ପରି ସୀତାଙ୍କ ମୁଖପଦ୍ମ ଉପରେ ଥିବା କୁଞ୍ଚିତ କୁନ୍ତଳ ସବୁ ଦେଖାଯାଉଅଛି । ତାହାଙ୍କର ଗତି ମତ୍ତହଂସୀର ଗମନ ତୁଲ୍ୟ ହୋଇଅଛି । ପଦ୍ମକଳି ତୁଲ୍ୟ ସ୍ତନ ଦ୍ୱୟ ଶୈବାଳ ରୂପ ବସ୍ତ୍ରଦ୍ୱାରା ଆଚ୍ଛାଦିତ ହୋଇ ସୁନ୍ଦର ଦେଖାଯାଉଅଛି । ଚଞ୍ଚଳ ତଡ଼ାଗ ଜଳରେ ପୂର୍ଣ୍ଣ ହେଲାପ୍ରାୟ ସୀତା ନବୀନ ଶୃଙ୍ଗାରରସରେ ପୂର୍ଣ୍ଣ ହୋଇଅଛନ୍ତି । ବିରାଧ ରାକ୍ଷସ ତାଙ୍କୁ ଦେଖି ଏହିମତ ଶ୍ଲେଷଭାବରେ ମନରେ ବିଚାର କଲା ।

୭ମ ପଦ—ତତ୍ପରେ ସେ ରାକ୍ଷସ ପାଦ ନିକ୍ଷେପ କରି ତାଙ୍କ ନିକଟକୁ ଗଲା ଓ ଦେହଧାରୀ ମଦନ ମୂର୍ତ୍ତିଙ୍କୁ ଦେଖି ମନରେ ଚିନ୍ତା କଲା, "ଶଙ୍କରଙ୍କ ନେତ୍ରପାତ ଯୋଗେ କନ୍ଦର୍ପ ଜଳି ଯାଇଥିଲା । ତାହାର ଅଙ୍ଗରେ ଇନ୍ଦୁ ଅମୃତ ବୃଷ୍ଟି କରିବାରୁ ବୋଧହୁଏ ସେ କନ୍ଦର୍ପ ନିଜ ରୂପକୁ ଧରି ତାହାର ସଖା ବସନ୍ତକୁ ଓ ସ୍ତ୍ରୀ ରତିକୁ ସଙ୍ଗରେ ନେଇ ଆସିଅଛି । ପୁଣି ସେ କୁସୁମଧନୁ ଓ ଫୁଲଶର ଛାଡ଼ି ବାଉଁଶଧନୁ ଓ ଲୁହା ଶରକୁ ଧରିଅଛି ।"

୮ମ ପଦ—"ଏ ସ୍ତ୍ରୀ ବ୍ରହ୍ମାଣ୍ଡମଧ୍ୟରେ ଏକମାତ୍ର ସୁନ୍ଦରୀ ରତିଦେବୀ । ତାହା ବିନା ଏଡ଼େ ସୁନ୍ଦରୀ ଆଉ କେଉଁ ସ୍ତ୍ରୀ କି ହେବ ? ବଳାତ୍କାରରେ

ତେଣ ପୁରୁଷ ଅସ୍ଥି ସହ ତରୁ । ବର୍ଷୁ ଉଷବି ଅଗସ୍ତି ସୁମର ।
ଅଜୀର୍ଣ୍ଣ ହେବେ ଜୀର୍ଣ୍ଣ କରିଦେବ । ବୃଷ୍ଟି ସୁଧା ପିଇ ଅମର ହେବ ।
ତନତାମଣି ସ୍ଥିର ଯୌବନୀ । ବନେ ନେ ବିହରିବ ଏହା ଘେନି ।୯।
ତାସାଙ୍ଗେ ଜଣେ ପାରିଜାତକୁ । ତୋଳିବ ଯୋଜନଗନ୍ଧା ଏହାକୁ ।
ବିଳେପ ଚନ୍ଦଦେବ ଉଚ୍ଚନାମ । ବାଦେ ଜିଣିମାକୁ କେ ମୋତେ କ୍ଷମ ।
ଦନୁଜ ରାମ ଲକ୍ଷ୍ମଣ ଧରି । ବହି ବେନିସ୍କନ୍ଧେ ଗମନ କରି ।୧୦।
ବତାସ ବୃକ୍ଷ ଉତ୍ପାଟି ଉଡ଼ାଇ । ବଲ୍ଲରୀର ଯଥା ପ୍ରଦର୍ଶ ଦେଇ ।
ବର୍ତ୍ତମାନ ଏହୁ ଉକ୍ତ ସେଠାରେ । ବାରି ପୂର୍ଣ ସୀତା ନୟନୁ ଝରେ ।
ଦମନ ମୋତିପଙ୍କ୍ତି କି ତଳେ । ଜଳମିଶ୍ରୁ ଝୁଷ ଉପମା ଧରେ ।୧୧।

---

୧୦ମ ପଦ୍ୟ—ତାସାଙ୍ଗେ—ଦେହ ସୌରଭରେ ।
୧୧ଶ ପଦ୍ୟ—ବଲ୍ଲରୀ—ଲତା । ଦମନ—ଦାନ୍ତ । ଜଳମିଶ୍ରୁ—ଅଲକ ନ ପଡ଼ିବାକୁ ।

---

ଗମ୍ଭୀରପୁର ଏହାକୁ ନିଜ ପୁରମଧ୍ୟକୁ ନେଇଥିଲ । ଏ କନ୍ଦର୍ପ ତା ସହିତ ବିବାଦ କରି ଜମ୍ବା ରେଖାଇ ଯୁଦ୍ଧକୁ ଆଣିଅଛି । ଏ ଯେତେବେଳେ ଜଟା ଧାରଣ କରି ବନ ମଧ୍ୟରେ ଲୁଚି ବୁଲୁଅଛି, ସେଥିରୁ ମନେହେଉଛି ଯେ, ଏ ନିଶ୍ଚୟ ଟେକୁଣି କରି ଆଣିଅଛି । ( ଯୁଦ୍ଧରେ ଜୟ କରି ଆଣିଥିଲେ ବନରେ ଲୁଚି ଲୁଚି ବୁଲନ୍ତା କାହିଁକି ) ?"

୯ମ ପଦ—"ଏ ଦୁଇ ପୁରୁଷଙ୍କୁ ମାରି ହାଡ଼ ସହିତ ଖାଇବି ଓ ଅଜୀର୍ଣ୍ଣ ହେଲେ ଅଗସ୍ତି ମୁନିଙ୍କୁ ସ୍ମରଣ କରି ଜୀର୍ଣ୍ଣ କରିଦେବି । ପୂର୍ବେ ବୃଷ୍ଟି ହୋଇଥିବା ଅମୃତ ( କନ୍ଦର୍ପର ଅସ୍ଥିରେ ଇନ୍ଦ୍ର ଅମୃତ ବୃଷ୍ଟି କରିବାରୁ ଏ ପୁରୁଷ ଜୀବନ ପାଇଅଛି, ସେହି ଅସ୍ଥିରେ ପଡ଼ିଥିବା ଅମୃତ) ପାନ କରି ମୁଁ ଅମର ହେବି ଓ ଏହି ସ୍ଥିରଯୌବନା ସ୍ତ୍ରୀଟିକୁ ନେଇ ବନରେ ବିହାର କରିବି ।"

୧୦ମ ପଦ—"ଏ ସ୍ତ୍ରୀର ଅଙ୍ଗସୌରଭ ପାରିଜାତ ପୁଷ୍ପର ସୌରଭକୁ ଜିଣିଅଛି, ତେଣୁ ଏହାକୁ ଯୋଜନଗନ୍ଧା କହି ଡାକିବି । ଏହାର ଉଚ୍ଚ ନାମକୁ ଲଗାଇଦେବି । ମୋତେ ବିବାଦରେ ଜିଣିବାକୁ ସମର୍ଥ କିଏ ଅଛି ? ( ମୋତେ ବିବାଦରେ କେହି ଜିଣି ପାରିବେ ନାହିଁ ) ।" ଏହାପରେ ଦନୁଜ କରି ସେ ରାମ ଲକ୍ଷ୍ମଣ ଦୁହିଁଙ୍କି ଦୁଇ କାନ୍ଧରେ ବସାଇ ନେଇଗଲା ।

୧୧ଶ ପଦ୍ୟ—ପ୍ରବଳ ପବନ ବୃକ୍ଷକୁ ଉପାଡ଼ି ଉଡ଼ାଇ ନେଲାବେଳେ ବୃକ୍ଷର ଆଶ୍ରିତ ଲତାକୁ ପ୍ରଦର୍ଶିତ କରିବା ଉପମା ଏଠାରେ ବର୍ତ୍ତମାନ ହେଲା ।

ବିଗତ ହେଲା ବିଗତ ଦେହରୁ | ରହିଲା ତୃଣାଙ୍କୁର ଯେଣୁ ମେରୁ |
ବାର ପଛେ ଯଥା ହଂସୀଗୋଡ଼ାଇ | ବଧିରେ ଯଥା ମାଗଧ ବନ୍ଦଇ |
ବିକଳ ଶୁଣି ସୋଦର ଦୁଇ | ଢାଳ ଧରି ଦେଇ ଲୋଟାଇମହୀ |୧୨
ବିଲୋପ ଲୋମ ଗତାଗତ ବଣେ | ବିରୋଧ ବଧ ଖ୍ୟାତ ଶାତକୋଣେ
ବିମାନେ ସ୍ୱର୍ଗ ସ୍ତୁତ ଦିବ୍ୟରୂପେ | ବନ୍ଦନା କଲେ ବିବୁଧକଳାପେ |
ବୈଦେହୀ ମହାସନ୍ତୋଷ ହେଲେ | ବୃକ୍ଷକ ମୂଳେ ସେଦିନ ରହିଲେ |୧୩

---

୧୨ଶ ପଦ—ବାର—ଘୋଡ଼ା । ମାଗଧ—ଭାଟ ।

---

( ସେ ରାକ୍ଷସ ରାମଲକ୍ଷ୍ମଣଙ୍କୁ କାନ୍ଧରେ ବୋହି ଉଡ଼ାଇ ନେଉଥିବାରୁ ସୀତା ଉପରେ ବର୍ଣ୍ଣିତାକୁ ଘଟିଲେ )। ପୁଣି ସୀତାଙ୍କ ନିର୍ମେଷ ନେତ୍ରରୁ ଲୁହ ବାହାରୁଥିଲା । ତା ଦେଖି ମନେହୁଏ ମୀନ ମୋତିପନ୍ତି ବମନ କରୁଛି କି ?

୧୨ଶ ପଦ:—ଯେଣୁ ତୃଣାଙ୍କୁର ସଦୃଶ ବିରାଧ ରାକ୍ଷସ ମେରୁ ପର୍ବତ ତୁଲ୍ୟ ରାମ ଲକ୍ଷ୍ମଣଙ୍କୁ ବହନ କରି ବିଗତ ଘଟଣା ଘଟାଇ ଦେଲା, ସେହି ହେତୁରୁ ମୀନ ମୋତି ବମନ କରିବା ରୂପ ବିଗତ ଦୃଶ୍ୟ ଦେଖାଗଲା । ତପୂରେ ସୀତା ଘୋଟକ ପଛରେ ହଂସୀ ଗୋଡ଼ାଇଲା ପ୍ରାୟ ରାକ୍ଷସ ପଛରେ ଗୋଡ଼ାଇଲେ ଓ ବଧିର ଆଗରେ ଭାଟ ସ୍ତୁତିପାଠ କଲା ପରି ରାକ୍ଷସକୁ ବହୁତ ଅନୁନୟ ବିନୟ କଲେ । ( ଯେପରି ସ୍ତୁତି ପାଠ କଲେ ସୁଦ୍ଧା ବଧିର ଯେପରି ନ ଶୁଣେ, ରାକ୍ଷସ ସେହିପରି ସୀତାଙ୍କ ଅନୁନୟ ବିନୟ ଶୁଣିଲା ନାହିଁ ) । ରାମ ଲକ୍ଷ୍ମଣ ଦୁଇ ଭାଇ ସୀତାଙ୍କ ବିକଳ କ୍ରନ୍ଦନ ଶୁଣି ରାକ୍ଷସର ଦେହ ଧରି କାନ୍ଧରୁ ଡେଇଁ ପଡ଼ି ତାକୁ ଭୂମିରେ ଗଡ଼ାଇ ଦେଲେ ।

୧୩ଶ ପଦ:—ସେ ଦୁଇଭାଇ ବିରାଧକୁ ଏଣିକି ତେଣିକି ଗୋଡ଼ରା ଗୋଡ଼ରି କରିବା ଦ୍ୱାରା ସେ ବଧ ହେଲା । ସେଠାରେ କ୍ରୋଶକ ପର୍ଯ୍ୟନ୍ତ ଖାଲ ହୋଇ ଯିବାରୁ ତାହା ବିରାଧ ଖାତ ନାମରେ ପ୍ରସିଦ୍ଧି ପାଇଲା । ରାକ୍ଷସ ଦିବ୍ୟରୂପ ଧରି ବିମାନରେ ବସି ରାମ ଲକ୍ଷ୍ମଣଙ୍କୁ ସ୍ତୁତି କରି ସ୍ୱର୍ଗପୁରକୁ ଗଲା । ଅନନ୍ତର ଦେବତାମାନେ ରାମ ଲକ୍ଷ୍ମଣଙ୍କୁ ବନ୍ଦନା କଲେ । ବିରାଧର ମୃତ୍ୟୁରେ ବୈଦେହୀ ଆନନ୍ଦିତା ହେଲେ । ସେ ଦିନ ଗୋଟିଏ ବୃକ୍ଷ ମୂଳରେ ସେ ତିନିଜଣ ରହିଲେ ।

ବଧୂରେ ପୂର୍ବରୁ ହରି ହରିଣୀ । ବହ୍ନିତେ ସେହି ଲକ୍ଷ୍ମଣାକୁ ଅଣି ।
ବନେ ସବୁଦିନେ ଥିଲା ଶୟନ । ବନେ ହରିଲେ ଦିନ କୋହି ଦୀନ ।
ବଶ୍ୟରେ ଖ୍ୟାତ ସୁବର୍ଣ୍ଣରୂପେ । ବନ୍ଦେ ଗତବଶେ ଦ୍ୱିଜତପୁଷ୍ପେ ।୧୪।
ବହ୍ନିତ ସତ୍ତେଜେ ଅତି ରଞ୍ଜନ । ବାୟୁସଖାରେ ହୁଅଇ ପୂଜନ ।
ବାଜଇ ସୀତାର ନୂପୁର ଘଣ୍ଟି । ବଶେ ମୃଗବର୍ଗ ପାଶେ ପ୍ରକଟି ।
ବଗତ ଭୟ ଦେଖି ସ୍ଥକିତ । ବର୍ଣ୍ଣିଆ ଇନ୍ଦନେ ଗଢ଼ିଲ୍ଲ ବତ ।୧୫।

•

---

୧୪ଶ ପଦଃ—ହରି—ନାରାୟଣ, ସିଂହ । ହରିଣୀ—ସିଂହୀ, ଲକ୍ଷ୍ମୀ । ବନେ—ଜଳରେ, ଅରଣ୍ୟରେ । ଦ୍ୱିଜେ—ବ୍ରାହ୍ମଣମାନେ, ପକ୍ଷିସମୂହ ।

୧୫ଶ ପଦଃ—ବାୟୁସଖା—ଅଗ୍ନି ।

---

୧୪ଶ ପଦ—ରାମ ଓ ସୀତା ପୂର୍ବଜନ୍ମରେ 'ହରି ହରିଣୀ' ନାରାୟଣ ଲକ୍ଷ୍ମୀଙ୍କ ପରି ( ଲକ୍ଷ୍ମୀ ନାରାୟଣ ନିର୍ଭୟରେ ସମୁଦ୍ର ଜଳରେ ଅନନ୍ତ ଶୟନ କରି ଥାଇ) ନିର୍ଭୟରେ ସେହି ଲକ୍ଷ୍ମଣଙ୍କୁ ବହିଲେ ଅର୍ଥାତ୍ 'ହରି ହରିଣୀ' ସିଂହ ସିଂହୀ ନିର୍ଭୟରେ ବନରେ ଭ୍ରମଣ କଲା ପ୍ରାୟ ରାମ ସୀତା ନିର୍ଭୀକ ଚିତ୍ତରେ ସେ ବନରେ ବିହାର କଲେ । ପୂର୍ବେ ସବୁଦିନେ ସିନା ଜଳରେ ଶୟନ କରୁଥିଲେ, ଏବେ ବନରେ ଦୁଃଖ ଅନୁଭବ ନ କରି ମଧ୍ୟ ଦିନ କଟାଇଲେ । ସଂସାରରେ ସ୍ୱର୍ଣ୍ଣମୟୀ ପ୍ରତିମାକୁ ବ୍ରାହ୍ମଣମାନେ ଗତି ମୁକ୍ତି ପାଇବାପାଇଁ ପୁଷ୍ପ ପ୍ରଦାନ କରି ପୂଜା କରିଥାନ୍ତି । ସେହିପରି ହଂସପକ୍ଷୀମାନେ ମନ୍ଦଗମନ ହେତୁ ସ୍ୱର୍ଣ୍ଣ ପ୍ରତିମା ସୀତାଙ୍କୁ ପୂଜା କରୁଅଛନ୍ତି । ଅନ୍ୟାର୍ଥ—ସୀତା ଗମନ ହେତୁ ପାଦ ପକାଇଲା ବେଳେ ହଂସମାନେ ଓ ପଦ୍ମପୁଷ୍ପମାନେ ସେ ଗମନକୁ ଓ ପାଦକୁ ସମାନ ନ ହେବାକୁ ବନ୍ଦନା କରୁଅଛନ୍ତି ।

୧୫ଶ ପଦ—ରାମ ଲକ୍ଷ୍ମଣଙ୍କର ତେଜ ଅତି ଉଜ୍ଜ୍ୱଳ ହୋଇଥିବାରୁ ଅଗ୍ନି ଦ୍ୱାରା ପୂଜିତ ହୁଏ । ( ଅଗ୍ନିଠାରୁ ଅଧିକ ତେଜ ହେବାରୁ ଅଗ୍ନି ପୂଜା କରେ ) । ସୀତାଙ୍କର ନୂପୁର ଘଣ୍ଟି ପ୍ରାୟ ଶବ୍ଦ କରେ । ରାମ ଲକ୍ଷ୍ମଣଙ୍କ ତେଜ ରୂପ ଅଗ୍ନି ଦେଖି ଓ ସୀତାଙ୍କ ନୂପୁର ଘଣ୍ଟି ଶବ୍ଦ ଶୁଣି ମୃଗମାନେ ବଶ ହୋଇ ଅତି ନିର୍ଭୟ ଚିତ୍ତରେ ପାଖରେ ମିଳିଲେ ଓ ରାମ ପ୍ରଭୃତିଙ୍କୁ ଦେଖି ଚକିତ ନିର୍ମିତ ଦାରୁ ପିତୁଳା ପ୍ରାୟ ସ୍ଥିର ଭାବରେ ଠିଆ ହେଲେ ।

ବକୁଳ ଅଶୋକ କଦମ୍ବ ଶ୍ରେଣି । ଝରଷି କୁସୁମ ଗନ୍ଧ ଚହଟି ।
ବାମା ବାମପାଦ ଲଗି ଗମନେ । ବଟିକାଶେଷ ପାନର ପତନେ ।
ଝଟୋଉଁ ପଥେ ଦୋଳ ରଚନେ । ବନ୍ଧୁ ସଖୀ କାମସ୍ନେହ ଚୁମ୍ବନେ ।୧୬।
ଝଳସେ ଅଳିଅବ ଭାଳିଜନେ । ବୋଧ ନିଦାଳପୁଲ ମଧୁପାନେ ।
ବାଞ୍ଛାକଳ୍ପତରୁ ବାଳକା ନିଷ୍ଟେ । ବଦଧ ଫଳଗର୍ଭ ଦାନ ସଙ୍ଗେ ।
ଦେଖିବେ ମଧୁସୂଦନ ସେହୁ । ବସ୍ତୁକ୍ତ କାଳକୁ ବନୋଦ ବହୁ ।୧୭
ଝଣ୍ୟାଡ ପନନ୍ତ ଖରଭମାନ । ବନାଶନରେ ଅନୁଜ ସୁମନ ।
ଝଳଦ୍ରବଯୋଗୀ ଦାଷାରୁ କର । ବାସବ ନିଷା ଝାଡ ଝାଡ ହର ।
ବସୁଧା ନ ଭଲେ ପିଶାଚୀହୀନ । ଦୋଇନ୍ତ ଯେଣୁ ସଭତ ପାବନ ।୧୮

---

୧୭ଶ ପଦ :—ଅଳିଅବଳୀ—ଭ୍ରମରସମୂହ । ମଧୁସୂଦନ—ମଧୁଦୈତ୍ୟହନ୍ତା ବା ରାମଚନ୍ଦ୍ର, ମଧୁଲୁବ୍ଧ ବା ଭ୍ରମର ।
୧୮ଶ ପଦ :—ବନାଶନରେ—ଅନାହାରରେ । ଅନୁଜ—ସାନଭାଇ ।
ବସୁଧା—ପୃଥିବୀ ।

---

୧୬ଶ ପଦ :—ସୀତାଙ୍କର ଗମନ ସମୟରେ ତାଙ୍କର ବାମପାଦ ଲଗି ଅଶୋକ ବୃକ୍ଷରେ, ଚର୍ବଣ ଶେଷ ପାନର ପତନରେ ବକୁଳ ଗଛରେ ପଥ ମଧ୍ୟରେ ଯାଉଁ ଯାଉଁ ଚଢିବା ମାନସରେ ଦୋଳ କରିବା ହେତୁ କଦମ୍ବ ଗଛରେ ସହଚରୀ ବୋଲି କହି ସ୍ନେହରେ ଚୁମ୍ବନ ଦେବା ଦ୍ୱାରା ଅଁଳା ଗଛରେ ଫୁଲ ଫୁଟି ସୁଗନ୍ଧ ଚହଟି ଗଲା । ( ଏହା ଦ୍ୱାରା ଦୋହଦ ଲକ୍ଷଣ ସୂଚିତ ହେଲା )।

୧୭ଶ ପଦ:—ଅସମୟରେ ଫଳଲାଭ ବୃକ୍ଷମାନେ ପୁଷ୍ପିତ ହୁଅନ୍ତେ ଭ୍ରମରମାନେ ସେ ବନରେ ଝଳସିଲେ । ନିଦାଳ ଫୁଲ ଅର୍ଥାତ୍ ବର୍ଷା, ବସନ୍ତ ଓ ହେମନ୍ତ ଋତୁର ଫୁଲସବୁ ଏକ ସମୟରେ ଫୁଟିବାରୁ ସେମାନେ ମଧୁପାନ କରି ତୃପ୍ତ ହେଲେ । ଲୋକମାନଙ୍କୁ ବାଞ୍ଛିତ ଫଳ ପ୍ରଦାନ କରି ବାଞ୍ଛାକଳ୍ପତରୁ ବୋଲାଉଥିବା ମଧୁଦୈତ୍ୟହନ୍ତା ରାମଚନ୍ଦ୍ର ଭ୍ରମର ପ୍ରାୟ ନିଦାଳପୁଷ୍ପୋପମା ସୀତାଙ୍କ ସହିତ ବିହାର କରି ନିଦାଳ କଟାଇଲେ ।

୧୮ଶ ପଦ :—ପ୍ରସଙ୍ଗ ଓ ଅପରିମିତ ଶକ୍ତିମନ୍ତ ଅନୁଜ ଲକ୍ଷ୍ମଣ ଅଭୋଜନରେ ନିଦ୍ରା ରହିତ ହୋଇ ଆନନ୍ଦ ମନରେ ଦିନ ଓ ରାତ୍ର କଟାଇଲେ । ସେ ଯେଣୁ ପରେ [illegible] ଅଖ୍ୟା ପାଇଛନ୍ତି, ତେଣୁ 'ପିଶାଚ' [illegible]ମାନଙ୍କୁ ନାଶ କରି ସ୍ୱର୍ଗଗତ ଦେବା ଦ୍ୱାରା ପବିତ୍ର କଲେ ।

ବାସତୀର୍ଥସ୍ଥ ତୀରରେ ଯେଣୁ । ବୁଲିଲେ ତୀର୍ଥମାନଙ୍କରେ ତେଣୁ ।
ବାଳା ସ୍ନେହ ସରସ୍ୱତୀକି ପାଳି । ବଚନ ସରସ୍ୱତୀରେ ସେ ମିଳି ।
ବାଶିଷ୍ଠୀ ବାସୀସୁବାସୀ ସଙ୍ଗେ । ଉଦ୍ବୋଧିତତତଶ୍ରୀ ବାଶିଷ୍ଠୀ ଭଙ୍ଗେ ।୧୯
ବିହରି ନର୍ମଦା ସେହି ନର୍ମଦା । ବାହୁଦା କୂଳେ ଦେଲେ କାନ୍ତ ବାହୁଦା ।
ବୁଡି ହଂସପରି ହଂସଜାଜଳରେ । ବାରେ ଗମନ ପ୍ରବୃତ୍ତ ରେବାରେ ।
ବିଚଶୀ କାଶୀ-ସନ୍ନିଧେ ସ୍ନାୟୀ । ବିନ୍ଧ୍ୟ କନ୍ୟାରେ କନ୍ୟା ସେନାୟାଇ
ବେତ୍ରବତୀ ଗତ ଯୁବତୀ ତୋଷେ । ବ୍ରାହ୍ମୀ କଲ୍ଲୋଳ-କଲ୍ଲୋଳରେ ପଶି ।
ବେଣୀଶୋଭା ନେଇ କୃଷ୍ଣ ବେଣୀଙ୍କ । ନିକ୍ଷେପି ପାଣିରେ ଶିରେ ପାଣିଙ୍କ ।
ବେଗରେ ଗୟା ପ୍ରୟାଣ କରି । ବିକଶିତା ପୁଷ୍ପେ ସୀତା ମଞ୍ଜରୀ ।୨୧

---

୧୯ଶ ପଦ—ତୀର୍ଥସ୍ଥ—ସମୁଦ୍ର । ସରସ୍ୱତୀ—ବାଣୀ ବା ବଚନ । ବାଶିଷ୍ଠୀ—ଗୋମତୀ ନଦୀ । ବାସୀସୁବାସୀ—ସୌରଭ ମୟୀ । ତତଶ୍ରୀ—ଶୋଭା । ଭଙ୍ଗେ—ତରଙ୍ଗରେ ।

୨୦ଶ ପଦ—ନର୍ମଦା—ଲୀଳାଦାୟିନୀ । ହଂସଜା—ଯମୁନା । ବିନ୍ଧ୍ୟକନ୍ୟା—ମହାନଦୀ ।

୨୧ଶ ପଦ—ପାଣିରେ—ହସ୍ତରେ । ପ୍ରୟାଣ—ଗମନ । ମଞ୍ଜରୀ—ଲତା ।

---

୧୯ଶ ପଦ—ଯେଉଁ ରାମଚନ୍ଦ୍ର, ବର୍ତ୍ତମାନ ସମୁଦ୍ର ତୀରରେ ବାସ କରୁଥାଆନ୍ତି (ଶ୍ରୀକ୍ଷେତ୍ରରେ ଦାରୁବ୍ରହ୍ମ ରୂପେ ଅବସ୍ଥାନ କରି ଶ୍ରୀକ୍ଷେତ୍ରକୁ ମହାନ ତୀର୍ଥ କରିଥାଆନ୍ତି ) ସେହି ରାମଚନ୍ଦ୍ର ସେତେବେଳେ ନାନାତୀର୍ଥରେ ଭ୍ରମଣ କଲେ । ପ୍ରିୟା ସୀତାର ସ୍ନେହପୂର୍ଣ୍ଣ ବାଣୀକୁ ପାଳନ କରି ଶୀଘ୍ର ସରସ୍ୱତୀ ନଦୀ ତୀରରେ ମିଳିଲେ । ତତ୍ପରେ ସୌରଭମୟୀ ଓ ସୁବସନ ପରିହିତା ସୀତା ରାମଙ୍କ ସଙ୍ଗରେ ଯାଇ ବାଶିଷ୍ଠୀ ନଦୀର ତରଙ୍ଗ ଭଙ୍ଗରେ 'ତତଶ୍ରୀ' ଦେଖିକି ପୁଲକିତ ହେଲେ ।

୨୦ଶ ପଦ—'ନର୍ମଦା' ଲୀଳାଦାୟିନୀ ସୀତାଙ୍କୁ ସଙ୍ଗରେ ନେଇ ରାମଚନ୍ଦ୍ର ନର୍ମଦା ନଦୀରେ କ୍ରୀଡ଼ା କଲେ । ବାହୁଦା ନଦୀ ପାର ହେଲା ବେଳେ ସୀତା ରାମଚନ୍ଦ୍ରଙ୍କୁ ବାହୁ ଦାନ କଲେ (ଅର୍ଥାତ୍ ରାମ ସୀତାଙ୍କ ବାହୁ ଧରି ନଦୀ ପାରି କରାଇ ନେଲେ ) । ଯମୁନା ଜଳରେ ହଂସ ହଂସୀ ପରି ବୁଡି ରେବାନଦୀକୁ ସ୍ନାନ ପାଇଁ ଗମନ କଲେ । କାଶୀକ୍ଷେତ୍ର ସମୀପବର୍ତ୍ତୀ ଗଙ୍ଗା ନଦୀରେ ସ୍ନାନ କରି ବିନ୍ଧ୍ୟକନ୍ୟା ମହାନଦୀକୁ ସୀତା ସହ ଗମନ କଲେ ।

୨୧ ପଦ—ତତ୍ପରେ ବେତ୍ରବତୀ ନଦୀକୁ ଯାଇ ଯୁବତୀ ସୀତାଙ୍କୁ ତୋଷ ପ୍ରଦାନ କଲେ । ବ୍ରାହ୍ମୀ ନଦୀର ଚଞ୍ଚଳ ଲହରୀଯୁକ୍ତ ଜଳରେ ( ଅର୍ଥାତ୍

ବସିଣ ଫଲ୍‌ଗୁରେ ଫଲ୍‌ଗୁ କାମରେ । ବାଲିଗୋଣ୍ଠ ପିଣ୍ଡେ ଗୋତ୍ର ଉଚ୍ଚାରେ
ବିସ୍ତାରି କର ଦଶରଥ ତରୁ । ନଦୀକୁ ଶାପରେ ବାରି ତା ବାରୁ ।
ତାହାର ହାରଶୋଭନା ଘେନି । ଅଗ୍ରେ କରନ୍ତି ବିପ୍ରଳାପ ଦ୍ୱିଜ ।୧୨।
ଚର ଦେଖ ଏକ ବରବରଣୀ । ଦ୍ୱିଟ ଏ ବିଟପୀ ପଳାନ୍ତି ଘେନି ।
ବଜ୍ର ପଡ଼ୁ ଯାଉ ମସ୍ତକ ଫାଟି । ବଜ୍ର ଆଦି ରତ୍ନ କରିବା ଲୁଟି ।
ବାମାକ୍ଷୀ ବାମା ବସନାଞ୍ଚଳ । ବଳେ ଧରୁଁ ଧରଣୀଜା ଆକୁଳ ।୧୩।

---

୧୨ଶ ପଦ—କାମରେ—ଅସାର କାମନାରେ ବା କୌତୁକରେ । ବାଲିଗୋଣ୍ଠ—ବାଲିମୁଷ୍ଟି ।

୧୩ଶ ପଦ—ବଜ୍ର—ହୀରା । ବସନାଞ୍ଚଳ—ଲୁଗାପଣତ । ଧରଣୀଜା—ସୀତା ।

---

ଶତସ୍ରୋତା ବ୍ରାହ୍ମୀ ନଦୀର ଜଳରେ ) ପଶି ସ୍ନାନ କଲେ । ବେଣୀଶେଷରେ ସୀତାଙ୍କୁ କୃଷ୍ଣବେଣୀ ନଦୀକୁ ନେଇ ତାହା ଜଳକୁ ହସ୍ତରେ ଧରି ମସ୍ତକରେ ଛୁଇଁ ହେଲେ । ସେଠାରୁ ଶୀଘ୍ର ଗୟା ତୀର୍ଥକୁ ଗଲେ । ସେଠାରେ ଲତା ପୁଷ୍ପିତା ହେଲା ପ୍ରାୟ ସୀତା ପୁଷ୍ପବତୀ ହେଲେ ।

୧୨ଶ ପଦ—ତାହା ପରେ ସୀତା ଫଲ୍‌ଗୁ ନଦୀରେ ବସି ଖେଳ କୌତୁକରେ ବାଲି ସବୁକୁ ପିଣ୍ଡ କରି ଗୋତ୍ର ଉଚ୍ଚାରଣ ପୂର୍ବକ ପ୍ରଦାନ କରନ୍ତେ, ଦଶରଥ ହସ୍ତ ବଢ଼ାଇ ପିଣ୍ଡ ନେଲେ ଓ ମୋକ୍ଷ ହୋଇଗଲେ । (ତତ୍‌ପରେ ରାମ ଆସି ପିଣ୍ଡ ଦେଲାବେଳେ ଦଶରଥ ପିଣ୍ଡ ନେଲେ ନାହିଁ । ରାମଚନ୍ଦ୍ର ଫଲ୍‌ଗୁନଦୀକୁ ଏହାର କାରଣ ପଚାରନ୍ତେ ନଦୀ କିଛି ଉତ୍ତର ନ ଦେବାରୁ ) ରାମଚନ୍ଦ୍ର ଅଭିଶାପ ଦେଇ ତା ଜଳକୁ ନିବାରଣ କଲେ । ( ତୁ ନିର୍ଜଳା ହୋଇଯିବୁ କହିବାରୁ ନଦୀର ଜଳ ଲୁପ୍ତ ହୋଇଗଲା ) । ପୁନର୍ବାର ଫଲ୍‌ଗୁ ବିନୟ ପ୍ରକାଶ କରନ୍ତେ ବର ଦେଲେ,—'ତୋ ବାଲିକୁ ବିଦାରଣ କଲେ ଜଳ ଦେଖାଯିବ ।' ସେଠାରୁ ହାର-ଶୋଭନା ସୀତାଙ୍କୁ ନେଇ ବାହାର ହୋଇ ଯିବାବେଳେ ତୀର୍ଥର ପୂଜକ ବ୍ରାହ୍ମଣମାନେ ବିରୋଧ ବଚନ ପ୍ରକାଶ କରି କହିଲେ—

୧୩ଶ ପଦ—ଗୋଟିଏ ବରବର୍ଣ୍ଣିନୀ ସ୍ତ୍ରୀ ସହିତ ଦୁଇଗୋଟି ପୁରୁଷ ଅଛନ୍ତି, ଜଣା ଯାଏ ବିଟପୁରୁଷ ଦୁହେଁ ବିଟପୀ ସ୍ତ୍ରୀ କୁ ଘେନି ପଳାଇ ଯାଉଛନ୍ତି । ବଜ୍ର ପଡ଼ି ଏମାନଙ୍କର ମସ୍ତକ ଫାଟିଗଲେ, ଏ ସ୍ତ୍ରୀ ପାଖରେ ଥିବା ହୀରା ଆଦି ରତ୍ନ ସବୁ ଆମେ ଲୁଟିକରି ନେଉନ୍ତେ ।" ଏହା କହି ସେ ବ୍ରାହ୍ମଣମାନେ ବାମଲୋଚନା ସୀତାଙ୍କ ଲୁଗା ପଣତ ବଳେ ଧରି ଟାଣିବାରୁ ସୀତା ଆକୁଳ ହେଲେ ।

ବୋଲନ୍ତି ବହୁ ଦଣ୍ଡଧର ପାଶେ । ବହାଇ ଦଣ୍ଡ ବନ୍ଧାଇବା ଆଶେ, ।
ବନ୍ଧେଇ ରାମ ରାମା ବସ୍ତ୍ର ଖଡ଼ଗେ । ବେଗ ବେଗ ଯାନ୍ତି ଗୋଡ଼ାଇ ପଛେ
ବସାଇଁ ଗୃପେ ତୀକ୍ଷ୍ଣମାର୍ଗଣେ । ବୀର ଲକ୍ଷ୍ମଣ ପଳାନ୍ତି ମାର୍ଗଣେ ।୧୪
ବ୍ୟାକୁଳ ବିନାଶେ ନବୀନାମଣି । ବଞ୍ଜୁଳ ଚନ୍ଦ୍ରଭାଗାଳକା ପୁଣି ।
ବଟଥେ ଚନ୍ଦ୍ରଭାଗାରେ ସଞ୍ଚରି । ବାଲୁକାରେ ଶିବ ଶିବଦ କରି ।
ବହ୍ନିନ ରବିଜା ରବିବାଟରେ । ବନୋଦ ରବିବାଟକୁଲ୍ୟାତୀରେ ॥
ବହୁ ଉତ୍ସବପଦ ଇକ୍ଷ୍ୱାକୁରେ । ବଳ୍ପ ଅର୍ଚନ୍ତି ସଦା ଇକ୍ଷ୍ୱାକୁରେ ।
ବହନ୍ତେ ପଥ ପର୍ଣ୍ଣମଠେ ମିଳେ । ବିଧୁ ହେଲା ଯାହା ଲୋଚନମଳେ ।
ବାଞ୍ଛିଲେ ସୁକଲ୍ୟାଣ ସୁଦୟା । ବନ୍ଦିଲେ ସୀତା ଦେଖି ଅନସୂୟା ॥

---

୧୪ଶ ପଦ—ଦଣ୍ଡଧର—ରାଜା । ଗୃପ—ଧନୁ । ତୀକ୍ଷ୍ଣମାର୍ଗଣେ—ତୀକ୍ଷ୍ଣ ଶରଦ୍ୱାରା ।

୧୫ଶ ପଦ—ନବୀନାମଣି—କାମିନୀଶ୍ରେଷ୍ଠା, ( ସୀତା ) । ବଞ୍ଜୁଳ—ଶୋଭମାନ । ଚନ୍ଦ୍ରଭାଗାଳକା—ଅର୍ଦ୍ଧଚନ୍ଦ୍ର ସଦୃଶ । ଶିବଦ—ମଙ୍ଗଳପ୍ରଦ । ରବିଜ.—ରବିକନ୍ୟା ।

୧୬ଶ ପଦ—ଇକ୍ଷ୍ୱାକୁରେ—ସୂର୍ଯ୍ୟବଂଶରେ । ଇକ୍ଷ୍ୱାକୁରେ—ଇକ୍ଷୁ-ଭୂମିରେ ।

---

୧୪ଶ ପଦ—ବ୍ରାହ୍ମଣମାନେ ସୀତାଙ୍କ ପଣନ୍ତ ଟାଣି କହିଲେ, "ରାଜା ଆଗରେ କହି ତୁମ୍ଭଙ୍କୁ ଦଣ୍ଡ ଦିଆଇ ଦଉଡରେ ବନ୍ଧାଇବୁ ।" ବ୍ରାହ୍ମଣମାନଙ୍କର ଏ ଆଚରଣ ଦେଖି ରାମଚନ୍ଦ୍ର ସ୍ତ୍ରୀଙ୍କର ବସ୍ତ୍ର ଖଡ଼୍‌ଗରେ ବାନ୍ଧି ତରତରରେ ସେଠାରୁ ଚାଲିଯାନ୍ତେ, ବିପ୍ରମାନେ ତାଙ୍କ ପଛରେ ଗୋଡ଼ାଇଲେ । ବୀର ଲକ୍ଷ୍ମଣ ଧନୁରେ ତୀକ୍ଷ୍ଣ ଶରକୁ ବସାଇ ଲକ୍ଷ୍ୟ କରନ୍ତେ, ଯାଚକ ବିପ୍ରମାନେ ଭୟରେ ପଳାଇ ଗଲେ ।

୧୫ଶ ପଦ—ବ୍ରାହ୍ମଣମାନେ ପଳାଇଯିବାରୁ ସୀତାଙ୍କର ବ୍ୟାକୁଳତା ଦୂର ହେଲା । ଅନନ୍ତର ରାମଚନ୍ଦ୍ର, ଅର୍ଦ୍ଧଚନ୍ଦ୍ର ପରି ଶୋଭମାନ ଲଲାଟ ଯାହାର ଏପରି ଯେ ସୀତା, ତାଙ୍କୁ ସଙ୍ଗରେ ଘେନି ଅବାଟରେ ଯାଇ ଚନ୍ଦ୍ରଭାଗା ନଦୀ ତଟରେ ପ୍ରବେଶ ହେଲେ । ମଙ୍ଗଳ କାମନା ପାଇଁ ସେଠାରେ ବାଲିକାରେ ଶିବ ମୂର୍ତ୍ତି ବସାଇ ପୂଜା କଲେ । ତତ୍‌ପରେ ରୋଷ ବହ୍ନିନା ରବିକନ୍ୟା ସୀତାଙ୍କ ସଙ୍ଗ ରବିକୁଲ୍ୟା ନଦୀତଟକୁ ଯାଇ ରାମଚନ୍ଦ୍ର ସେଠାରେ କେଳି କଲେ ।

୧୬ଶ ପଦ—ଇକ୍ଷ୍ୱାକୁ ବଂଶର ପ୍ରଭୁ ରାମଚନ୍ଦ୍ର 'ଇକ୍ଷ୍ୱାକୁରେ' ଇକ୍ଷୁ ଭୂମିରେ ଉତ୍ସବ ମୂର୍ତ୍ତି ଲେଖି ତାଙ୍କୁ ପୂଜା କରି, ପଥରେ ଯାଉ ଯାଉ ଯାହାଙ୍କ

ଦେଲେ ତହୁଁ ଅମ୍ଳାନଶାଢ଼ୀ କି ଶୋଭା । ଅଦ୍ଭୁତପ୍ରଭା ଭୂଷଣ କେତେ ପ୍ରଭା ।
ବୋଇଲେ ବନେ ତ ରଜକ ନାହିଁ । ବହ୍ନିରେ ଧୌତ ଯେବେ ମ୍ଳାନ ହୋଇ ।
ବୈଦେହୀ ଚିତ୍ତ ହରଷେ ସାନ୍ଦ୍ର । ବଡ଼ ଆନନ୍ଦ ଶୁଣି ରାମଚନ୍ଦ୍ର ।୨୭।
ବିହରୁ ବିହରୁ ଦଣ୍ଡକାରଣ୍ୟ । ବୃନ୍ଦ ବୃନ୍ଦ ଋଷି ଦେଖି ସୁପୁଣ୍ୟ ।
ବିଦେହ କୋଟି ଏକଦେହ ବହି । ବୋଇଲନ୍ତି ଏ ଲକ୍ଷ ଭଜୁ ନୋହି ।
ଘନଦ-ଶ୍ୟାମ କାନ୍ତି ଏ ଥିଲ । କରିଲା ଏ ରାମା କି ତପ ବଳ ।୨୮।
ବିଧାତା ଅମ୍ଭଙ୍କୁ କରନ୍ତା ନାରୀ । ବର ହୁଅନ୍ତେ ଏ କୋଦଣ୍ଡଧାରୀ ।
ବ୍ରହ୍ମପଦବୀ ପାଇ ହେବ କିସ । ବହୁବା ନ କର କାମିନୀବେଶ ?
ଏଗୁଣୁ ପୁଲକିତ ଶରୀରେ । ବେପଥୁ ଜନ୍ମି ଅଙ୍ଗ ବୃକ୍ଷରେ ।୨୯।

---

୨୮ଶ ପଦ:—ବିଦେହ କୋଟି—କୋଟି-କନ୍ଦର୍ପ । ଘନଦଶ୍ୟାମ—ଘନଶ୍ୟାମ ।

୨୯ଶ ପଦ:—ବେପଥୁ—କମ୍ପନ ।

---

ଯେଉଁ ମନରୁ ଚନ୍ଦ୍ର ଜନ୍ମ ହୋଇଥିଲେ, ସେହି ଅତ୍ରି ଋଷିଙ୍କ ମଠରେ ପ୍ରବେଶ ହେଲେ । ସେ ଋଷି ଦୟା ସହିତ କଲ୍ୟାଣ ବାଞ୍ଛିଲେ । (ରାମ ଲକ୍ଷ୍ମଣ ନମସ୍କାର କରିବାରୁ ଋଷି କଲ୍ୟାଣ କଲେ) । ଅତ୍ରି ଋଷିଙ୍କ ପତ୍ନୀ ଅନସୂୟାଙ୍କୁ ଦେଖି ସୀତା ତାଙ୍କର ପାଦ ବନ୍ଦନା କଲେ [ ନମସ୍କାର କହିଲେ ] ।

୨୭ଶ ପଦ—ସେ ଅନସୂୟା ସୀତାଙ୍କୁ ଖୁବ୍ ସୁନ୍ଦର ଓ ଅଦ୍ଭୁତ୍‌ପ୍ରଭା ବସ୍ତ୍ରମାନ୍, ଅମ୍ଳାନ ଶାଢ଼ୀଟି ଦେଇ କହିଲେ, "ବନରେ ତ ଧୋବା ନାହାନ୍ତି । ଯେବେ ଏହା ମଇଳା ହେବ, ତେବେ ଏହାକୁ ଅଗ୍ନିରେ ଧୌତ କରିନେବ । (ଅମ୍ଳାନ ବସ୍ତ୍ର ଅଗ୍ନିରେ ଧୌତ ହେଲେ, ତାହାର ମଳିନତା ଦୂରହୁଏ ଓ ଶୋଭା ବଢ଼େ ) । ଏହା ଶୁଣି ସୀତାଙ୍କ ମନ ହର୍ଷପୂର୍ଣ୍ଣ ହେଲା ଓ ରାମଚନ୍ଦ୍ର ଆନନ୍ଦିତ ହେଲେ ।

୨୮ଶ ପଦ—ରାମ, ଲକ୍ଷ୍ମଣ ଓ ସୀତା ଏହିପରି ଦଣ୍ଡକାରଣ୍ୟରେ ବୁଲି ବୁଲି ଅସଂଖ୍ୟ ଋଷି ଉତ୍ତମ ପୁଣ୍ୟଫଳରେ ତାଙ୍କୁ ଦର୍ଶନ କରି ମନରେ ବିଚାରିଲେ, 'କୋଟିଏ କନ୍ଦର୍ପ ଗୋଟିଏ ଦେହ ବହିଅଛନ୍ତି, ଏ ଲକ୍ଷ୍ୟ ଏହାଙ୍କୁ ଦେଲେ ସୁଦ୍ଧା ସମାନ ହେବ ନାହିଁ । [କୋଟି କନ୍ଦର୍ପଙ୍କ ଶୋଭା ମଧ୍ୟ ଏ ଶୋଭାଠାରୁ ନ୍ୟୂନ ହେବ] ଏ ଘନଶ୍ୟାମ ମୂର୍ତ୍ତି କେଉଁଠାରେ ଥିଲେ ? ପୂର୍ବେ କି ତପ କରିଥିବାରୁ ଏ ସ୍ତ୍ରୀ ତାଙ୍କୁ ପତିରୂପେ ବରଣ କଲେ ?'

୨୯ଶ ପଦ—'ଯଦି ବିଧାତା ଅମ୍ଭମାନଙ୍କୁ ନାରୀ କରିଥାନ୍ତେ ଓ ଏହି କୋଦଣ୍ଡଧାରୀ ଅମର ବର ହୋଇଥାନ୍ତେ, ତେବେ ବ୍ରହ୍ମପଦବୀରେ ଅମର

ବିଭ୍ରମ ଉପୁଜିଗଲା ମାନସ । ବୋଇଲେ ସଖାଙ୍କୁ ସଖି ଗୋ ଆସ ।
ବହିବା ତୁମ୍ବୀକି ଉରରେ ରଖି । ବକ୍ଷୋରୁହ ହେଲା ଭାବରେ ସୁଖୀ ।
ବେଣୀ ଏ ସ୍ତବକ ଜଟା ଲମ୍ବାଇ । ବିବିଧ କୁସୁମ ମଣ୍ଡିଲେ ନେଇ ।୩୦।
ବହୁଥିଲେ ଯେ ଅଦ୍ଭୁତ ସର୍ଗିର । ବିସ୍ମୋହିଲେ ସ୍ୱାହା ଆଦ୍ୟ ଅକ୍ଷର ।
ବନେ ଗୁହିଁ ତା ପୁନଃ ପୁନଃ କହୁ । ବଟେଶ୍ୱା ତାଙ୍କର ସକଳ ଗୁହିଁ ।
ବୈଦେହୀ ଲକ୍ଷ୍ମଣଙ୍କୁ ଅନ୍ତର । ବାଞ୍ଛା ବରଦାନେ ଭଜନ ଗିର ।୩୧।
ବଲ୍ଲବୀ ତୁମ୍ଭେ ହୋଇବ ଦ୍ୱାପରେ । ବ୍ରଜେ ରହିବୁଁ ଅମ୍ଭେ ବଂଶ ଭଙ୍ଗେ
ବୃନ୍ଦାବନରେ ହେବ ରାସକେଳି । ବଲ୍ଲଭୀ ଏକା ଏ ଦେହେ ମୈଥିଳୀ ।
ବହିବୁଁ ଗୋପୀନାଥ ନାମକୁ । ବୋଲେ ଉପେନ୍ଦ୍ର ବୋଧିଗଲେ ତାଙ୍କୁ ।୩୨

---

୩୨ଶ ପଦ—ବଲ୍ଲବୀ—ଗୋପାଙ୍ଗନା । ବଲ୍ଲଭୀ—ପତ୍ନୀ ।

---

ଦରକାର କଣ ? ଏବେ ଅମେ କିପରି ନାରୀ ବେଶ ଧାରଣ କରିବା ?' ଏହା ବିଚାରନ୍ତେ ତାଙ୍କ ଶରୀର ରୋମାଞ୍ଚିତ ହେଲା । ବେପଥୁ ଆଦି ଭାବମାନ ଜନ୍ମିବାରୁ ସେମାନେ ବୃକ୍ଷକୁ ଆଉଜି ଠିଆ ହେଲେ ।

୩୦ଶ ପଦ—ତାଙ୍କ ମନରେ ଭ୍ରମ ଜାତ ହେବାରୁ ସେମାନେ ସଖାଙ୍କୁ 'ଗୋ ସଖି ଆସ' ଏହା କହିଲେ । ତାଙ୍କ ହାତରେ ଥିବା ଲାଉ ତୁମ୍ବୀକି ଛାତିରେ ରଖି ଏ ଆମର ସ୍ତନ ବୋଲି ଭାବି ସୁଖୀ ହେଲେ । ନିଜ ନିଜର ଜଟା ଫିଟେଇ ପକାଇ ଦେଇ 'ଏ ଆମର ବେଣୀ' ଏପରି ଭାବ ଜନ୍ମରେ ନାନାପ୍ରକାର ଫୁଲ ମଣ୍ଡିଲେ ।

୩୧ଶ ପଦ—ଯେଉଁ ଋଷିମାନେ ସର୍ଗରେ ଅଦ୍ଭୁତ ହେଉଥିଲେ, ସେମାନେ ସ୍ୱାହାର ଆଦ୍ୟ ଅକ୍ଷର ଅର୍ଥାତ୍ ସ୍ୱା ଭୁଲିଯାଇ କେବଳ ହା ହା ବାରମ୍ବାର କହି ରାମଚନ୍ଦ୍ରଙ୍କୁ ବକ୍ରଭାବରେ ଗୁହିଁଲେ । ତାଙ୍କର ଏପରି ବିରକ୍ତ ଭାବମାନ ଦେଖି ରାଘବ ସୀତା ଓ ଲକ୍ଷ୍ମଣଙ୍କଠାରୁ ଅନ୍ତର ହୋଇ ଯାଇ ସେମାନଙ୍କ ମନ ଇଚ୍ଛା ବର ପ୍ରାପ୍ତି ହେବାପାଇଁ ଏହି ବାକ୍ୟ କହିଲେ;—

୩୨ଶ ପଦ—''ହେ ମୁନିମାନେ ! ଦ୍ୱାପର ଯୁଗରେ ତୁମ୍ଭେମାନେ ଗୋପୀ ହେବ । ମୁଁ କୃଷ୍ଣ ରୂପେ ଜାତ ହୋଇ ବଂଶ ଉପୁରେ ବ୍ରଜପୁରରେ ରହିବି । ବୃନ୍ଦାବନରେ ତୁମ୍ଭର ଓ ମୋର ରାସକେଳି ହେବ । ତେଣୁ ମୁଁ ଗୋପୀନାଥ ନାମକୁ ବହିବି । ଏ ଅବତାରରେ ସୀତା ଏକମାତ୍ର ମୋର ପ୍ରିୟା ।'' ଉପେନ୍ଦ୍ର କହେ, ରାମଚନ୍ଦ୍ର ଏହିପରି ଋଷିମାନଙ୍କୁ ବୋଧ ଦେଇ ଗଲେ ।

---

# ଦ୍ୱାବିଂଶ ଛାନ୍ଦ

## ଭାଗବତ ବୃତ୍ତ

ବାତାପି ସୂଦନ ଆଶ୍ରମ । ବନିନେ ପ୍ରବେଶ ଶ୍ରୀରାମ । ୧ ।
ବଇସ୍ ହିଂସା ତହିଁ ଭୂତ । ବଇସ୍ ସନ୍ନିଧି କପୋତ । ୨ ।
ବାୟସ କଉଶିକ ମେଳ । ବସି ଅଛନ୍ତି ଏକ ଡାଳ । ୩ ।
ବ୍ୟାଳ ଫଣାକୁ ଟେକି ଖେଳ । ବର୍ହୀ ପାଶେ ନୃତ୍ୟଶାଳୀ । ୪ ।
ବାରଣ ସିଂହ ଏକ ସ୍ଥାନ । ବରଶ ଅଛନ୍ତି ଶୟନ । ୫ ।
ବ୍ୟାଘ୍ର କୁରଙ୍ଗ ରଙ୍ଗ ବହୁ । ବୃକାଳି ମିତ୍ରଚନ୍ତ୍ର ତହିଁ । ୬ ।
ବତ୍ସା ଧେନୁଙ୍କ ମହିଷିର । ବଇସଟେ ପାନ କରେ କ୍ଷୀର । ୭ ।

---

୩ୟ ପଦ—ବାୟସ—କାକ । କଉଶିକ—ପେଚା ।
୪ର୍ଥ ପଦ—ବର୍ହୀ—ମୟୂର । ବ୍ୟାଳ—ସର୍ପ ।
୫ମ ପଦ—ବାରଣ—ହସ୍ତୀ ।
୬ଷ୍ଠ ପଦ—କୁରଙ୍ଗ—ହରିଣ । ବୃକାଳି—ବଣଅ କୁକୁରସମୂହ ।

---

## ଦ୍ୱାବିଂଶ ଛାନ୍ଦ

୧ମ ପଦ—ଅନନ୍ତର ଶ୍ରୀରାମ 'ବାତାପିସୂଦନ' ଅଗସ୍ତ୍ୟଋଷିଙ୍କ ଆଶ୍ରମବନରେ ପ୍ରବେଶ କଲେ । ( ଅଗସ୍ତ୍ୟଋଷି ବାତାପି ନାମକ ଅସୁରକୁ ଖାଇ ଜୀର୍ଣ୍ଣ କରି ଦେଇଥିଲେ ) ।

୨ୟ ପଦ—ସେ ବନରେ ଶତ୍ରୁ ଭୂତ ହିଂସାତ୍ମକ ନାହିଁ । ତେଣୁ ସଞ୍ଚାଣପକ୍ଷୀ ପାଖରେ କପୋତ ରହିଅଛି ।

୩ୟ ପଦ—କାକ ଓ ପେଚା ଏକାଠି ଗୋଟିଏ ଡାଳରେ ବସି ଅଛନ୍ତି ।

୪ର୍ଥ ପଦ—ସର୍ପ ଫଣାକୁ ଟେକି ଖେଳୁଅଛି ଓ ମୟୂର ତାହା ପାଖରେ ନୃତ୍ୟ କରିବାରେ ରତ ହୋଇଅଛି ।

୫ମ ପଦ—ହସ୍ତୀ ଓ ସିଂହ ଏକସ୍ଥାନରେ ଶୟନ କରିଅଛନ୍ତି ।

୬ଷ୍ଠ ପଦ—ବ୍ୟାଘ୍ର ଓ ମୃଗ ମିଶି କ୍ରୀଡ଼ା କରୁଥିଲେ ବଣଅକୁକୁର ଆସି ତାଙ୍କ ସହିତ ମିଳିତ ହୋଇ ଅଛି ।

୭ମ ପଦ—ଗାଈମାନଙ୍କର ଛୁଆ ସବୁ ଅର୍ଥାତ୍ ବାଛୁରୀମାନେ କଉଁସୁରେ ମଇଁଷୀଠାରୁ ଦୁଧ ଖାଉଅଛନ୍ତି ।

ବଢ ସ୍ଥାଣରେ ଝଳସାଟେ | ବଗାରକୁଳଙ୍କୁ ଚଢଟେ |୮|
ବ୍ରାହ୍ମଣ ତପୋବଳ ସାର୍ଥ | ବିସ୍ମୟ ବଲେ ରଘୁନାଥ |୯|
ବିଲୋକି ସୀତା ଋଷିଶିଷେ | ବିତର୍କି ଏମନ୍ତ ମାନସେ |୧୦|
ବୃଢଣ୍ଡବାରେ ଲୋପୀ ଜୟ | ବନେ ଅଇଲା ଗୃହୁଧାଗ୍ର |୧୧|
ବୋଧିଛନ୍ତି ଗୋଡ଼ାଇ ସଙ୍ଗେ | ବିଦ୍ୟାଧର ଯୁଗଳ ରଙ୍ଗେ |୧୨|
ବୋଧ ନ ହେଲୁ କି ଅଦମ୍ଭା | ବଳେ ଜାନୁରେ ଯେଉଁ ରମ୍ଭା |୧୩|
ବନଜପାଦେ ଦେଇ ଦେଖା | ବନତ ଧରି ଶିଞ୍ଜରେଖା |୧୪|

---

୮ମ ପଦ—ବଗାରକୁଳ—ବଗାରକୁଳ—ମୀନ ସମୂହ |
୧୦ମ ପଦ—ବୃଢଣ୍ଡବା—ଇନ୍ଦ୍ର | ଗୃହୁଧାଗ୍ର—ଶଚୀ |
୧୩ଶ ପଦ—ଅଦମ୍ଭା—ଅଧୈର୍ଯ୍ୟ |
୧୪ଶ ପଦ—ବନଜପାଦେ—ପଦ୍ମପାଦରେ | ଶିଞ୍ଜରେଖା—ଅଳତା ରେଖା |

---

୮ମ ପଦ—ଜଳସ୍ଥାଟରେ ବଗ ପାଖରେ ମତ୍ସ୍ୟମାନେ ଡେଇଁ ପାଉଛି ଖେଳା କରୁଅଛନ୍ତି |

୯ମ ପଦ—ଏହା ଦେଖି ରଘୁନାଥ ବିସ୍ମୟ ହେଲେ, 'ଅଗସ୍ତ୍ୟ ଋଷିଙ୍କ ତପୋବଳ ସାର୍ଥକ ଅଟେ |'

୧୦ମ ପଦ—ଅଗସ୍ତ୍ୟଙ୍କ ଶିଷ୍ୟମାନେ ସୀତାଙ୍କୁ ଦେଖି ମନରେ ବିସ୍ମୟ ହେଲେ—

୧୧ଶ ପଦ—'ଇନ୍ଦ୍ରଙ୍କଠାରେ ଲୋପ କରି ଶଚୀ ବନକୁ ଆଇଲା କି ?'

୧୨ଶ ପଦ—'ଦୁଇଟି ବିଦ୍ୟାଧର ସଙ୍ଗରେ ଗୋଡ଼ାଇ ନାନା ରଙ୍ଗରେ ବୋଧ ଦେଉଅଛନ୍ତି |'

୧୩ଶ ପଦ—'ଶଚୀ ବୁଝି ଗୃହ ଯାଉଥିବାରୁ ସ୍ୱର୍ଗବେଶ୍ୟା ରମ୍ଭା କଦଳୀଗଛ ରୂପ ଧରି କଳାହ୍ବାରରେ ଏହାଙ୍କ ଜାନୁ ସଙ୍ଗେ ଜଡ଼ିତ ହୋଇଅଛି କି ?' (ପାଦ ଧରି ଅନୁନୟ କରୁଅଛି) |

୧୪ଶ ପଦ—'ପଦ୍ମପାଦରେ ଦେଖା ଯାଉଥିବା 'ଶିଞ୍ଜରେଖା' ଅଳତା ରେଖା ଦେଖି ମନେ ହୁଏ ସ୍ୱର୍ଗବେଶ୍ୟା ଶିଞ୍ଜରେଖା ଦୁଇପାଦ ଧରି ବନତ କରୁଅଛି କି ?"

| | |
|---|---|
| ବିମଳ ଶରୀରକୁ ଛୁଇଁ | ବନସ୍ତ୍ରୀ ଚନ୍ଦ୍ରକଳା ହୋଇ । ୧୫ । |
| ବାମପାର୍ଶ୍ୱରେ ଆଲିଙ୍ଗନ | ବଳୟ କଳାବତୀ ଘେନ । ୧୬ । |
| ବଶିଷ୍ଠ ସେ ସୁନ୍ଦରୀବୃନ୍ଦ | ବଦେ ଏ ପୁରନ୍ଦରୀ ପଦ । ୧୭ । |
| ବାଦୀ ତହିଁରେ କେହି ହୋଇ | ବଖାଣି କାନ୍ତେ କାହିଁପାଇଁ । ୧୮ । |
| ବୋଲେ ସେ ଗୌତମ ଅବଳା | ବୃଷାସଙ୍ଗମ ଶାପେ ଶିଳା । ୧୯ । |
| ବିଭୁକୁଳବଂଶୀ ରାମପଦ | ବାଜି ତା ପୂରୁବ ସମ୍ପଦ । ୨୦ । |
| ବଜ୍ରୀର ରସେ ବଡ ପ୍ରୀତ | ବଳାଇଥିବ ପୁଣି ମତ । ୨୧ । |
| ବିଜ୍ଞ ପ୍ରବୀଣ ସୁଦକ୍ଷିଣ | ବୋଇଲେ ଶୁଣି ତତକ୍ଷଣ । ୨୨ । |

---

୧୭ଶ ପଦ—ପୁରନ୍ଦରୀ—ଇନ୍ଦ୍ରାଣୀ ।
୧୯ଶ ପଦ—ବୃଷା—ଇନ୍ଦ୍ର । ଶିଳା—ପଥର ।
୨୦ଶ ପଦ—ବିଭୁକୁଳବଂଶୀ—ସୂର୍ଯ୍ୟବଂଶୀୟ ।
୨୧ଶ ପଦ—ବଜ୍ରୀର—ଇନ୍ଦ୍ରଙ୍କର ।

---

୧୫ଶ ପଦ—'ଚନ୍ଦ୍ରକଳା' ଚନ୍ଦ୍ରରେଖା ସଦୃଶ ନିର୍ମଳ ଶରୀରକୁ ଦେଖି ମନେ ହୁଏ ଚନ୍ଦ୍ରଲେଖା ନାମକ ସ୍ୱର୍ବେଶ୍ୟା ବନସ୍ତ୍ରୀ ପ୍ରକାଶ କରୁଅଛି କି ?

୧୬ଶ ପଦ—ବଳୟ କଳାବତୀ ଶାଢ଼ୀ ଦେହରେ ଜଡିତ ଥିବାରୁ ଜଣା ଯାଉଛି, କଳାବତୀ ନାମ୍ନୀ ସ୍ୱର୍ଗ ବେଶ୍ୟା ତାଙ୍କୁ ଆଲିଙ୍ଗନ କରିଅଛି ।

୧୭ଶ ପଦ—ସୁନ୍ଦରୀ ସମୂହରେ ବେଷ୍ଟିତା ହେବାରୁ ଏ ଇନ୍ଦ୍ରାଣୀ ପରିକି ଦିଶୁଅଛନ୍ତି ।

୧୮ଶ ପଦ—ଶିଷ୍ୟମାନଙ୍କ ମଧ୍ୟରୁ କେହି ପ୍ରତିବାଦ କରି କହିଲା, "ଶଚୀ କାନ୍ତଠାରେ ବିରୋଧୀ ହେବେ କାହିଁକି ?"

୧୯ଶ ପଦ—ପ୍ରଥମ ଶିଷ୍ୟ କହିଲା, "ଇନ୍ଦ୍ର ଗୌତମପତ୍ନୀ ଅହଲ୍ୟାଙ୍କ ସହିତ ପ୍ରୀତି କରିବାରୁ ଗୌତମଙ୍କ ଶାପରେ ଅହଲ୍ୟା ପାଷାଣ ହୋଇଥିଲେ ।"

୨୦ଶ ପଦ—"ସୂର୍ଯ୍ୟ ବଂଶରେ ଜନ୍ମ ହୋଇଥିବା ରାମଚନ୍ଦ୍ରଙ୍କ ପଦ ବାଜିବାରୁ ସେ ଅହଲ୍ୟା ପାପଶରୁ ମୁକ୍ତ ହୋଇ ପୂର୍ବରୂପ ପାଇଅଛନ୍ତି ।"

୨୧ଶ ପଦ—"ଇନ୍ଦ୍ରଙ୍କର ଅହଲ୍ୟାଠାରେ ବଡ ସ୍ନେହ ଥାଏ । ପୁଣି ସେ ଅହଲ୍ୟାଙ୍କୁ ମନ ବଳାଇଥିବେ; ତେଣୁ ଶଚୀ କୁପି ଗୃହ ଅଛନ୍ତି ।"

୨୨ଶ ପଦ—ଏହା ଶୁଣି ଜ୍ଞାନୀ ବାଳକଙ୍କ ପଣ୍ଡିତ ସୁଦକ୍ଷିଣ ( ଅଗସ୍ତ୍ୟ ଋଷିଙ୍କ ପୁତ୍ର ) ତତ୍କ୍ଷଣାତ୍ କହିଲେ—

ବିଦ୍ୟାଧର ନୋହେ ଏ ବେନି । ବୁଲେ ରାମ ଲକ୍ଷ୍ମଣ ଘେନି ।୨୩।
ବିଶ୍ୱମୋହନରୂପ ହୋଇ । ବିଧୁ ମଦନ ନ ଘଟଇ ।୨୪।
ବହେ କଳଙ୍କ ଏକ ଅଙ୍ଗେ । ବିଦେହ ଏକ ଶୋଭା ଭଙ୍ଗେ ।୨୫।
ବିଦେହ ରାଜସୁତା ସଙ୍ଗେ । ବହୁଳ ଲକ୍ଷ୍ମୀଙ୍କୁ କି ରଙ୍ଗେ ।୨୬।
ବପୁଏ ହେଲେ ଲକ୍ଷ୍ୟ ଶଚୀ । ବହନ୍ତା କାହୁଁ ଏତେ ରୁଚି ।୨୭।
ବର୍ଣ୍ଣନା କବିମାନଙ୍କର । ବହିବା ସୀତାଠାରେ ସାର ।୨୮।
ବ୍ୟର୍ଥ ଅନ୍ୟ ସ୍ତ୍ରୀଙ୍କ ଠାବ । ବୋଲିବା ନ ଥିଲା ନୋହିବ ।୨୯।
ବର୍ତ୍ତମାନରେ ଅଛି ଏହି । ବିଶ୍ୱେ ଖୋଜିଲେ ଆଉ ନାହିଁ ।୩୦।

---

୨୪ଶ ପଦ—ବିଧୁ—ଚନ୍ଦ୍ର । ମଦନ—କନ୍ଦର୍ପ ।
୨୫ଶ ପଦ—ବିଦେହ—ଦେହହୀନ ।
୨୭ଶ ପଦ—ରୁଚି—ଶୋଭା ।

---

୨୩ଶ ପଦ—"ଏ ସୁରୂପ ଦୁହେଁ ବିଦ୍ୟାଧର ନୁହନ୍ତି, ଲକ୍ଷ୍ମଣଙ୍କୁ ସଙ୍ଗରେ ଧରି ରାମଚନ୍ଦ୍ର ବଣେ ବୁଲୁଅଛନ୍ତି ।"

୨୪ଶ ପଦ—"ଏ ଦୁହିଙ୍କ ରୂପ ଜଗତକୁ ମୋହିତ କରୁଛି । ଚନ୍ଦ୍ର ଓ କନ୍ଦର୍ପର ଶୋଭା ଏହାଙ୍କ ସହିତ ତୁଳନୀୟ ହୋଇ ନ ପାରେ ।"

୨୫ଶ ପଦ—"ଏହାଙ୍କ ଶୋଭା ଦେଖି ଲଜ୍ଜିତ ହୋଇ ଚନ୍ଦ୍ର ଦେହରେ କଳଙ୍କ ବହିଅଛି ଓ କନ୍ଦର୍ପ ଅଦେହ ହୋଇଅଛି ।"

୨୬ଶ ପଦ—"ବିଦେହ ରାଜସୁତା ସୀତା ଏହାଙ୍କ ସଙ୍ଗରେ ଅଛନ୍ତି । ତୁମ୍ଭେ କୌତୁକରେ କି ଉପମା ଦେବ ? ( ତୁମ୍ଭେ ଶଚୀ ସହିତ ଯେ ଉପମା ଦେବ, ସେ ତୁଚ୍ଛ ହୁଏ । ଶଚୀ ଏହାଙ୍କୁ ଲକ୍ଷ୍ୟ ନୁହନ୍ତି ) ।"

୨୭ଶ ପଦ—"ଲକ୍ଷସଂଖ୍ୟକ ଶଚୀ ଗୋଟିଏ ଶରୀର ବହିଲେ ସୁଦ୍ଧା ଏପରି ଶୋଭା ପାଇବେ କି ?"

୨୮ଶ ପଦ—"କବିମାନଙ୍କର ବର୍ଣ୍ଣନା [ସୌନ୍ଦର୍ଯ୍ୟ ବର୍ଣ୍ଣନା] କେବଳ ସୀତାଙ୍କଠାରେ ସାର୍ଥକ ହୋଇଅଛି ।"

୨୯ଶ ପଦ "ଅନ୍ୟ ସ୍ତ୍ରୀମାନଙ୍କଠାରେ ସେ ବର୍ଣ୍ଣନାସବୁ ବୃଥା ଅଟେ । ଅତୀତରେ ନ ଥିଲା କି ଭବିଷ୍ୟତରେ ନ ହେବ ।"

୩୦ଶ ପଦ—'ବର୍ତ୍ତମାନ କେବଳ ଏହି ଏକା ଅଛନ୍ତି । ବିଶ୍ୱଯାକ ଖୋଜି ଆସିଲେ ବି ଆଉ ଗୋଟିଏ ମିଳିବ ନାହିଁ ।'

ବନଜାସନା ପଦ୍ମିନୀ ଯେତେ । ବାର ବାର ଜନ୍ମିବ ମର୍ତ୍ତ୍ୟେ ।୩୧।
ବହି ନ ଥିବ ନ ବହିବ । ଲଗ୍ନେହ ଏସବ ସ୍ୱଭାବ ।୩୨।
ବୋଲି ସେ ଅଶ୍ରମ ପ୍ରବେଶି । ବାରିଧିଚଳୁକଙ୍କୁ ଭେଟି ।୩୩।
ବସାଇ ପ୍ରଣିପତ୍ୟ ଷଣେ । ବଧିସବ ସେ ସବୁ ଜାଣେ ।୩୪।
ବରଣି ମାନସିକ ପୂଜା । ବୈଦର୍ଭୀ ପାଶେ ଜନକଜା ।୩୫।
ବଗଜ କଚ୍ଛାର ପାଶରେ । ବଲଚ ପଦ୍ମ ଯେ ପ୍ରକାରେ ।୩୬।
ବଦୁଷେ ପ୍ରଶଂସିତ ସଦା । ବଡ଼ ସୁନ୍ଦରୀ ଲୋପାମୁଦ୍ରା ।୩୭।
ବୈଦେହୀ ତା ଲୋପ କଲାଏ । ବାଛୁ ଅମୁଦ୍ରା ମୁଦ୍ରା ପାଏ ।୩୮।

---

୩୫ଶ ପଦ—ବୈଦର୍ଭୀ—ଅଗସ୍ତ୍ୟପତ୍ନୀ । ଜନକଜା—ସୀତା ।
୩୬ଶ ପଦ—କଚ୍ଛାର—ଦଇ । ବଲଚ—ପ୍ରସ୍ଫୁଟିତ ।

---

୩୧ ଓ ୩୨ଶ ପଦ—"ପଦ୍ମାସନା ଲକ୍ଷ୍ମୀ ମର୍ତ୍ତ୍ୟରେ ବାରମ୍ବାର ଯେଉଁ ସ୍ଥାନରେ ଯେତେଥର ଜନ୍ମିଛନ୍ତି ସେ ଏପରି ଶୋଭା ଧରି ନାହାନ୍ତି, କି ଧରିବେ ନାହିଁ । (ଲକ୍ଷ୍ମୀ ମଧ୍ୟ ଏପରି ସର୍ବାଙ୍ଗସୁନ୍ଦରୀ ରୂପ ଧରି ନ ପାରନ୍ତି ।)"

୩୩ଶ ପଦ—ପ୍ରଦକ୍ଷିଣ ରହି ଏହା କହିବା ସମୟରେ ରାମ, ଲକ୍ଷ୍ମଣ ଓ ସୀତା ଆଶ୍ରମରେ ପ୍ରବେଶ ହୋଇ, 'ବାରିଧି ଚଳୁକଙ୍କୁ' ଅଗସ୍ତ୍ୟ ଋଷିଙ୍କୁ ଭେଟିଲେ । (ଅଗସ୍ତ୍ୟ କମଣ୍ଡଳ ମଧ୍ୟସ୍ଥ ପାଣିରୁ ଜନ୍ମ ହୋଇଥିଲେ, ମାତ୍ର ସମୁଦ୍ରକୁ ଗଣ୍ଡୂଷରେ ଚଳୁରୂପେ ପାନ କରି ଦେଇଥିଲେ ) ।

୩୪ଶ ପଦ—ଅଗସ୍ତ୍ୟଙ୍କୁ ନମସ୍କାର କରିବା ସମୟରେ ମୁନି ତାଙ୍କୁ ଆସନରେ ବସାଇଲେ । ସେ ମୁନି ବିଧାତା ପରି ସବୁ କଥା ଜାଣିପାରନ୍ତି । (ବିଷ୍ଣୁ ରାମ ଅବତାରରେ ରାବଣ ବଧ ନିମିତ୍ତ ବନରେ ବୁଲି ଅଛନ୍ତି—ଏ କଥା ସେ ଜାଣି ପାରିଲେ । )

୩୫ଶ ପଦ—ତେଣୁ ଅଗସ୍ତ୍ୟ ମନ ମଧ୍ୟରେ ରାମଚନ୍ଦ୍ରଙ୍କୁ ପୂଜା କଲେ । ଅଗସ୍ତ୍ୟ ଋଷିଙ୍କ ପତ୍ନୀ ବୈଦର୍ଭୀଙ୍କ ପାଖରେ ଜାନକୀ ପ୍ରବେଶ ହେଲେ ।

୩୬ଶ ପଦ—କଚ୍ଛାର ସ୍ପଷ୍ଟ ପାର୍ଶ୍ୱରେ ପ୍ରସ୍ଫୁଟିତ ପଦ୍ମ ଯେପରି ଶୋଭାପାଏ, ଏ ସେହିପରି ଶୋଭା ପାଇଲେ । (ବୈଦର୍ଭୀ କଚ୍ଛାର ଓ ସୀତା ପ୍ରସ୍ଫୁଟିତ ପଦ୍ମ) ।

୩୭ଶ ପଦ—ସବୁକାଳରେ ଲୋପାମୁଦ୍ରା (ବୈଦର୍ଭୀଙ୍କ ଅନ୍ୟ ନାମ) ବଡ଼ ସୁନ୍ଦରୀ ବୋଲି ପଣ୍ଡିତମାନଙ୍କ ଦ୍ୱାରା ପ୍ରଶଂସିତା ହୋଇଥାନ୍ତି ।

୩୮ଶ ପଦ—'ଲୋପାମୁଦ୍ରା ବଡ଼ ସୁନ୍ଦରୀ' ଏହି କଥାକୁ ସୀତା ମୁଦ୍ରା ନ ଥିବା ଅର୍ଥାତ୍ ସଜ ନ ଥିବା ଏହାକୁ ବାଛି ଦେଇ ପ୍ରାୟ ଲୋପ କରି

ବିଧାତା ହୃଦ ସମ୍ପୁଟକୁ । ବୋଲିବା ଲୋପାମୁଦ୍ରା ତାକୁ ।୩୯।
ବପୁକୁ ଗୃହେ ଅପଣାର । ଦେଖିଲେ ସୀତା ମନୋହର ।୪୦।
ବିନାଶନ ରୂପଗର୍ବିତା । ବଢ଼ାଇ ଚଞ୍ଚୁ ହୋଇଲା ତା ।୪୧।
ବାର ବାର ସେ ଚୋଟାଅଳି । ଛନ୍ଦିତବଲ୍ଲୀ ପରେ ଢାଳି ।୪୨।
ବିମଳ ଜଳ ସ୍ଥଳ ଫୁଲ । ବିଦିତ ଗୁରୁ ଷଟ ମେଳ ।୪୩।
ବଗୁରେ ଏଦ୍ଧାରେ ରଞ୍ଜିତା । ବାଣୀ ପଦ୍ମ ମା ରସଭିତା ।୪୪।

---

୪୨ଶ ପଦ—ଚୋଳାଅଳି—ଚୋଳାରୂପ ଭ୍ରମର ।

---

ଦେଲେ । (ସୀତାଙ୍କ ସୌନ୍ଦର୍ଯ୍ୟ ନିକଟରେ ଲୋପାମୁଦ୍ରାଙ୍କ ସୌନ୍ଦର୍ଯ୍ୟ ହୀନପ୍ରଭ ହୋଇଗଲା) ।

୩୯ଶ ପଦ—ବିଧାତାଙ୍କ ହୃଦୟରୂପ ସମ୍ପୁଟରେ ଯେତେ ସୌନ୍ଦର୍ଯ୍ୟ ଥିଲା, ସେ ସବୁ ଲୋପ କରି ଦେଲେ । ତେଣୁ ତାଙ୍କୁ ଲୋପାମୁଦ୍ରା କୁହାଯାଏ । (ବିଧାତାର ଯେତେ ଶୋଭା ଲାବଣ୍ୟ ଥିଲା, ସେ ସମସ୍ତ ନେଇ ବିଧାତା ଲୋପାମୁଦ୍ରାଙ୍କୁ ନିର୍ମାଣ କରିଥିଲେ) ।

୪୦ଶ ପଦ—ସେ ଲୋପାମୁଦ୍ରା ନିଜ ଦେହକୁ ଚାହିଁ ପୁଣି ସୀତାଙ୍କ ସୌନ୍ଦର୍ଯ୍ୟକୁ ନିରୀକ୍ଷଣ କଲେ ।

୪୧ଶ ପଦ—ସୀତାଙ୍କ ଶୋଭା ଦେଖି ଲୋପାମୁଦ୍ରାଙ୍କର ସୌନ୍ଦର୍ଯ୍ୟ ଗରିମା ମନରୁ ବିନାଶ ହେଲା ।

୪୨ଶ ପଦ—ସେ ଲୋପାମୁଦ୍ରା ବାରମ୍ବାର ନିଜର ନେତ୍ର ଚୋଳାରୂପ ଭ୍ରମରକୁ ସୀତା ରୂପ ଅପୂର୍ବ ଲତା ଉପରେ ଢାଳିଲେ । (ସୀତାଙ୍କୁ ବାରମ୍ବାର ଚାହିଁଲେ) ।

୪୩ଶ ପଦ—(ସୀତା ଅପୂର୍ବ ଲତା କିପରି ହେଲେ ?) ନିର୍ମଳ ଜଳ ସମ୍ବନ୍ଧୀୟ ଚାରିଗୋଟି ଓ ସ୍ଥଳ ସମ୍ପର୍କୀୟ ଛଅଗୋଟି ଫୁଲ ଏକତ୍ରିତ ହୋଇ ସେ ବିଚିତ୍ର ଲତାରେ ଅର୍ଥାତ୍ ସୀତାଙ୍କ ଦେହରେ ବିକଶିତ ହୋଇଅଛି । [ଜଳ ସମ୍ବନ୍ଧୀୟ ଚାରିଗୋଟି ଫୁଲ, ଯଥା—ମୁଖ—ଶ୍ୱେତପଦ୍ମ । ନେତ୍ର - ନୀଳୋତ୍ପଳ, ଚରଣ—ରକ୍ତପଦ୍ମ, ହାସ୍ୟ—କହ୍ଲାର । ସ୍ଥଳ ସମ୍ପର୍କୀୟ ଛଅଗୋଟି ଫୁଲ; ଯଥା—ଅଧର—ବନ୍ଧୁଲୀ, ନାସା—ତିଳ ଫୁଲ, ଅଙ୍ଗୁଳି—ଚମ୍ପକ କଳିକା, କାନ୍ତି—କେତକୀ, ଦନ୍ତ—କୁନ୍ଦ କଳିକା, ନଖ—ଜାଈ କଳିକା) ।

୪୪ଶ ପଦ—ଲୋପାମୁଦ୍ରା ସୀତାଙ୍କୁ ଦେଖି ବିଚାର କଲେ, "ମୁଁ ଦେଖୁଛି, ଏହି ଜେମା ନାରୀକୁଳକୁ ଗୌରବିତା ନାମରେ ରଞ୍ଜିତ କରିବା ଉଚିତ ।"

ବିନ୍ଧ୍ୟଭୂଭେଦକ ସ୍ୱୟଂ ତହିଁ । ବ୍ରହ୍ମାସ୍ତ୍ର ଚାପ ତୂଣ ଦେଇ ।୪୫।
ବୋଲେ ଏ ଶରେ ରାବଣର । ବଧ କର ରଘୁବୀର ।୪୬।
ଅନ୍ତକାନଳୁଁ ଅଳ୍ପ ତେଜେ । ଅଛି ଏ ନାରାଚସମାଜେ ।୪୭।
ଅଜଗବା ତ୍ରିପୁରେ ଭେଦିବା । ବୃଷାଙ୍କ ଧନୁ ଜଳିଥିବା ।୪୮।
ବାଣୀଶନକୁ ତଥା ଦେଲେ । ବଜ୍ରାଗ୍ନି ଦହଇ କି ଘନ ? ।୪୯।
ଅକ୍ଷୟ୍ୟ ତୂଣ ଶୁଭ ଶର । ବାଣ ଅନ୍ତ ଥିଲେ ନ ସର ।୫୦।

---

୪୫ଶ ପଦ—ବିନ୍ଧ୍ୟଭୂଭେଦ—ଅଗସ୍ତ୍ୟ । ଚାପ—ଧନୁ । ତୂଣ—ଶରଦ୍ରୁଣା ।

---

୪୫ଶ ପଦ—'ବିନ୍ଧ୍ୟଭୂଭେଦ' ଅଗସ୍ତ୍ୟ ଋଷି (ବିନ୍ଧ୍ୟ ପର୍ବତ ଦିନକୁ ଦିନ ବଢ଼ୁଥିବାରୁ ଅଗସ୍ତ୍ୟ ତାକୁ ଭୁଲାଇ ନମ୍ର ଅବସ୍ଥାରେ ରଖି ଦାକ୍ଷିଣାତ୍ୟକୁ ଯାଇଥିଲେ । ସେ ଫେରିଆସିଲେ ବିନ୍ଧ୍ୟ ପୁଣି ବଢିବାର କଥା ଥିଲା । ମାତ୍ର ସେ ଆଉ ନ ଫେରିବାରୁ ବିନ୍ଧ୍ୟ ବଢି ନ ପାରି ସେହିପରି ରହିଲା) ରାମଚନ୍ଦ୍ରଙ୍କୁ ତାଙ୍କ ଆଶ୍ରମରେ ରଖାଇଲେ ଓ ବ୍ରହ୍ମଶର, ଧନୁ, ତୂଣୀର ଦେଇ କହିଲେ,—

୪୬ଶ ପଦ—"ହେ ରଘୁବୀର ! ଏ ଶରଦ୍ୱାରା ରାବଣର ବିନାଶ ସାଧନ କର ।"

୪୭ଶ ପଦ—"ଏ ଶରର ତେଜ କାଳବହ୍ନିର ତେଜଠାରୁ ଅଧିକ ଓ ଏହା ଶରସମୂହରେ ଶ୍ରେଷ୍ଠ ଅଟେ ।"

୪୮ଶ ପଦ—"ମହାଦେବ ତ୍ରିପୁରାସୁର ବଧ କରିବା ମାନସରେ ଏ ଶରକୁ ଅଜଗବ ଧନୁରେ ବସାଇଲେ, ତାହା ଜଳିଗଲା । ତେଣୁ ଶିବ ତାହା ବ୍ରହ୍ମାଙ୍କୁ ଦେବାରୁ ବ୍ରହ୍ମା ତୁମ୍ଭଙ୍କୁ ଦେବା ନିମନ୍ତେ ମୋ ପାଖରେ ରଖାଇଥିଲେ ।"

୪୯ଶତ ପଦ—ତାହେଲେ ରାମ କହିବେ, 'ଏ ଶର ମହାଦେବଙ୍କ ଧନୁକୁ ଜାଳି ଦେଇଛି, ମୋର ଏ ଧନୁକୁ ଜାଳି ନ ଦେବ କିଆଁ ?' ସେଥିପାଇଁ ଅଗସ୍ତ୍ୟ କହୁଛନ୍ତି, "ଯେପରି ବଜ୍ରାଗ୍ନି ମେଘରେ ଥାଇ ମେଘକୁ ବାଧ୍ୟ କରିପାରେ ନାହିଁ, ସେହିପରି ଏ ଶର ଏ ଧନୁକୁ ପୋଡିଦେଇ ନ ପାରେ ।"

୫୦ଶତ୍ ପଦ—"ଏ ଅକ୍ଷୟ ତୂଣରୁ ଯେତେ ଶର ବାହାର କରି ଦେଲେ ସୁଦ୍ଧା ତା ଭିତର ଖାଲି ପଡ଼ି ଶେଷ ହେବ ନାହିଁ ।"

ବନରେ ପଞ୍ଚବଟୀ ସାର । ବେଶ୍ମ ତହିଁରେ ଯାଇ କର ।୫୧।
ବାଟଦେଖାଳୁ ଶିଷ୍ୟେ ଦେଲେ । ବଙ୍କସ୍ଥ ସେ ସ୍ଥାନରେ କଲେ ।୫୨।
ବିଲୋକି ନଦୀ ଗୋଦାବରୀ । ତାପାକି ଶୁକ୍ଳ-ଅଭିସାରୀ ।୫୩।
ବିଷଦ ଫେନ ପାଟ ଶାଢ଼ୀ । ବାନ୍ଧି ହୋଇଛି ଫୁଲ ଗଢ଼ି ।୫୪।
ବଣ୍ଣିବ ଦଶା ସ୍ଥିତ ହୋଇ । ଖାଣ ବବକୁ ଟେକି ଦେଇ ।୫୫।
ଝଡ଼େଶେଷ କୁମୁଦ ଛାଟବ । ଝସକେ ରଙ୍ଗତ ଛାଟବ ।୫୬।
ଭୃଙ୍ଗ ଉଠଇ ଚକ୍ର ବସି । ବାସ ଖଟି ବ ସ୍ତନ ଦଶି ।୫୭।

---

୫୧ଶତ୍ ପଦ—ବେଶ୍ମ—ଗୃହ ।

---

୫୧ଶତ୍ ପଦ—"ବନମାନଙ୍କ ମଧ୍ୟରେ ପଞ୍ଚବଟୀ ଶ୍ରେଷ୍ଠ ଅଟେ । ତୁମ୍ଭେ ଯାଇ ସେହି ବନରେ ଗୃହ କରି ରହ ।"

୫୨ଶତ୍ ପଦ—ଅଗସ୍ତ୍ୟ ଏହା କହିସାରି ବାଟ ଦେଖାଇ ଦେବାପାଇଁ ଶିଷ୍ୟମାନଙ୍କୁ ତାଙ୍କ ସହିତ ପଠାଇଲେ । ରାମ, ଲକ୍ଷ୍ମଣ, ସୀତା ପଞ୍ଚବଟୀରେ ପହଞ୍ଚିଲେ ।

୫୩ଶତ୍ ପଦ—ସେଠାରେ ଗୋଦାବରୀ ନଦୀକୁ ଦେଖି, 'ଏ ଶୁକ୍ଳାଭିସାରଣୀ ନାୟିକା କି ?' ଏପରି ମନେ କଲେ [ଗୋଦାବରୀର ଜଳ ଶୁଭ୍ର ଓ ସ୍ୱଚ୍ଛ]।

୫୪ଶତ୍ ପଦ—ଶୁକ୍ଳାଭିସାରିଣୀ ନାୟିକା ଫୁଲଧଡ଼ି ଯୁକ୍ତ ଶୁକ୍ଳ ପାଟ ଶାଢ଼ୀ ପିନ୍ଧିଥାଏ, ଏ ନଦୀ ତୀରରେ ଥିବା ବୃକ୍ଷମାନଙ୍କର ଫୁଲରୂପ ଧଡ଼ି ପଡ଼ିଥିବା ଶୁକ୍ଳ ଫେନ ରୂପ ପାଟଶାଢ଼ୀ ପିନ୍ଧିଅଛି ।

୫୫ଶତ ପଦ—ଅଭିସାରିଣୀ ନାୟିକା କାମପୀଡ଼ାରେ ବ୍ୟାକୁଳା ହୋଇଥିବା ହେତୁ ଭୂଷଣ ଭାର ସହି ନ ପାରି ହସ୍ତ ଏପାଖ ସେପାଖ ଦୋହଲାଇବା ପରି ଗୋଦାବରୀ ଢେଉଁଙ୍କ ଖେଳରେ ମାତି ଲହରୀ ରୂପ କରକୁ ଦୋହଲାଉଅଛି ।

୫୬ଶତ୍ ପଦ—ଶୁକ୍ଳାଭିସାରିଣୀର ରୂପା କଙ୍କଣ ସଦୃଶ ଗୋଦାବରୀର କଇଁଫୁଲ ସବୁ ଦିଶୁଅଛନ୍ତି ।

୫୭ଶତ୍ ପଦ—ଚକ୍ରବାକ ପକ୍ଷୀ ଜଳରେ ବୁଡ଼ି ଉଠି ପଡ଼ୁଥିବାବେଳେ ବୋଧ ହେଉଛି, ଅଭିସାରିକା ଶୀଘ୍ର ଗତିରେ ଗମନ କରିବା ହେତୁ ଦେହରୁ ବସ୍ତ୍ର ଖସିଯିବାରୁ ସ୍ତନମଣ୍ଡଳ ଦେଖାଯାଉଅଛି କି ?

ବହିବ ପବନେ ପୁଳୀନ । ବିସ୍ଫୁଟ ଉରୁ ଦରଶନ ।୫୮।
ବସ୍ତ୍ରେ କ୍ରୀଡେ ହଂସଶ୍ରେଣୀ । ବାନ୍ଧନ୍ତି ନଃସ୍ୱନ କିଙ୍କିଣୀ ।୫୯।
ବାରିଜନେତ୍ରେ ଭୃଙ୍ଗ ଖେଳା । ବିଲସେ କି ଚଞ୍ଚଳ ଡୋଳା ।୬୦।
ବଣ ଘନରସରେ ଅନ୍ତ । ଭୁଡ଼ାଇ କୁ [କୂ]ଳ ସଦା ଗନ୍ତ ।୬୧।
ବଂଶପୀମାନେ ବେଢ଼ା ପାଶେ । ଏସେ୍ୟ ବାଧା କରନ୍ତେ ସେ ।୬୨।
ବିବିଧ ଯୋନ ଦ୍ୱିଜେ ବହୁ । ବୋଲନ୍ତି ଗଉତମୀ କିହ ।୬୩।

---

୫୮ଶତ୍ ପଦ— ପୁଳୀନ—ନଦୀ ମଧ୍ୟସ୍ଥିତ ବାଲିକୂଡ଼ ଚଉଢ଼େଣ ।
୫୯ତମ ପଦ—ବସ୍ତ୍ରେ—ନୀଃଶବ୍ଦରେ । ନିଃସ୍ୱନ—ସ୍ୱନହୀନ ।
୬୧ତମ ପଦ– ଘନରସ—ନବଡ଼ ଶୃଙ୍ଗାର ରସ, ବହୁଜଳ ।
୬୩ତମ ପଦ—ବିବିଧଯୋନ—ନାନାଜାତ ବା ନାନାପ୍ରକାର । ଦ୍ୱିଜ—ପକ୍ଷୀ, ବ୍ରାହ୍ମଣ ।

---

୫୮ଶତ୍ ପଦ—ଶୀଘ୍ର ଗମନ ହେତୁ ଅଭିସାରିକାର ସ୍ଥୂଳ ଜଙ୍ଘ ବେଳେ ବେଳେ ଦେଖାଗଲା ପରି ନଦୀ ମଧ୍ୟସ୍ଥ ବାଲିକୂଡ଼ ପବନ ଯୋଗେ ହେଉଥିବା ଲହରୀଦ୍ୱାରା ବେଳେ ବେଳେ ଅଚ୍ଛନ୍ନ ହୋଇ ପୁଣି ଦେଖାଯାଉ ଥାଏ ।

୫୯ତମ ପଦ—ଅଭିସାରିକା ସ୍ୱନହୀନ କିଙ୍କିଣୀ କଟିରେ ବାନ୍ଧି ଯେମନ ଚଲୁ ପରି ନଦୀର ଜଳରେ ହଂସମାନେ ନୀଃଶବ୍ଦରେ କ୍ରୀଡ଼ା କରୁଅଛନ୍ତି ।

୬୦ ତମ ପଦ—ଅଭିସାରିକାର ନେତ୍ରରେ ଡୋଳା ଚଞ୍ଚଳଗତିରେ ଖେଳା କଲାପରି ନଦୀ ଜଳରେ ଫୁଟିଥିବା ପଦ୍ମଫୁଲରେ ଭ୍ରମରମାନେ ଚଞ୍ଚଳ ଗତିରେ କ୍ରୀଡ଼ା କରୁଅଛନ୍ତି ।

୬୧ତମ ପଦ—ଅଭିସାରିକା ନବଡ଼ ଶୃଙ୍ଗାର ରସରେ ଅନ୍ତଃସ୍ଥ ବଣ ହୋଇଥିବାରୁ କୁଳ ମର୍ଯ୍ୟାଦା ଲଙ୍ଘନ କରି ନାୟକ ପାଖକୁ ଗମନ କଲା ପ୍ରାୟ, ଗୋଦାବରୀ ବହୁ ଜଳରେ ପୂର୍ଣ୍ଣ ହୋଇ ଉଭୟ କୂଳ ବୁଡ଼ାଇ ସର୍ବଦା ଗତି କରୁଅଛି ।

୬୨ତମ ପଦ—ଅଭିସାରିକାକୁ ତା ପାଖରେ ଥିବା ଅସତୀ ସଖୀମାନେ ଯେପରି ବାରଣ କରନ୍ତି ନାହିଁ, ସେହିପରି ନଦୀର ଦୁଇ ତୀରରେ ଥିବା 'ବଂଶପି' ବୃକ୍ଷମାନେ ନଦୀର ଗତିକୁ ବାଧା ଦେଉ ନାହାନ୍ତି ।

୬୩ତମ ପଦ—ନଦୀ ତୀରସ୍ଥ ବୃକ୍ଷମାନଙ୍କରେ ଥିବା 'ବିବିଧଯୋନ' ବ୍ରାହ୍ମଣରୂପ ନାନାପ୍ରକାର ପକ୍ଷୀମାନେ କହୁଅଛନ୍ତି, 'ଗୌତମୀ—ଗୌତମ ଋଷିଙ୍କର କନ୍ୟା ପରା ?' ( ଅର୍ଥାତ୍ ବ୍ରାହ୍ମଣ କନ୍ୟା ହୋଇ ଅସତ୍ ପଥରେ ଯାଉଅଛୁ । )

ବହୁ ରସ ଶୃଙ୍ଗେ ନ ଭୁଲ । ବାର୍ଦ୍ଧି ଲବଣୀୟା ନ ଭଜ ।୭୪।
ଅହୃଲ୍ଲପଣି ଭାବେ ପ୍ରୀତ । ଅଧ୍ୱଂସ ହେବ ସ୍ୱାଦୁ ଜାତ ।୭୫।
ବର୍ତ୍ତନା କ ଯେଜନକ ତ'ର । ଅଭେଦ୍ୟ କାମ ଶଳର ।୭୬।
ରୂପେ ରୂପକଶ୍ଲେଷ ମିଶା । ବୁଝ କବିରଚନା ଭାଷା ।୭୭।
ବଢ଼ାଇ ଶୋଭା ବନ ପୂର୍ଣ୍ଣି । ଅଭିର୍ଣ୍ଣି ତରୁ କି ତରୁଣୀ ।୭୮।
ରମ୍ୟା ନୂତନ୍ତ ଫଳବତୀ । ବୋଧି ସମସ୍ତେ କାନ୍ତ ପ୍ରୀତ ।୭୯।

---

୭୪ତମ ପଦ—ବାର୍ଦ୍ଧି—ସମୁଦ୍ର ।
୭୬ତମ ପଦ—କାମଶଳ—ହଂସପକ୍ଷୀ ।

---

୭୪ତମ ପଦ—"ବହୁଜଳରୂପ ଶୃଙ୍ଗାର ରସରେ ପୂର୍ଣ୍ଣ ହୋଇ ଅଛ ପୁରୁଷ ରୂପୀ ସମୁଦ୍ର ଠାରେ ଭୁଲି ଯାଉଅଛ ? ସମୁଦ୍ର ଲୁଣିଆ—ଏହା ବିଚାର କରୁ ନାହଁ ?" (ତୋର ମଧୁର ଜଳ ନେଇ ସମୁଦ୍ରର ଲବଣ ଜଳରେ ମିଶାଇ ଦେଉଅଛୁ କାହିଁକି ?)

୭୫ତମ ପଦ—"ତାହା ସହିତ ପ୍ରୀତି କଲାପଣି ତୋହର ମଧୁର ଗୁଣ ରୂପ ଉତ୍ତମ ଜାତି ଅର୍ଥାତ୍ କୁଳ ମର୍ଯ୍ୟାଦା ବିନାଶ ହୋଇଯିବ । (ତୋର ଜଳ ଲୁଣିଆ ହୋଇଯିବ ।"

୭୬ତମ ପଦ—ଅଭେଦ୍ୟକାର କବଚ ଧାରଣରେ ବଦ୍ଧ ହୋଇଥାଏ, ତେଣୁ ସେ କାହାର ନିଷେଧ ବାକ୍ୟ ମାନେ ନାହିଁ । ସେହିପରି କାମପକ୍ଷୀ, ହଂସଜାତି ପକ୍ଷୀ ଗୋଦାବରୀ ଜଳକୁ ଭେଦ କରି ଭିତରୁ ଅଛନ୍ତି ଏବଂ ନଦୀ ପ୍ରତିବନ୍ଧକ ରହିତ ହୋଇ ଗତି କରୁଅଛି ।

୭୭ ତମ ପଦ—ହେ ପଣ୍ଡିତମାନେ ! ରୂପକ ଶ୍ଲେଷ ମିଶା କବିଙ୍କ ରଚନା ବୁଦ୍ଧିରୁ ବୁଝ ।

୭୮ତମ ପଦ—ପଞ୍ଚବଟୀ ବର୍ଣ୍ଣନର ସନ୍ତୋଷକୁ ବର୍ଦ୍ଧନ କରେ । ତହିଁରେ ପୂର୍ବ ରହିଥିବା ବୃକ୍ଷମାନେ ପ୍ରତ୍ୟେକ ଗୋଟିଏ ଗୋଟିଏ ତରୁଣୀ ସ୍ତ୍ରୀ ପରି ।

୭୯ତମ ପଦ—ତରୁଣୀମାନେ ପୁଷ୍ପବତୀ ହେବା ସମୟରେ ପତିଙ୍କୁ ରତିଦାନ ପୂର୍ବକ ତାଙ୍କର ମନ ସନ୍ତୋଷ କଲେ ଯେପରି ବନ୍ଧ୍ୟା ନ ହୋଇ ପୁତ୍ର କନ୍ୟା ପ୍ରାପ୍ତ ହୁଅନ୍ତି, ସେହିପରି ତରୁମାନେ ପୁଷ୍ପିତା ହେବା କାଳରେ (ବସନ୍ତ ଋତୁରେ) ତାଙ୍କ ପତି ବସନ୍ତ ସମୟର ତୋଷଦାତା ହୋଇ ବନ୍ଧ୍ୟାତ୍ୱ ନ ପାଇ ଫଳବତୀ ହୋଇଅଛନ୍ତି । (ବସନ୍ତର ସମାଗମରେ ବୃକ୍ଷସବୁ ପୁଷ୍ପିତ ଓ ଫଳରେ ଭୂଷିତ ହୋଇ ଅଛନ୍ତି ।)

ବ୍ୟଭିଚାରିସ ସସ୍ୟ ଶୋକ । ବଲ୍ଲୀ ଧବ ସମୀପେ ରହି ।୭୦।
ବଣାଇ କୁସୁମ ବିକାଶେ । ଅଳି ଯେ ସେ ମଧୁପେ ରସେ ।୭୧।
ବାସ ପବନ ଦଣ୍ଡପାଣି । ବଳେ ହରଇ ବୋଲି ଦୋଷୀ ।୭୨।
ବନ୍ଦ୍ୟ ଚନ୍ଦନ ନଷ୍ଟହୁଞ୍ଜୀ । ଅହେ ସେ ଭୁଜଙ୍ଗରେ ପ୍ରୀତି ।୭୩।
ବିଦେଶୀ ପ୍ରାପ୍ତ ପଶୁପନ୍ତି । ଗତ ଅଗତ ହୁଅନ୍ତି ।୭୪।
ବିଦିତ ଗୁଳ୍ମ ସ୍ୱୟଂଦୂତୀ । ବିଶ୍ରାମ ଏଠାରେ କରନ୍ତି ।୭୫।
ବସି ଯା କପୋତ ସସ୍ୱନ । ବଚନ କରି ତାହା ଯେନ ।୭୬।

---

୭୨ ତମ ପଦ—ଦଣ୍ଡପାଣୀ—ରାଜା ।
୭୫ ତମ ପଦ—ଗୁଳ୍ମ—କ୍ଷୁଦ୍ର ବୃକ୍ଷ ।

---

୭୦ ତମ ପଦ—ବ୍ୟଭିଚାରିଣୀ ସ୍ତ୍ରୀ ନାୟକ ପାଖରେ ଶୋକ ପାଇଲା ପରି ଲତାସବୁ ଧବ ବୃକ୍ଷ ନିକଟରେ ଶୋକ ପାଇ ଅଛନ୍ତି ।

୭୧ତମ ପଦ—ବ୍ୟଭିଚାରିଣୀ ସ୍ତ୍ରୀ ପୁଷ୍ପବତୀ ହୋଇଛି ବୋଲି କହି ନିଜ ସ୍ୱାମୀକୁ ଠକାଏ ଓ ବିଶେଷ ଆଳାପ କରୁଥିବା ମଦ୍ୟପ ପୁରୁଷଠାରେ ରସେ । ତଦ୍ରୂପ ଲତା ପୁଷ୍ପିତା ସମୟରେ ବସନ୍ତ କାନ୍ତକୁ ଠକାଇ 'ମଧୁପ' ଭୃଙ୍ଗର ଆଳାପରେ ରସି ତା ସଙ୍ଗେ କ୍ରୀଡ଼ା କରୁଅଛି ।

୭୨ତମ ପଦ—ରାଜା ଯେପରି ଦୋଷୀ ବୋଲି ବ୍ୟଭିଚାରିଣୀର ଗୃହ ଲୁଟିକରି ସମ୍ପତ୍ତିସବୁ ନେଇଯାଏ, ପବନ ସେହିପରି ବଳାତ୍କାରରେ ଲତାର ପୁଷ୍ପବାସନାକୁ ହରଣ କରି ନେଉଅଛି ।

୭୩ତମ ପଦ—ଅସତୀ ଦୂତୀ ସଖୀ କାର୍ଯ୍ୟରେ ପ୍ରେରିତ ହୋଇ ପୁଣି ନିଜେ ଲମ୍ପଟ ପୁରୁଷ ସହିତ ରତ କଲାପରି, ଚନ୍ଦନବୃକ୍ଷ ସର୍ପ ସହିତ ପ୍ରୀତି କରୁଅଛି ।

୭୪ତମ ପଦ—ପଶୁସମୂହ ବିଦେଶୀ ଲୋକଙ୍କ ପରି ଗତାଗତ କରୁଅଛନ୍ତି ।

୭୫ ଓ ୭୬ତମ ପଦ—ସ୍ୱୟଂ ଦୂତୀ ( ଯେଉଁ ନାୟିକା ନିଜେ ଦୂତୀର କାର୍ଯ୍ୟ କରେ ) ଯେପରି ନାୟକକୁ 'ଏଠାରେ ବିଶ୍ରାମ କର,' ବୋଲି କହନ୍ତି; ସେହିପରି ଗୁଳ୍ମମାନେ ତହିଁ ଉପରେ ବସିଥିବା କପୋତର ସ୍ୱନ ଛଳରେ ବିଦେଶୀଙ୍କୁ କହୁଅଛନ୍ତି—ଏଠାରେ ବସ ।

ବିହଙ୍ଗ ସ୍ତନ ତରୁ ଝଳା । ଘନିଷ୍ଠ ପତ୍ର ପତ୍ରାବଳୀ ।୭୭।
ବନ୍ଦ୍ୟା ଦୂତୀ ରୋମ ବ୍ରଜ । ବିକାଶେ ସୁମନ ପ୍ରମୋଦ ।୭୮।
ବିଧାନ ବଇଣ ଆଶ୍ରମ । ବସନ୍ତି ଲକ୍ଷ୍ମଣ ସୀତା ରାମ ।୭୯।
ବାସବରେ ଯେ ପ୍ରଶଂସିତା । ବିଖ୍ୟାତ ଜଟାୟୁ ନାମ ତା ।୮୦।
ବିବସ୍ୱାନବଂଶରେ ପ୍ରୀତ । ବୈଦେହୀ ରକ୍ଷଣେ ସମ୍ମତ ।୮୧।
ବିଯୁଗ୍ମାଣୀ ପଦେ ଛାନ୍ଦ ପ୍ରାନ୍ତ । ବୀରବର ଭଞ୍ଜର କୃତ ।୮୨।

---

୭୭ତମ ପଦ—ଘନିଷ୍ଠ—ସାନ୍ଦ୍ର, ନିବିଡ଼ । ପତ୍ରାବଳୀ—କସ୍ତୁରୀ, ଗୈରିକାଦିର ରଚନା ।

୭୮ତମ ପଦ—ବନ୍ଦ୍ୟ—ପ୍ରଶଂସନୀୟ । ସୁମନ—ପୁଷ୍ପ, ଆନନ୍ଦ ।

୮୦ତମ ପଦ—ବାସବରେ—ଇନ୍ଦ୍ରଙ୍କ ଦ୍ୱାରା ।

୮୧ତମ ପଦ—ବିବସ୍ୱାନବଂଶୀ—ସୂର୍ଯ୍ୟବଂଶୀୟ ।

---

୭୭ତମ ପଦ—ସେହି ବୃକ୍ଷମାନଙ୍କ ଉପରେ ବସିଥିବା ପକ୍ଷୀମାନେ ସ୍ୱୟଂଦୂତୀ ନାୟିକାର ସ୍ତନ ଓ ବୃକ୍ଷମାନଙ୍କର ନିବଡ଼ପତ୍ର ସମୂହ ସ୍ତନ ଉପରେ ଲିଖିତ ପତ୍ରାବଳୀପରି ଶୋଭା ପାଉଅଛି ।

୭୮ତମ ପଦ—ବୃକ୍ଷ ମଧ୍ୟସ୍ଥ ପତ୍ରାଚ୍ଛାଦିତ ବୃକ୍ଷ ସ୍ୱୟଂଦୂତୀର ପ୍ରଶଂସନୀୟ ରୋମପରି ହୋଇଅଛି । ସ୍ୱୟଂଦୂତୀ ଆନନ୍ଦ ହେତୁ ପୁଲକିତ ହେଉଥିବା ବୃକ୍ଷ କଣ୍ଟକମୟ ଓ କଳଭାବରେ ରୋମାଞ୍ଚିତ ହୋଇଅଛି ।

୭୯ତମ ପଦ—ସେ ବନରେ ଆଶ୍ରମ ନିର୍ମାଣ କରି ରାମ, ଲକ୍ଷ୍ମଣ ଓ ସୀତା ରହିଲେ ।

୮୦ ଓ ୮୧ତମ ପଦ—ସେଠାରେ ବାସ କରୁଥିବା ଇନ୍ଦ୍ର ଦ୍ୱାରା ପ୍ରଶଂସିତ ବିଖ୍ୟାତ ଜଟାୟୁ ପକ୍ଷୀ ସୂର୍ଯ୍ୟବଂଶୀୟ ରାମଙ୍କ ସହିତ ପ୍ରୀତି କଲା ଏବଂ ସୀତାଙ୍କୁ ଜଗି ରହିବା ପାଇଁ ସମ୍ମତ ହେଲା ।

୮୨ତମ ପଦ—ବୀରବର ଭଞ୍ଜଙ୍କ କୃତ ଏ ଛାନ୍ଦ ବିଯୁଗ୍ମାଣୀ ପଦରେ ଶେଷ ହେଲା ।

---

# ତ୍ରୟୋବିଂଶ ଛାନ୍ଦ

## ରାଗ—ଚନ୍ଦ୍ରାଦେଶାକ୍ଷ

ବୈଦେହୀ ଶ୍ରୀରାମ କି ସେ କରଣୀ କରି ।
ବନୋଦ ନଦୀରେ କୁଞ୍ଜକୁଟୀରେ କରି । ୧ ।
ବହୁଳ ମାନସ ପ୍ରେମମଦ ଅଳସା ।
ଜଳଜାତ ପଦ୍ମ କରେ ପରାଗଭୂଷା । ୨ ।
ଭ୍ରମିତେ ବନବିହାର ଲଡ଼ା ଭଞ୍ଜିନେ ।
ବସନ୍ତି ଶିଳାମାନରେ ଅତି ରଞ୍ଜିନେ । ୩ ।

---

୧ମ ପଦ—କରି କରଣୀ—ହସ୍ତୀ ହସ୍ତିନୀ । ବନୋଦ—କ୍ରୀଡ଼ା ।

୩ୟ ପଦ—ଲଡ଼ା—ବୃକ୍ଷଶାଖା ।

---

# ତ୍ରୟୋବିଂଶ ଛାନ୍ଦ

୧ମ ପଦ—ହସ୍ତୀ ଓ ହସ୍ତୀଙ୍କ ଦୁହେଁ ନଦୀ ଓ କୁଞ୍ଜ ମଧ୍ୟରେ କେଳି କଲ ପରି ରାମ ଓ ସୀତା କେତେବେଳେ ଗୋଦାବରୀ ନଦୀରେ ଓ କେତେବେଳେ କନକ କୁଞ୍ଜ ମଧ୍ୟରେ କ୍ରୀଡ଼ା କଲେ ।

୨ୟ ପଦ—ହସ୍ତୀ ଓ ହସ୍ତିନୀ ଯେପରି କେତେବେଳେ ପ୍ରେମ ରସରେ ଲୋଲୁପଚିତ୍ତ ହେତୁରୁ ବହ୍ୱଳ ହୋଇ ଜଳରେ ବୁଡ଼ିବା ହେତୁ ଜଳ ବିନ୍ଦୁରେ ଶୋଭିତ ଓ କେତେବେଳେ ଧୂଳିରେ ଗଡ଼ି ଧୂଳି ଭୂଷିତ ହୁଅନ୍ତି, ସେହିପରି ରାମ ଓ ସୀତା ଶୃଙ୍ଗାର ରସ ଲୋଲୁପ ହେତୁରୁ ସମାନ ଭାବରେ ବହ୍ୱଳ ହୋଇଥାନ୍ତି । ସେମାନଙ୍କ ହସ୍ତରେ ପଦ୍ମ ଭାଙ୍ଗିଥିବା ହେତୁ ଶୋଭା ପାଉଥାନ୍ତି ଓ କ୍ରୀଡ଼ା କାଳରେ ପୁଷ୍ପ ରେଣୁରେ ଭୂଷିତ ହେଉଥାନ୍ତି ।

୩ୟ ପଦ—ହସ୍ତୀ ଓ ହସ୍ତିନୀ ନଦୀପୁରେ ବୃକ୍ଷ ଶାଖାମାନ ଭାଙ୍ଗି ଅରଣ୍ୟରେ ବିହାର କରନ୍ତି । ସେହିପରି ରାମ ସୀତା ନିର୍ଭୀକ ଭାବରେ ଲଡ଼ାପୁଷ୍ପ ଭାଙ୍ଗି କାପାଇ ବନବିହାର କଲେ । ହସ୍ତୀ ହସ୍ତିନୀ ଅତି ସ୍ନେହରେ ଶିଳା ଭୂମିରେ ବସନ୍ତି । ତଦ୍ରୂପ ରାମ ସୀତା ଅତ୍ୟନ୍ତ ଅନୁରାଗର ସହିତ ପ୍ରସ୍ତରଖଣ୍ଡମାନଙ୍କ ଉପରେ ବସୁଥାନ୍ତି ।

ବୁଲଅଛି ସୂର୍ପଣଖା ନାମେ ରାକ୍ଷସୀ ।
ବୃକ୍ଷାନ୍ତରେ ରହି ଚାହିଁ ହୋଇଲା ତୋଷୀ । ୪ ।
ବିଣା ଧଇର୍ଯ୍ୟ ହୋଇ ସେ ରାମ ବଶରେ ।
ବର୍ଣ୍ଣଇ ପୁନରୁକ୍ତ ବଦାଭାସରେ । ୫ ।
ବିଭୁ ବିଧି ମଦନ କନ୍ଦର୍ପ ହରଣ ।
ଦର କାନ୍ତ ପତି ମୋର ହୁଅନ୍ତେ ପୁଣ । ୬ ।
ବାସର ଦିବସ ନିଶି ଲବ କରନ୍ତି ।
ବିଧୂନନ ରତି କରି ମତି ତୋଷନ୍ତି । ୭ ।
ବାଳୀକି ନାହିଁ ଭୁବନେ ଲୋକରେ ବଳି ।
ବର୍ଣ୍ଣେ ଚାମ୍ପନ କନକ ସୁବର୍ଣ୍ଣ ଦଳି । ୮ ।

---

୪ର୍ଥ ପଦ—ବୃକ୍ଷାନ୍ତରରେ—ଗଛ ଓହାଡ଼ରେ ।

୫ମ ପଦ—ପୁନରୁକ୍ତ ବଦାଭାସ—ଏକ ଶବ୍ଦକୁ ପୁନଃ ପୁନଃ କହିଲାପରି ପ୍ରସ୍ତାବନା ।

୬ଷ୍ଠ ପଦ—ବିଭୁ—ବିଧାନ କର୍ତ୍ତା । ଦର—ଅତିଶୟ । କାନ୍ତ—ସୁନ୍ଦର । ପତି—ସ୍ୱାମୀ ।

୭ମ ପଦ—ବାସରେ—ଗୃହ ମଧ୍ୟରେ । ବିଧୂନନ—କମ୍ପନ ।

୮ମ ପଦ—ବାଳୀକି—ସ୍ତ୍ରୀକି । ଚାମ୍ପେନ—ଚମ୍ପାଫୁଲ—କନକ—ସୁନା । ସୁବର୍ଣ୍ଣ—ଉତ୍ତମ ବର୍ଣ୍ଣ ।

---

୪ର୍ଥ ପଦ—ସୂର୍ପଣଖା ନାମକ ରାକ୍ଷସୀ ବୁଲି ଆସିଥିଲା । ବୃକ୍ଷ ଓହାଡ଼ରେ ରହି ରାମ ସୀତାଙ୍କୁ ଦେଖି ସେ ଆନନ୍ଦିତ ହେଲା ।

୫ମ ପଦ—ସେ ସୂର୍ପଣଖା ରାମଙ୍କ ପ୍ରୀତିବଶରେ ଅଧୈର୍ଯ୍ୟ ହୋଇ ପୁନରୁକ୍ତ ବଦାଭାସ ଅଳଙ୍କାରରେ ବର୍ଣ୍ଣନ କଲା ।

୬ଷ୍ଠ ଓ ୭ମ ପଦ—ବିଧାତା କାମକୁ ଗର୍ବହୀନ କରିବାପାଇଁ ଏହାକୁ କହିଲା କି ? ଏପରି ଶ୍ରେଷ୍ଠ ମନୋହର ପୁରୁଷ ମୋର ପତି ହେଲେ; ମୁଁ ଗୃହ ମଧ୍ୟରେ ସୁରତରେ କ୍ରୀଡ଼ା କରି ମନ ତୋଷ କରନ୍ତି ଓ ରତିଦାନକୁ ଲବେ ମାତ୍ର ସମସ୍ତ କରି ଦିଅନ୍ତି ।

୮ମ ପଦ—ସଂସାର ଲୋକଙ୍କ ମଧ୍ୟରେ ଏ ବାଳୀରୁ ବଳି ଅଧିକ ସୁନ୍ଦରୀ ଆଉ ନାହିଁ । ଏହାର ଦେହର କନକଚମ୍ପା, କାନ୍ତି ଉତ୍ତମ ସୁବର୍ଣ୍ଣକୁ ନିନ୍ଦା କରୁଅଛି ।

ବଧୂ ଅବ୍ଜ ଚନ୍ଦ୍ର ଅଦରଶ ନନ୍ଦନ ।
ବଦନ ଅନଙ୍ଗ ଲକ୍ଷ୍ୟ ଶୋଭାସଦନ । ୯ ।
ବଡ଼ ଶୋଭା ଘେନ୍ତ ପଚ୍ଛ ଶମ୍ବରପୁରେ ।
ଦ୍ୟମ୍ନ କରଦେବା ଏହା ତ୍ରଣା ତା ଶିରେ । ୧୦ ।
ଉପେକ୍ଷିଗୀ ଏହାରେ ଯେଉଁ ଦବ୍ୟ ପୁରୁଷ ।
ବହ୍ନଲବ ନାହିଁ ପଗ୍ନ ମୋରେ ମାନସ । ୧୧ ।
ଭଗ୍ନୁରନ୍ଧ୍ର ଭୃଙ୍ଗ ପୁଣି ମାଳତୀ ସ୍ନେହ୍ଧ ।
ବାସରେ ସଙ୍ଗ ହୁଅନ୍ତ ସନ୍ଧଗ ବନ୍ଧୁ । ୧୨ ।
ବଧାତାକୁ ସ୍ତୁତ କଲ୍ପ କର ସୁଦଶା ।
ବସାଇଲ୍ପ ପ୍ରାପ୍ନ ଚନ୍ଦ୍ର କୋଳରେ ଶଶା । ୧୩ ।
ବନ୍ଧସଂଯୋଗ ଏହାର ମୋର ହୋଇଲେ ।
ବଶ ହୋଇ ଗୋଡ଼ାଇବ ମୋହର ଭୁଲେ ।

---

୯ମ ପଦ—ବଧୂ—ଚନ୍ଦ୍ର । ଅବ୍ଜ—ପଦ୍ମ । ଚନ୍ଦ୍ର ଅଦରଶ—ନର୍ମଳ ଦର୍ପଣ । ବଦନ–ମୁଖ । ଶୋଭା ସଦନ—ସୌନ୍ଦର୍ଯ୍ୟପୂର୍ଣ୍ଣ ଗୃହ ।

୧୪ଶ ପଦ—ବନ୍ଧ ଚଉଷଠି-ପ୍ରକାର ସୁରତ ବନ୍ଧ ।

---

୯ମ ପଦ—ଚନ୍ଦ୍ର, ପଦ୍ମ ଓ ସୁବର୍ଣ୍ଣ ନର୍ମିତ ଦର୍ପଣକୁ ନନ୍ଦା କରୁଥିବା ମୁଣି ଶୋଭାର ଗୃହସ୍ୱରୂ ହୋଇଥିବା ଏହାର ମୁଖକୁ ଆଉ ଲକ୍ଷ ନାହିଁ ।

୧୦ମ ପଦ—ଶ୍ରେଷ୍ଠ ସୁନ୍ଦରୀ ରତିଦେବୀ ଶମ୍ବରପୁରର ଗୃହରେ ଅଛି, ଏହାର ତ୍ରଣା ଅଙ୍ଗ ଅର୍ଥାତ୍ ପାଦ ପ୍ରଭୃତି ନକୃଷ୍ଟ ଅଙ୍ଗ ତାହାର ମସ୍ତକ ସହିତ ତୁଳନା କରିବା ଉଚିତ । ( ରତିର ବଦନ ଶୋଭା ଏହାର ପାଦ ଶୋଭା ସହିତ ସମାନ ହୋଇପାରେ । )

୧୧ଶ ପଦ—ଏ ଯେଉଁ ଦିବ୍ୟ ପୁରୁଷ ଏହାକୁ ଉପେକ୍ଷା କରୁଅଛି, ସେ ମୋ ସହିତ ବହାର କରିବାକୁ ମନ କରିବ ନାହିଁ ପଗ୍ନ । (ସନ୍ଦେହୋକ୍ତି) ।

୧୨ଶ ପଦ—ଶୂର୍ପଣଖା ପୁଣି ବଚାରିଲା, ଭ୍ରମର ମାଳତୀ ପୁଷ୍ପରେ ସ୍ନେହ୍ଧ ହୋଇଥାଏ; ସେ ପୁଣି କ ସଙ୍ଗ ପୁଷ୍ପରେ ଅନୁରାଗ କରି ସଙ୍ଗ ହୁଏ । (ଏ ସୁନ୍ଦରୀକୁ ଉପେକ୍ଷା କରୁଥିଲେ ସୁଦ୍ଧା ସେ ପୁରୁଷ ମୋ ପ୍ରତି ଅବା ଅନୁରକ୍ତ ହେବେ) ।

୧୩ଶ ପଦ—ଶୂର୍ପଣଖା ବଧାତାକୁ ସ୍ତୁତି କରି କହିଲା, "ମୋର ଉତ୍ତମ ଦଶା ହେଉ । ଚନ୍ଦ୍ର କୋଳରେ ଶଶାକୁ ବସାଇଲା ପ୍ରାୟ ଏ ପୁରୁଷ ମୋତେ କୋଳରେ ଯେପରି ବସାଇବ ।"

୧୪ଶ ପଦ—ଏହାର ମୋହର ରତି ବନ୍ଧ ଯୋଗେ ସଂଯୋଗ ହେଲେ, ଏ ବଶ ହୋଇ ମୋ ସହିତ ଗୋଡ଼ାଇବ ।

ବେଶ୍ୟା ସଙ୍ଗତ ହୋଇଲେ ରସିକ ପୁଂସ ।
ବଳିଇ କି ସ୍ୱକାନ୍ତାରେ ସେ ଅଭିଳାଷ ? ୧୫।
ତଣ କରି ପ୍ରେମେ ଶତ୍ରୁ ନାଶିବ ସ୍ତ୍ରୀରୁ ।
ବିରୋଧୋକ୍ତି ନ ଲଙ୍ଘିବେ ଅନୁରୋଧରୁ ।୧୬।
ବହିଲା ସୁନ୍ଦର ରୂପ ଏମନ୍ତ ଖଳ ।
ବିନାଶିବ ଯୋଗୀଯୋଗ ଚାହିଁଲେ ତାଳ ।୧୭।
ବୈରବୁଦ୍ଧି ଲୋକଜନନୀରେ ଭଜଇ ।
ଷଷ୍ଠି ଅନୁକୂଳେ ଯୁକ୍ତ ଅଶୁଭ ହେବ ।୧୮।
ତାହାର ତରୁ ଅନ୍ତରୁ ଗୋଚର ହୋଇ ।
ବାଟେ ନ ସହାର ଦେଉଅଛି ଝୁଲାଇ ।୧୯।

---

୧୫ଶ ପଦ – ସ୍ୱକାନ୍ତ—ସ୍ତ୍ରୀକୁ ।
୧୬ଶ ପଦ—ବିରୋଧୋକ୍ତି—ବିପରୀତ କଥା ।
୧୯ଶ ପଦ—ତରୁ ଅନ୍ତରୁ—ଗଛ ଉହାଡ଼ରୁ ।

---

୧୫ଶ ପଦ—ରସିକ ପୁରୁଷ ବେଶ୍ୟା ସଙ୍ଗମ ପାଇଲେ ଆପଣା ସ୍ତ୍ରୀଠାରେ ଆଉ ମାନସ ବଳାଏ କି ?

୧୬ଶ ପଦ—ପ୍ରେମରେ ଏହା ଶତ୍ରୁ ତଣ କରି ଏହାର ସ୍ତ୍ରୀକୁ ବିନାଶ କରିବ । ଉପରୋଧ ହେତୁ ସେ ବିରୋଧ ବଚନ କହିବ ନାହିଁ । ( ମୋ ସୁତ ସ୍ନେହ ଭଗାଡ଼ ହୋଇଗଲେ ସ୍ତ୍ରୀକୁ ମାଇଲେ ସୁଦ୍ଧା ସେ ବିରକ୍ତ ହେବ ନାହିଁ ) ।

୧୭ଶ ପଦ—ଏହା ବିଗ୍ରହ ସେ ସୂର୍ପଣଖା ସୁନ୍ଦର ମୂର୍ତ୍ତି ଧଇଲା । ସେ ନେତ୍ର ତାଳ ଚାହିଁଲେ ଯୋଗୀର ଯୋଗ ଭଗ୍ନ ହୋଇଯିବ ।

୧୮ଶ ପଦ—ଯେଉଁଲୋକ ମାତାଠାରେ ଶତ୍ରୁ ଜ୍ଞାନ ଭାବ କରେ, ତାହାର ଅନୁକୂଳରେ ଷଷ୍ଠିଯୋଗ ହେଲୁ ଅଶୁଭ ହୁଏ । ସୂର୍ପଣଖା ଲକ୍ଷ୍ମୀରୂପା ସୀତାଙ୍କଠାରେ ଶତ୍ରୁ ବୁଦ୍ଧି ଭାବ କଲା, ତେଣୁ ତାହାର ଅନୁକୂଳ ଷଷ୍ଠିଯୁକ୍ତ ହେଲା, ଅମଙ୍ଗଳ ନିଶ୍ଚୟ ହେବ ।

୧୯ଶ ପଦ—ସେ ସୂର୍ପଣଖା ବୃକ୍ଷ ଉହାଡରୁ ଗୋଚର ହୋଇ ନାସିକାକୁ ଯୋଡ଼ାଏ ଖୁଡ଼ା ଝୁଲାଇ ଦେଇ ବାହାର ହେଲା ।

ବସଣୀ ଟେକି ହେବାର କି ମନୋରମ ।
ବସଣି କରିବ ଯୁବା ଚିତ୍ତରେ ପ୍ରେମ ।୨୦।
ବାହୁ ଖଣ୍ଡୁ ଝାଡ଼ି ମନ-ମୀନକୁ ନେଇ ।
ବାହୁ କୁଚ-କୁବେଣୀରେ ଥୋଇ ଦେଉଛି ।୨୧।
ବନ୍ଧକୀ ଜଙ୍ଘରୁ ଚେଳ ଗୃହିବା ରଙ୍ଗ ।
ବନ୍ଧନ ସେ ସ୍ତମ୍ଭେ ଇଚ୍ଛେ ମନ-ମାତଙ୍ଗ ।୨୨।
ବଣିତେ ଭ୍ରୂରୁ ବିନ୍ଧାଇ ତୋଳା ଖେଳାଇ ।
ବିଶିଖବମାଣେ ସନ୍ଧି ବନ୍ଧ ନ ଦେଇ ।୨୩।
ବଦାଉଛି ମଦନସମରେ ମୁଁ ଏକ ।
ବଦନ ଜ ଭାଲେ ଟେକିଛି ଖଡ୍ଗ ତିଳକ ।୨୪।

---

୨୦ଶ ପଦ—ବସଣୀ—ନାସିକାର ଅଳଙ୍କାର ବିଶେଷ । ବସଣି—ବସିବା ।

୨୨ଶ ପଦ—ବନ୍ଧକୀ—ଅସତୀ । ଚେଳ—ବସ୍ତ୍ର । ମନମାତଙ୍ଗ—ମନରୂପ ମତ୍ତ ହସ୍ତୀ ।

୨୩ ପଦ —ବମାଣ—ଧନୁ । ବିଶିଖ—ଶର ।

୨୪ଶ ପଦ—ମଦନ ସମରେ—କାମଯୁଦ୍ଧରେ ।

---

୨୦ଶ ପଦ— ତା ନାକପୁଡ଼ା ଫୁଲିବାରୁ ବସଣୀ ଟେକି ହୋଇ ଯାଇ କି ସୁନ୍ଦର ଦିଶୁଅଛି ! ତାହା ଦେଖି ଯୁବକଙ୍କ ଚିତ୍ତରେ ପ୍ରେମ ବସତି ସ୍ଥାପନ କରିବ ।

୨୧ଶ ପଦ—ଯେପରି ମତ୍ସ୍ୟଜୀବୀ ଜାଲ ବାହିକି ଝାଡି ଦେଇ ମୀନକୁ ନେଇ ଖାଲୋଇରେ ପୁରାଏ, ସେହିପରି ସୂର୍ପଣଖା ଖଣ୍ଡୁ, ବାହୁକୁ ଝାଡ଼ି ଦେବାରେ ଯୁବା ପୁରୁଷର ମନ-ମୀନକୁ ନେଇ କୁଚ ରୂପ ଖାଲୋଇରେ ରଖି ଦେଉଛି । (ତା'ର ହାତ ଛଟା ଦେଖି ଯୁବା ତାକୁ ଚାହିଁଲା ମାତ୍ରେ ଯୁବାର ମନ ତାର ସ୍ତନଠାରେ ଲାଗି ରହିବ ) ।

୨୨ଶ ପଦ—ଅସତୀ ସୂର୍ପଣଖା ତାର ଜଙ୍ଘରୁ ଥରେ ଥରେ ଲୁଗା କାଢ଼ି ଦେଉଅଛି । ତହିଁରୁ ଜଣା ଯାଉଛି, ସେ ତାର ଉରୁ ରୂପ ସ୍ତମ୍ଭରେ ଯୁବା ପୁରୁଷର ମନରୂପ ହସ୍ତୀକୁ ବନ୍ଧନ କରିବାକୁ ଇଚ୍ଛା କରୁଛି କି ?

୨୩ଶ ପଦ—ସେ ସୂର୍ପଣଖା ଭ୍ରୂଲତାକୁ ଖୁବ୍ ଶୀଘ୍ର ଗତିରେ ଚଳାଇ ତୋଳା ଖେଳାଉଅଛି । ତାହା ଦେଖି ମନେ ହୁଏ, ସେ ଭ୍ରୂଲତା ଧନୁରେ ନେତ୍ରଶର ସନ୍ଧାନ କରି ମାତ୍ର ବନ୍ଧ ନ ଦେଇ ରଖିଅଛି ।

୨୪ଶ ପଦ—ସେ ଭାଲପଟରେ ତିଳକ ରୂପ ଖଡ୍ଗ ତୋଳି ରଖିବା ଦ୍ୱାରା ବୁଝାଉଛି ଯେ, କାମ ଯୁଦ୍ଧରେ ମୋ ବ୍ୟତୀତ ଆଉ କେହି ନାହିଁ । ( ତା ଭାଲ ପଟରେ ଥିବା ତିଳକ ଖଣ୍ଡା ଧାର ପରି ଦେଖା ଯାଉଛି ) ।

ବଳା ତେଙ୍ଗୁଣ ଦେଇ କି ଅପସରସା ।
ବଇହ୍ଳାରେ ଶୋଭାଗୁଣେ ଛଡ଼ାଇ ରସା ।୨୪।
ବହୁ ରଙ୍ଗ ତାମ୍ବୁଳ ସଞ୍ଚଇ ଅଧରେ ।
ବହୁରଙ୍ଗରୁପା ମିଳେ ରାମ ପାଶରେ ।୨୫।
ବୋଲଇ ଅରଣ୍ୟବାସୀ କପାଁ ସୁନ୍ଦର ?
ବୋଳ ଭସ୍ମ ଅଙ୍ଗେ ଶିରେ ଜଟା କି ଧର ।୨୬।
ବହ କାଣ୍ଡ କୋଦଣ୍ଡ ଯଜିସୁ ପରସ୍ପୁ ।
ବହନ କଥନ କର ଛେଦ ସଂଶୟ ।୨୮
ବଟୁଏସଙ୍ଗେ ଯୋଗଇଛ ଋଷିକପଣେ ।
ବଟୁଛ ମୃଗ ଗଣ୍ଡକ ପିଣ୍ଡୁ ତୋଷଣେ ।୨୯।

---

୨୪ଶ ପଦ—ଅପସରସା—ଅପ୍ସରାମାନେ । ରସା— ପୃଥିବୀ ।
୨୫ଶ ପଦ—ବହୁରଙ୍ଗ ରୁପା—କାନ୍ତୀରେ ସୁନ୍ଦର ରୁପା ।
୨୮ ପଦ—କୋଦଣ୍ଡ—ଧନୁ ।

---

୨୪ଶ ପଦ—ସେ ବଳା ପିନ୍ଧିଅଛି । ଚୂଲିଗଲବେଳେ ସେ ବଳା ଶଙ୍ଖରୁପ ତେଙ୍ଗସ କାନ୍ତ କଜାଇ ଜଣାଇ ଦେଉଛି ଯେ, ଶୋଭାଗୁଣରେ ମୁଁ ଅପ୍ସରାମାନଙ୍କୁ ଜୟ କରି କଳାହ୍ଳାରରେ ତାଙ୍କୁ ପୃଥିବୀକୁ ତଡ଼ି ଦେଇ ସ୍ୱର୍ଗେ ରଖିଅଛି ।

୨୫ଶ ପଦ – ତାହାର ଓଷ୍ଠରେ ପାନ ପିକ ଦୋହ ପଡ଼ୁଛି । ତାହାରେ ସୁନ୍ଦରୀ ରୁପ ସାଜିଥିବା ସେହି ରାକ୍ଷସୀ ରାମଙ୍କ ନିକଟରେ ପ୍ରବେଶ କଲା ।

୨୬ଶ ପଦ—ସୂର୍ପଣଖା ରାମଙ୍କୁ କହିଲା, "ହେ ସୁନ୍ଦର ! ତୁମ୍ଭେ ବନଗୃହୀ କାହିଁକି ହେଲ ? ଦେହରେ ଭସ୍ମ କପାଁ ବୋଳ ହୋଇଅଛ ? ମସ୍ତକରେ ଜଟା କାହିଁକି ବାନ୍ଧିଅଛ ?"

୨୮ଶ ପଦ—"ତୂଣ ଖଡ଼୍ଗ ପ୍ରାୟ ଧନୁଶର ଧରିଅଛ । ଏ କାରଣମାନ ଶୀଘ୍ର କହ ମୋର ସନ୍ଦେହ ନିବାରଣ କର ।"

୨୯ଶ ପଦ—"ତୁମ୍ଭେ ଋଷିକ ପରି ଗୋଟିଏ ସ୍ତ୍ରୀ ସଙ୍ଗରେ ଯୋଗ ଅଛ ଓ ପିତୃ ପୁରୁଷଙ୍କ ସନ୍ତୋଷପାଇ ମୃଗ,ଗଣ୍ଡା ଅଣ ପକ୍ଷୀଙ୍କୁ ବଧ କରୁଅଛ ।"

ବୀର ସକଳ ପ୍ରକାଶି ବଚନେ ଅପୂର୍ବ ।
ଖରସଙ୍କଟେ କହିଲା ଶୁଣ ହେ ଯୁବା ।୩୦।
ବଶୀଭୂତ ହୋଇ ତବ ଶୋଭାକୁ ଚାହିଁ ।
ବସିବାକୁ ତୁମ୍ଭ କୋଳେ ଆସିଛି ମୁହିଁ ।୩୧।
ବନ୍ଧନ ଭରି ଭୂଷଣରେ ଜାଣଇ ସତ ।
ବନ୍ଧରେ ଯେ ସୁଖଭଙ୍ଗ ପୁରୁଷାୟିତ ।୩୨।
ବିଶ୍ରବାନନ୍ଦନୀ ମୁଁ ଯେ କୁଳରେ ସାଧୁ
ବସ୍ତ୍ରବାଇ ଓଷ୍ଠୁ ପିଅ ମଧୁରମଧୁ ।୩୩।
ବକ୍ଷଜାତ ହରେ ଦେଲେ କମଳକର ।
ବସ୍ତ୍ରଳେ ସେ ଫଳେ ହେବ ସଜା ସ୍ୱର୍ଗର ।୩୪।
ବାରବେଳପୁରେ ରଜା ମୋର ସୋଦର ।
ବାରତା ପାଇ ହୋଇବେ ହରଷଭର ।୩୫।

---

୩୨ଶ ପଦ—ପୁରୁଷାୟିତ—ବିପରୀତ ରତ ।
୩୩ଶ ପଦ—ବସ୍ତ୍ରବାଇ— ତରଳାଇ ।
୩୪ଶ ପଦ—ବସ୍ତ୍ରଳେ—ସ୍ନେହଯୁକ୍ତ ହୋଇ ।
୩୫ଶ ପଦ—ବାରବେଳପୁର—ଚତୁର୍ଦ୍ଦଶପୁର । ସୋଦର—ଭାଇ ।

---

୩୦ଶ ପଦ—ସୂର୍ପଣଖାର ପ୍ରଶ୍ନ ଶୁଣି ବୀର ରାମଚନ୍ଦ୍ର ବନକୁ ଆସିବ । ଚରିତମାନ ପ୍ରକାଶ କଲେ । ତାହା ଶୁଣି ସୂର୍ପଣଖା ବିରସ ସ୍ୱରରେ କହିଲା, "ହେ ଯୁବା ! ଶୁଣ ।"—

୩୧ଶ ପଦ -"ମୁଁ ତୁମ ସୌନ୍ଦର୍ଯ୍ୟ ଦେଖି ବଶୀଭୂତ ହୋଇ ତୁମ୍ଭ କୋଳରେ ବସିବା ପାଇଁ ଆସିଅଛି ।"

୩୨ଶ ପଦ—"ଭୁଜ ବନ୍ଧନ ରୂପ ବହୁତ ପ୍ରକାର ଆଲିଙ୍ଗନ ଏବଂ ଚଉଷଠୀ ବନ୍ଧ ମଧ୍ୟରେ ଚନ୍ଦ୍ରବନ୍ଧ ଓ ବିପରୀତ ବନ୍ଧ ମୁଁ ଜାଣେ ।"

୩୩ଶ ପଦ—"ମୁଁ ବିଶ୍ରବା ଋଷିଙ୍କ କନ୍ୟା, ତେଣୁ ମୋର ଜାତ ଉତ୍ତମ ଅଟେ । ମୋ ଓଷ୍ଠରୁ ସୁମିଷ୍ଟ ମଧୁ ଝରାଇ ପାନ କର ।"

୩୪ଶ ପଦ—"ମୋହର ବକ୍ଷଜାତ ଶମ୍ଭୂରେ ସ୍ନେହଯୁକ୍ତ ହୋଇ (ସ୍ତନରେ) ହସ୍ତ ପକ ଦେଲେ, ତାହାର ଫଳରେ ତୁମ୍ଭେ ସ୍ୱର୍ଗର ରଜା ହେବ । (ମୋ ସ୍ତନରେ ହାତ ଦେଲେ ତୁମ୍ଭେ ସ୍ୱର୍ଗସୁଖ ଅନୁଭବ କରିବ )।"

୩୫ଶ ପଦ—"ମୋର ଭାଇ ଚଉଦ ଭୁବନର ରଜା ଅଟେ । ସେ ଏ କଥା ଶୁଣି ପାରିଲେ ଅତ୍ୟନ୍ତ ହର୍ଷ ହେବ, ତା ଫଳରେ ତୁମ୍ଭର ମଙ୍ଗଳ ହେବ ।"

ବିରଞ୍ଚି ଲେଖିଛି ଭାଳପଟେ ତୁମ୍ଭର ।
ବରଣିବ ନନ୍ଦନବନରେ ବିହାର ।୩୬।
ବିନୋଦ ଯେଉଁ ରାମାରେ କରିବ ମତି ।
ବିନୋଧ୍ୟ ନୋହୁଁ ଧରିବି ମୁଁ ସେହି ମୂର୍ତ୍ତି ।୩୭।
ବୋଇଲେ ରଘୁନନ୍ଦନ ତର ସମାଦର !
ବ୍ରତ ଆଚରଣ ଏକପତ୍ନୀ ମୋହର ।୩୮।
ବଡ଼ କୁଳେ ଜାତ ଭୂପ ଭଗିନୀ ତୁହି ।
ବୃଷସ୍ୟନ୍ତୀ ଆଚରଣ ଭଲ ତ ନୋହି ।୩୯।
ବାସ୍ତୋଷ୍ପତି ପଥୁବାଞ୍ଛେ କି କାର୍ଯ୍ୟ ମୋର ?
ବହି ନ ପାରେ ଏଁଥିର ନେତ୍ର ସହସ୍ର ।୪୦।
ବିଟଭାବ ଲମ୍ପଟେ ତେମନ୍ତ ସେହି ।
ବିପର୍ଯ୍ୟେ ଶିଳାସ୍ୱରୂପ ନ କର ତୁହି ।୪୧।

---

୩୬ଶ ପଦ—ବିରଞ୍ଚି—ବିଧାତା ।
୩୯ଶ ପଦ—ଭୂପ—ରାଜା । ବୃଷସ୍ୟନ୍ତୀ — କାମୁକୀ ।
୪୦ଶ ପଦ —ବାସ୍ତୋଷ୍ପତି—ଇନ୍ଦ୍ର ।

---

୩୬ଶ ପଦ — "ବିଧାତା ତୁମ୍ଭ କପାଳରେ ଲେଖିଛି ଯେ, ତୁମ୍ଭେ ସ୍ୱର୍ଗର ନନ୍ଦନ କାନନରେ ବିହାର କରିବ । ଏହା ଅନ୍ୟଥା ହୋଇ ନ ପାରେ ।"

୩୭ଶ ପଦ—"ତୁମ୍ଭେ ଯେଉଁ କାମିନୀ ସଙ୍ଗେ କେଳି କରିବାକୁ ମନ କରିବ, ମୋତେ ବିନୟ ନ ହେଉଣୁ ମୁଁ ସେହି ମୂର୍ତ୍ତି ଧାରଣ କରିବି ।"

୩୮ଶ ପଦ—ସୂର୍ପଣଖାର ଉତ୍ତରରେ ରାମଚନ୍ଦ୍ର କହିଲେ, "ରେ ସମାଦର, ମୁଁ ଏକପତ୍ନୀ ବ୍ରତ ଗ୍ରହଣ କରିଅଛି । [ ଅନ୍ୟ ସ୍ତ୍ରୀ ମୋର ଦରକାର ନାହିଁ ।]"

୩୯ଶ ପଦ—"ତୁ ବଡ ବଂଶରେ ଜାତ, ପୁଣି ରାଜାର ଭଉଣୀ ଅଟୁ । ତୋର ଏପରି କାମୁକୀ ପରି ଆଚରଣ କରିବା ତ ଭଲ ନୁହେଁ ।"

୪୦ଶ ପଦ—"ଇନ୍ଦ୍ରର ସମ୍ମୁଖରେ ମୋର କାର୍ଯ୍ୟ ନାହିଁ । କାରଣ ମୁଁ ଦେହରେ ଏତେ ଆଖି କହି ପାରିବି ନାହିଁ । (ଇନ୍ଦ୍ର ପରସ୍ତ୍ରୀ ହରଣ କରି କହି ନେତ୍ର ବହି ଅଛନ୍ତି । ମୁଁ ପର ସ୍ତ୍ରୀ ହରଣ କଲେ ତ ସେହି ଫଳ ପାଇବି) ।"

୪୧ଶ ପଦ—"ଇନ୍ଦ୍ର ବିଟଭାବରେ ଲମ୍ପଟୀ ହୋଇ ପର ସ୍ତ୍ରୀ ଅହଲ୍ୟାଠାରେ ଆସକ୍ତ ହେବାରୁ ଏପରି ସହସ୍ର ନେତ୍ର ଧାରଣ କଲେ । ତୁ ବିନା କାରଣରେ ଅହଲ୍ୟା ପରି ପାଷାଣ ରୂପ ହୁଅ ନାହିଁ ।"

ବିନାଶନ ମୋ ବଲ୍ଲଭ ଶୁଣେ ଚପଳ ।
ବିନାଶନରେ ଅମୃତ ବଞ୍ଚୁଁ ତ ଛାଳ ।୪୨।
ବଡ଼ ମାନଙ୍କାରୁ ଯେନ ଦାନବୀ ବାଟୀ ।
ବସାଇ ହୃଦୟ ରୂପଧାନରେ ଭୂଲ ।୪୩।
ବିଶେଷେ ରତିରେ କେ ହୋଇବ ବଗୁର ।
ବଣିକ ଶ୍ରବରେ ତହୁଁ ବଣିଜ କର ।୪୪।
ବିଷ୍ଣୁପଦୀ ଜଳ କେତେ ନିର୍ମଳ ଯୋଷା ।
ବାରିଦ ଅବଳ ଜଳେ ଗୃତକ ଆଶା ।୪୫।
ବହ୍ନିକଣା ଗିଳା ଚକୋର ହେ ନାଗର ।
ବିଧୁକର ସ୍ୱାଦୁ ଯେଣ ଲୋଭ ତହୁଁର ।୪୬।

---

୪୨ଶ ପଦ—ବିନାଶନ—ଅର୍ଥାତ ମୃତ । ବଲ୍ଲଭ—ସ୍ୱାମୀ । ଚପଳ—ଶୀଘ୍ର । ବିନାଶନରେ— ନ ଖାଇ ।

୪୫ଶ ପଦ—ବିଷ୍ଣୁପଦୀ—ଗଙ୍ଗା । ଯୋଷା— ସ୍ତ୍ରୀ । ବାରିଦ—ମେଘ ଅବଳ ଜଳ—ଗୋଳିଆ ପାଣି ।

୪୬ଶ ପଦ—ବହ୍ନିକଣା —ନିଆଁ ଝୁଲ । ବିଧୁକର—ଚନ୍ଦ୍ରକିରଣ ।

---

୪୨ଶ ପଦ – ସୂର୍ପଣଖା ଶୀଘ୍ର କହିଲା, "ମୋର ସ୍ୱାମୀ ମୃତ ହୋଇଅଛି । ଅଉ କିଏ ଶାପ ଦେଇ ମୋତେ ପାଳଣ କରିବ ? ତୁମ୍ଭେ ଭୋଜନ ନ କରି [ଉପଭୋଗ ନ କରି] ମୋ ପରି ଅମୃତକୁ ହସ୍ତରୁ ଫିଙ୍ଗି ଦେଉଛ କାହିଁକି ?"

୪୩ଶ ପଦ—"ରାକ୍ଷସୀ ସ୍ତ୍ରୀ ମନୁଷ୍ୟ ସ୍ତ୍ରୀ ଠାରୁ ବଡ଼ ଅଟେ । ଏହା ତୁମ୍ଭ ହୃଦୟ ରୂପ ନିକଟରେ ବସାଇ ଭଜନ କର ।"

୪୪ଶ ପଦ—"ରତିରେ କିଏ ଅଧିକ ହେବ ଏହା ବିଗୁର କରି ବଣିକ ଶ୍ରବରେ ତାହାଠାରେ କେପାର କର । (ବଣିଆ ରଙ୍ଗ ପକାଇ ସୁନା ଭଜନ କରେ ଓ ଯେ ଅଧିକ ହୁଏ ତାକୁ କିଣି କେପାର କରେ । ସେହିପରି ତୁମ୍ଭେ ଯାହାକୁ ଅଧିକ ରତି ନିପୁଣା ବିଗ୍ରହିବ, ତାହା ସହିତ କ୍ରୀଡ଼ା କରିବ )।"

୪୫ଶ ପଦ—ରାମଚନ୍ଦ୍ର ଉତ୍ତର ଦେଲେ, "ହେ ରମଣି ! ଗଙ୍ଗାର ଜଳ ଯେତେ ନିର୍ମଳ ହେଲେ ସୁଦ୍ଧା ଗୃତକ ପକ୍ଷୀର ଆଶା ତହିଁରେ ନ ଥାଏ । ମେଘର ଗୋଳିଆ ପାଣିକୁ ତାହାର ଆଶା ଥାଏ । (ସେହିପରି ତୁ ରତିନିପୁଣା ହେଲେ ମଧ୍ୟ ତୋ' ଉପରେ ମନ ନ ଯାଇ ସୀତା ପ୍ରତି ଆକୃଷ୍ଟ ହୋଇଅଛି )।"

୪୬ଶ ପଦ— ସୂର୍ପଣଖା କହିଲା, "ହେ ନାଗର ! ଅଗ୍ନିକଣା ଗିଳିଥିବା ଚକୋର ପକ୍ଷୀ ଚନ୍ଦ୍ର କିରଣର ସ୍ୱାଦୁ ପାଇଲେ ତହିଁରେ ଲୋଭ

ଅଭୋଗୀ ଅସୁରୀ ଏ ଭଜନ ନ କର ।
ବିଷ୍ଣୁ ବଶ ଜଳନ୍ଧର ମନୋହାରୀର ।୪୭।
ଚଳେ ଚଳ ଇଠି କୁଞ୍ଜେ କରିବା କେଳି ।
ବକ୍ତା ହେଲେ ରାମ ସ୍ଥଳ ଚଞ୍ଚଳ ବାଳୀ ।୪୮।
ବକ୍ରାକ୍ଷି ମନୁଜେ ନାହିଁ ଅନୁଜେ ଚାହାଁ ।
ବୁଧ ସେ ମୋ ଆଜ୍ଞା କଲେ ହୋଇବ ନାହା ।୪୯।
ବାମଲୋଚନା ସଙ୍ଗତ ନାହିଁ ତାହାର ।
ବାମ ନୋହୁ ତତ୍କାଳ କରିବ ସ୍ୱୀକାର ।୫୦।
ବିଲୋକି ସେ ଅଲୌକିକ ସୁନ୍ଦର ରୂପ ।
ବେଗେ ଯାଇ କାମୁକୀ ଲକ୍ଷ୍ମଣ ସମୀପ ।୫୧।

---

୪୯ଶତ୍ ପଦ— ବକ୍ରାକ୍ଷ—କୁଟିଳ ନୟନା । ମନୁଜେ —ମନୁଷ୍ୟ-ମାନଙ୍କ ମଧ୍ୟରେ । ଅନୁଜ—ସାନଭାଇ । ବୁଧ—ପଣ୍ଡିତ ।

୫୦ଶତ୍ ପଦ—ବାମଲୋଚନା— ସ୍ତ୍ରୀ ।

---

ହୋଇଥାଏ । (ତୁମ୍ଭେ ମୋ ସହିତ ରତି କଲେ, ବଳେ ବଳେ ମୋ ପ୍ରତି ଅନୁରକ୍ତ ହେବ )।"

୪୭ଶ ପଦ—"ମୁଁ ଅସୁରୀ, ତେଣୁ ଭୋଗଯୋଗ୍ୟା ନୁହେ,—ଏହା ଭାବି ମୋତେ ଇଚ୍ଛା ଭଜନ କର ନାହିଁ । ଦେଖ ଜଳନ୍ଧର ଅସୁରର ଭାର୍ଯ୍ୟା ବୃନ୍ଦାବତୀଠାରେ ବିଷ୍ଣୁ ବଶ ହୋଇଥିଲେ ।"

୪୮ଶ ପଦ—"ଇଠି କୁଞ୍ଜ ଭିତରକୁ ଆସେ ଚଳ । ସେଠାରେ କେଳି କରିବା ।" ସୂର୍ପଣଖାର ଏ ବଚନ ଶୁଣି ରାମଚନ୍ଦ୍ର କହିଲେ, "ହେ ବାଳ ! ଚଞ୍ଚଳ କର ନାହିଁ ।"

୪୯ଶତ୍ ପଦ—"ମୋର ଅନୁଜ ଲକ୍ଷ୍ମଣ ଯେ ସୁନ୍ଦର ମନୁଷ୍ୟମାନଙ୍କ ଭିତରେ ଅଉ କେହି ନାହାନ୍ତି । ତାକୁ ଭଲ ଦୃଷ୍ଟିରେ ଚାହଁ । ସେ ପଣ୍ଡିତ ଲୋକ, ମୋର ଆଜ୍ଞା ଦେବା କଥା କହିଲେ, ସେ ତୋର ପତି ହେବ ।"

୫୦ଶତ୍ ପଦ—"ସେ ଭଇର ସ୍ତ୍ରୀ ସଙ୍ଗମ ନାହିଁ । ତେଣୁ ସେ ତୋଠାରେ ପ୍ରତିକୂଳ ନ ହୋଇ ତୋ କଥା ଶୁଣିବା ମାତ୍ରେ ରାଜି ହୋଇଯିବ ।"

୫୧ଶତ୍ ପଦ—ରାମଚନ୍ଦ୍ରଙ୍କଠାରୁ ଶୁଣି କାମୁକୀ ସୂର୍ପଣଖା ଲକ୍ଷ୍ମଣଙ୍କର ଅଲୌକିକ ସୁନ୍ଦର ରୂପ ଦେଖି ଶୀଘ୍ର ତାଙ୍କ ପାଖକୁ ଗଲା ।

ବିନୟୀ ହୋଇ ନିକଷାତନୟୀ କହୁ ।
ବକ୍ତବ୍ୟ ତରୁଣ ରାମ ସେବକ ମୁହୁ । ୫୨ ।
ବ୍ରହ୍ମାଣ୍ଡେ ଏକ ରାଜନଭଗ୍ନୀ ହେବ କି ?
ବହୁଁ ଭୂମି-ଗୁପ୍ତ ଜାତ-କନ୍ୟା ସେବକୀ । ୫୩ ।
ବସେ ସ୍ୱପ୍ନ ଯୋଗୀ ପ୍ରାୟ ନିଦ୍ରାକୁ ତେଜି ।
ବାହୁଡ଼ ରେ ବରାଙ୍ଗନା ମୋତେ ନ ଭଜି । ୫୪ ।
ବାହୁଡ଼ିଲା ସେକ୍ଷଣେ କାମବଶେ ତୃଷିତା ।
ବିଲୋକୁ ମୋତେ ଯେମନ୍ତ ନଷ୍ଟଯୋଷିତା । ୫୫ ।
ବୀଭତ୍ସରସରେ ତବ ସ୍ୱାଧୀନଭର୍ତ୍ତା ।
ବିଯୋଗ କରିବ ରକ୍ଷି ନ ପାରେ ଧାତା । ୫୬ ।

---

୫୨ଶତ୍ ପଦ—ନିକଷାତନୟୀ—ସୂର୍ପଣଖା । ତରୁଣ—ଯୁବକ ।
୫୫ଶତ ପଦ—ନଷ୍ଟଯୋଷିତା—ନୃତ୍ୟକାରିଣୀ ବେଶ୍ୟା ।

---

୫୨ଶତ୍ ପଦ—ନିକଷାତନୟା ସୂର୍ପଣଖା ଲକ୍ଷ୍ମଣଙ୍କ ପାଖକୁ ଯାଇ ବିନୟ ସ୍ୱରରେ ନିଜ କଥା କହିଲା । ତା କଥା ଶୁଣି ତରୁଣ ଲକ୍ଷ୍ମଣ କହିଲେ, "ମୁଁ ରାମଙ୍କର ସେବକ ଅଟେ ।"

୫୩ଶତ୍ ପଦ—"ବ୍ରହ୍ମାଣ୍ଡମଧ୍ୟରେ ଯେ ସର୍ବଶ୍ରେଷ୍ଠ ରାଜାର ଭଗ୍ନୀ, ସେ ଭୂମି ଚଷୁ ଚଷୁ ଜାତ ହୋଇଥିବା କନ୍ୟାର ସେବକୀ ହେବ କି ? (ତୁମେ ମୋର ସ୍ତ୍ରୀ ହେଲେ ସୀତାଙ୍କର ଦାସୀ ହେବ, ମାତ୍ର ତା ଅନୁଚିତ । କାରଣ ତୁମେ ସର୍ବଶ୍ରେଷ୍ଠ ରାଜାଙ୍କ ଭଗ୍ନୀ ଓ ସୀତା ମାଟିତଳୁ ଜାତ କୃଷକ କନ୍ୟା ) ।"

୫୪ଶତ୍ ପଦ— 'ରେ ବରାଙ୍ଗନା ! ମୁଁ ନିଦ୍ରା ନ ଯାଇ ସ୍ୱପ୍ନରେ ଯୋଗୀ ପ୍ରାୟ ଜଗି ବସେ । ଏପରି ଅବସ୍ଥାରେ ମୋତେ ମନ ନ କଳାଇ ତୁ ଫେରିଯାଅ ।"

୫୫ଶତ୍ ପଦ—ଲକ୍ଷ୍ମଣଙ୍କର ନାସ୍ତି ବାକ୍ୟ ଶୁଣି କାମାତୁରା ସୂର୍ପଣଖା ରାଗରେ ଫେରିଯାଇ ରାମଚନ୍ଦ୍ରଙ୍କୁ କହିଲା, "ମୋତେ ବେଶ୍ୟାପରି ତୁ ଅନ୍ୟ ପୁରୁଷପାଖକୁ ପଠାଉଅଛୁ ।"

୫୬ଶତ୍ ପଦ—"ତୁମ୍ଭର ପ୍ରିୟକର୍ତ୍ତା ଭାର୍ଯ୍ୟାକୁ ବୀଭତ୍ସରସରେ ରକ୍ତ, ମାଂସ ଖାଇ ପିଇ ବିନାଶ କରିବି, ବିଧାତା ଏହା ଅନ୍ୟଥା କରି ନ ପାରିବ ।"

ବଢାଇଁ ହସ୍ତ ସୀତାର ନାଶ ଅର୍ଥରେ ।
ବହୁ ଲେଖ ଦେଲେ ତାକୁ ରାମ ଶ୍ଳେଷରେ । ୫୭ ।
ବାବୁ ନାକ ଶିରୀ ଦାନ ଯୋଗ୍ୟ ଯୋଷାକୁ ।
ବହର କାନନ କର ଅଲିଙ୍ଗନକୁ । ୫୮ ।
ବଇଦେହୀଦାସୀ ଏ କି ଯୋଗ୍ୟ ହୋଇବ ?
ବଧୂରେ ଇନ୍ଦ୍ର ପ୍ରଶଂସା ତୁମ୍ଭେ ପାଇବ । ୫୯ ।
ବୋଧ ମତ ତାମାଙ୍କେ ନ ବୁଝି ହସିଲା ।
ବାହୁଡାଇବେ ନାହିଁ ତ ଅଙ୍କ ଲାଗିଲା । ୬୦ ।

---

୫୮ଶତ୍ ପଦ—ନାକଶିରୀ—ସ୍ୱର୍ଗସୁଖ, ନାସିକା ଶୋଭା । ଦାନ—ଛେଦନ, ଦେବା ।

୫୯ତମ ପଦ—ବଧୂରେ—ଦୈବ ଯୋଗରେ; ମୂର୍ଖଙ୍କ ମଧ୍ୟରେ ।

---

୫୭ଶତ୍ ପଦ—ଏହା କହି ସୂର୍ପଣଖା ସୀତାଙ୍କ ବିନାଶ ପାଇଁ ହସ୍ତ ବଢାନ୍ତେ, ରାମଚନ୍ଦ୍ର ଶ୍ଳେଷୋକ୍ତିରେ ପକ୍ଷ ଲେଖି ସୂର୍ପଣଖାକୁ ଦେଲେ ।

୫୮ଶତ୍ ପଦ—ସୂର୍ପଣଖା ବୁଝିବା ଅର୍ଥ—ହେ ବାବୁ ଲକ୍ଷ୍ମଣ ! ସ୍ୱର୍ଗ ସମ୍ପତ୍ତିକୁ ଦେବାପାଇଁ ଯୋଗ୍ୟ ଏ ଯେଉଁ ରମଣୀ, ଏହାକୁ ବୋଲି ବହି ବନରେ ଏହା ସହିତ ବିହାର କର ।

ପ୍ରକୃତ ଅର୍ଥ—ହେ ବାବୁ ! ଏ କାମିନୀର ନାସିକା ଶୋଭା ଛେଦନ ଯୋଗ୍ୟ ଅଟେ ( ଏହାର ନାକ କାଟିବା ଉଚିତ ) । ଆଲିଙ୍ଗନ ନ କରି ଏହାର କାନକୁ ବିଶେଷତ୍ୱରେ ହରଣ କର ।

୫୯ତମ ପଦ—ସୂର୍ପଣଖା ବୁଝିବା ଅର୍ଥ—ଏ ଜଣେ ପ୍ରଧାନ ରାଜାର ଭଉଣୀ, କେଣୁ କାହିଁକି ଏ ସୀତାଙ୍କର ଦାସୀ ହେବ ? ଦୈବବଳରେ ତୁମ୍ଭେ ଏହାକୁ ବିବାହ କଲେ ଇନ୍ଦ୍ର ତୁଲ୍ୟ ପ୍ରଶଂସାଲାଭ କରିବ ।

ପ୍ରକୃତ ଅର୍ଥ—ଏ ସ୍ତ୍ରୀ କି ଗୁଣ ଯୋଗୁ ସୀତାଙ୍କର ଦାସୀ ହେବ ? (ଦାସୀ ହେବାର ମଧ୍ୟ ଅନୁପଯୁକ୍ତ) । ଏହାକୁ ଗ୍ରହଣ କଲେ, ତୁମ୍ଭେ ମୂର୍ଖଙ୍କମଧ୍ୟରେ ଶ୍ରେଷ୍ଠ, ଏହି ପ୍ରଶଂସା ପାଇବ । ( ମୂର୍ଖ ଶ୍ରେଷ୍ଠ ବୋଲି କହା ପାଇବ ) ।

୬୦ତମ ପଦ—ସୂର୍ପଣଖା କାମରେ ଅନ୍ଧ ହୋଇଥିବାରୁ ପଦର ପ୍ରକୃତ ଅର୍ଥ ବୁଝି ନ ପାରି ମନବୋଧ ହୋଇଥିବାରୁ ଆନନ୍ଦରେ ହସିଲା । ପୁଣି କହିଲା, "ଆଉ କାହୁଡାଇବେ ନାହିଁ ତ ?"

ବୋଲେ ଦାଶରଥି ନାହିଁ ନାହିଁ ତକ୍ଷଣ ।
ବେଳ ଉତ୍ତର ଦେବାରେ ପଡ଼ି ଲକ୍ଷ୍ମଣ । ୨୧ ।
ବାହୁ ଟେକ ଉଠନ୍ତେ ତର୍କି କାର୍ଯ୍ୟ ସଫଳ ।
ବାହେ ଯତ୍ନ ଏହିପରି କରିବ କୋଳ । ୨୨ ।
ବାଳ ଧରନ୍ତେ ବିଚାରିଲା କର୍ଣ୍ଣାଟ ନାରୀ ।
ବର ସଂଯୋଗେ ନାୟକ କୁନ୍ତଳ ଧରି । ୨୩ ।
ବକ୍ଷୋଜୀ ଏହାଙ୍କ ଦେଶେ ଏରୂପେ ପୁଂସେ ।
ବସୁଧାରେ ଯାନ୍ତି ସ୍ୱଳେ ରତ ପ୍ରକାଶେ । ୨୪ ।
ବଚ୍ଛେଦନ୍ତେ ନାସା ଶ୍ରବଣ ଦୀର୍ଘ ରହିଲା ।
ବଧାନ୍ତୁ ସିଦ୍ଧ ହସ୍ତିନୀ ଲକ୍ଷ୍ୟ ସହିଲା । ୨୫ ।

---

୨୧ତମ ପଦ -ରାମଚନ୍ଦ୍ର ଉତ୍ତର ଦେଲେ, "ନାହିଁ ନାହିଁ । (ପ୍ରକୃତ ଅର୍ଥ;—ତୁ ଯେ କହିଲୁ ବାହୁଡ଼ାଇବେ ନାହିଁ ? ତହିଁର ନାହିଁ ଶବ୍ଦ ନାହିଁ । ଅର୍ଥାତ୍ ବାହୁଡ଼ାଇବେ ) ।" ରାମଚନ୍ଦ୍ର ଦୁଇ ଅର୍ଥବୋଧକ ପଦ ଲେଖିବାର ପଡ଼ି ଲକ୍ଷ୍ମଣ ପ୍ରକୃତ ଅର୍ଥ ବୁଝିଲେ ।

୨୨ତମ ପଦ—ଲକ୍ଷ୍ମଣ ବାହୁଦ୍ୱୟ ଟେକି ଉଠିବାରୁ ସୂର୍ପଣଖା ମନରେ ବିଚାରିଲା, "କାର୍ଯ୍ୟ ସଫଳ ହେଲା । ଏ ଯତ୍ନ ଏହିପରି ବାହୁଦ୍ୱୟରେ ମୋତେ କୋଳ କରିବ ।"

୨୩ତମ ପଦ—ଲକ୍ଷ୍ମଣ ସୂର୍ପଣଖାର କେଶ ଧରନ୍ତେ, ସେ ବିଚାରିଲା, 'କର୍ଣ୍ଣାଟ ଦେଶୀୟ ନାରୀମାନେ ରତିସଂଯୋଗ ସମୟରେ ପୁରୁଷର କେଶ ଧରିଥାନ୍ତି ।'

୨୪ତମ ପଦ—'ଏହାଙ୍କ ଦେଶରେ କର୍ଣ୍ଣାଟ ଦେଶୀୟ ସଂଯୋଗ ପରି ପୁରୁଷମାନେ ନାରୀର କେଶ ଧରି ବୋଧ ହୁଏ ସଂଯୋଗ କରନ୍ତି ।' ଲକ୍ଷ୍ମଣ ତାକୁ ମାଟି ତଳେ ପକାନ୍ତେ, ସେ ବିଚାର କଲା, 'କେଉଁମାନ ଏ ରତ କରିବେ ।'

୨୫ତମ ପଦ—ସିଂହ ହସ୍ତିନୀକି ମାଡ଼ି ବସି ବଧାବନ୍ତେ, ସେ ଯେପରି ରଡ଼ି ଦିଏ, ଲକ୍ଷ୍ମଣ ସୂର୍ପଣଖାର ନାସା କର୍ଣ୍ଣ ଛେଦନ କରନ୍ତେ ସୂର୍ପଣଖା ସେହିପରି ରଡ଼ି କଲା ।

ବିଦାରି ମୃଗୀ ଶାର୍ଦ୍ଦୂଳ ପିଙ୍ଗିଲା ସବ ।
ବିରୂପ କରି ପଠାଇ ଦେବେ ସେ ଜବ । ୬୬ ।
ବିଦ୍ରାବ ନିଶ୍ୱାର ରକ୍ତ ବସନ ବୁଡ଼ ।
ବାଟେ ପୁଷ୍ପିତ ମନ୍ଦାର ବୃକ୍ଷ କି ଉଡ଼ ? ୬୭ ।
ବାୟୁବେଗେ ଜନପଦେ ମିଳିତ ଯୋଷା ।
ବୋଲେ ଖର ଦେଖି କେ କେଲା ଏ ଦଶା ? ୬୮ ।
ବିକାଳରେ କାଳ ହେବା ଶଙ୍କା ନ କରି ।
ବ୍ୟାଳମୁଖେ ଦେଲା କେଉଁ କରକୁ ଭରି ? ୬୯ ।
ବ୍ୟାଳ ବୋଲୁ ଅନ କି ବାସୁକି ବଦନ ।
ବାଉ ଓସ ଏମନ୍ତ ଦଶେ କାହିଁ ତା ସ୍ଥାନ ? ୭୦ ।

---

୬୬ତମ ପଦ—ଶାର୍ଦ୍ଦୂଳ—ବ୍ୟାଘ୍ର ।
୬୭ତମ ପଦ—ବିଦ୍ରାବ—ବହି ପଡୁଥିବା ।
୬୯ତମ ପଦ—ବିକାଳରେ—ଅସମୟରେ । କାଳ—ମୃତ୍ୟୁ । ବ୍ୟାଳ—ସର୍ପ ।

---

୬୬ତମ ପଦ—ବ୍ୟାଘ୍ର ମୃଗୁଣୀକୁ ବିଦାରଣ କରି ଫିଙ୍ଗିଦେଲା ପରି ଲକ୍ଷ୍ମଣ ସୂର୍ପଣଖାକୁ ବିରୂପ କରି ବେଗରେ ପଠାଇ ଦେଲେ ।
୬୭ତମ ପଦ—ସୂର୍ପଣଖାର ନାସା ଓ କର୍ଣ୍ଣ ଛେଦନ ହୁଅନ୍ତେ ତାହାର ମୁଖରୁ ଘନଧାରରେ ରକ୍ତ ବୋହିଲା । ସେ ରକ୍ତରେ ପିନ୍ଧିଥିବା ଲୁଗା ରଞ୍ଜି ଗଲା । ସେ ସେଠାରୁ ପଳାଇଲାବେଳେ ମନେ ହେଲା, ଫୁଲ ଫୁଟିଥିବା ମନ୍ଦାର ବୃକ୍ଷ ପବନରେ ଉଡି ଯାଉଛି କି ?

୬୮ତମ ପଦ—ପବନ ବେଗରେ ସୂର୍ପଣଖା ପଳାଇ ଯାଇ 'ଜନପଦ' ସମସ୍ତଙ୍କ ବାସସ୍ଥାନରେ ମିଳିଲା । ତାହାକୁ ଦେଖି ଖର ଦୈତ୍ୟ କହିଲା, "ରାଜ-ଜେମାଙ୍କୁ ଏ ଅବସ୍ଥା କିଏ ଦେଲା ?"
୬୯ତମ ପଦ—"ଅକାଳରେ ମୃତ୍ୟୁ ଲଭିବାର ଭୟ ନ କରି କିଏ ସର୍ପ ମୁଖରେ ହସ୍ତ ପୂରାଇଲା ?"
୭୦ତମ ପଦ—"ସର୍ପ କହିବାରେ ପୁଣି ସାଧାରଣ ସର୍ପ ନୁହେଁ । ସର୍ପରାଜ ବାସୁକି ମୁହଁରେ ଯେ ହସ୍ତ ପୂରାଇଲା, ସେ ନିଶ୍ଚୟ ପାଗଳ ବୋଲି ପ୍ରତୀତ ହେଉଛି । ସେ କେଉଁଠାରେ ରହୁଅଛି ?"

ବଂଶ ଅବତଂସ ଅଟନ୍ତି ପଞ୍ଚବଟୀରେ ।
ବସା କରିଛନ୍ତି ଦଶରଥ କୁମରେ । ୭୧ ।
ବାମା ସେନ ରାମ ହେଲେ ମୁହିଁ ଗ୍ରାସନ୍ତେ ।
ଏହୁ ଦଣ୍ଡ ଦଣ୍ଡକରେ ଦଣ୍ଡେକ ମୋତେ । ୭୨ ।
ବଳ ସାଜିଣ ଦୂଷଣ ତ୍ରିଶିର ଖର ।
ବାହାର ବୀର ଡାକରେ ଉଛୁଳ ସୁର । ୭୩ ।
ବ୍ୟାକୁଳ ଭୟେ ତ୍ରିଦଶ ଲୁଟିବେ ପରା ।
ବେପଥୁବନ୍ତ ହେଲା ସତ୍ୱରେ ଧରା । ୭୪ ।
ବିସର୍ଜିନେ ନଳୀ ଗୁଳ ସୁର ଭାବନ୍ତ ।
ବଂଶେ ମୋ ବାଦୀ ମୋତେ କି ନାଶ କରନ୍ତି ?

---

୭୪ତମ ପଦ—ତ୍ରିଦଶ—ଦେବତାମାନେ । ବେପଥୁ—କମ୍ପନ ଧରା—ପୃଥିବୀ ।

୭୫ତମ ପଦ—ସୁର—ସୂର୍ଯ୍ୟ ।

---

୭୧ତମ ପଦ—ଖର ରାକ୍ଷସର ଏହି କଥା ଶୁଣି ରାବଣ ଭଉଣୀ ସୂର୍ପଣଖା କହିଲା, "ପଞ୍ଚବଟୀ ବନରେ ଦଶରଥ ରାଜାଙ୍କର ଦୁଇ ପୁଅ ବସା କରି ରହି ଅଛନ୍ତି ।"

୭୨ତମ ପଦ—"ସେ ତାଙ୍କ ସ୍ତ୍ରୀଙ୍କୁ ସଙ୍ଗରେ ନେଇ ରହି ଅଛନ୍ତି । ମୁଁ ସେ ସ୍ତ୍ରୀକୁ ଗ୍ରାସ କରିବାକୁ ଯାନ୍ତେ ସେ କ୍ରୋଧିତ ହେଲେ । ଦଣ୍ଡକାରଣ୍ୟରେ ଦଣ୍ଡକ ମଧ୍ୟରେ ମୋତେ ଏ ଦଣ୍ଡ ଦେଲେ ।"

୭୩ତମ ପଦ—ଦୂଷଣ, ତ୍ରିଶିର, ଖର ଏହି ତିନି ଅସୁରେ ସୈନ୍ୟ ସଜ କରି ବାହାର ହେଲେ । ତାଙ୍କ ବୀର ଡାକରେ ଦେବତାମାନେ ଭୀତ ହେଲେ ।

୭୪ତମ ପଦ—'ଏମାନେ ସ୍ୱର୍ଗ ଲୁଟି ନେବେ ପରା ?'—ଏହା ଭାବି ଦେବତାମାନେ ବ୍ୟାକୁଳ ହେଲେ । ତାଙ୍କ ପାଦଭରରେ ପୃଥିବୀ ଦେବୀ ଶୀଘ୍ର କମ୍ପମାନ ହେଲା ।

୭୫ତମ ପଦ—ଖର ଦୂଷଣାଦିଙ୍କ ସୈନ୍ୟମାନେ ନଳୀରୁ ଗୁଳି ଛାଡ଼ନ୍ତେ ସୂର୍ଯ୍ୟ ଭାବନ୍ତି, 'ମୋ ବଂଶର ରାମଚନ୍ଦ୍ର ବାଦୀ ହେବାରୁ ଏମାନେ ମୋତେ ନାଶ କରୁଅଛନ୍ତି କି ?'

ବନଗିରି ପୂର୍ଣ୍ଣ ଅସ୍ତୁ ଧୂଳି ଉଡ଼ିଲା ।
ରମ୍ଭ ଅଚ୍ଛାଦନେ ଶଙ୍କା ରବି ସ୍ତମ୍ଭିଲା । ୭୬ ।
ବସୁଧାସୁତାଙ୍କୁ ସୌମିତ୍ରେୟ ରକ୍ଷିତ ।
ରଘୁବର ପଣ୍ଡିତ ଯୁଦ୍ଧକୁ ଗତ । ୭୭ ।
ବର୍ଣ୍ଣୁର ଘନ ସମସ୍ତେ ରକ୍ଷେ ଘୋଟିଲେ ।
ବାଣଗଣ ଜଳଧାର ପତନ କଲେ । ୭୮ ।
ବଳକ୍ଷ ସେନାନୀ ଖଡ୍ଗ ଝଲକ ପ୍ରଦା ।
ବଜ୍ରପାତ ଭୟଙ୍କର ନିର୍ଘୋଷ ଗଦା । ୭୯ ।
ବଜ୍ରଜଳ ବର୍ହିଙ୍କ ହୁଅନ୍ତ ସାବତ ।
ବଳୟୁତ ସରାଗେ ରଘୁନାୟକ । ୮୦ ।
ବରଣ ତନୁ କବାଟ ପୃଷ୍ଠ ହୃଦୟ ।
ବାହୁ ସ୍ତମ୍ଭ ଜଙ୍ଘ ଅର୍ଗଳରେ ଜୟ । ୮୧ ।

---

୭୮ତମ ପଦ—ବର୍ଣ୍ଣୁର ଘନ—ବର୍ଷଣକାରୀ ମେଘ ।
୮୧ତମ ପଦ—ବରଣ—ପ୍ରାଚୀର । ତନୁ—ଦେହ ।

---

୭୬ତମ ପଦ—ସେହି ସୈନ୍ୟ ବନ ପର୍ବତ ପୂର୍ଣ୍ଣ କରି ଅସରାରୁ ଧୂଳି ଉଡ଼ିଲା । ସେ ଧୂଳିରେ ସୂର୍ଯ୍ୟମଣ୍ଡଳ ଆଚ୍ଛାଦିତ ହୁଅନ୍ତେ ସୂର୍ଯ୍ୟଙ୍କର ରଥ ସ୍ଥିର ହେଲା ।

୭୭ତମ ପଦ—ଏହିପରି ରାକ୍ଷସ ସୈନ୍ୟ ଆସିବାର ଦେଖି ରଘୁପତି ରାମଚନ୍ଦ୍ର ସୀତାଙ୍କୁ ଲକ୍ଷ୍ମଣଙ୍କ ଦ୍ୱାରା ରଖାଇ ଯୁଦ୍ଧକୁ ଗଲେ ।

୭୮ତମ ପଦ—ରାକ୍ଷସ ସୈନ୍ୟମାନେ ବର୍ଣ୍ଣୁର ମେଘ ପ୍ରାୟ ରାମଚନ୍ଦ୍ରଙ୍କୁ ଘେରି ଜଳଧାର ସମାନ ଶରସମୂହ ବୃଷ୍ଟି କଲେ ।

୭୯ ଓ ୮୦ତମ ପଦ—ସୈନ୍ୟମାନଙ୍କର ଖଡ୍ଗର ଚୋଟ ବିଜୁଳି ପ୍ରାୟ ଦେଖାଗଲା ଏବଂ ଗଦା ଓ ଶୂଳ ପ୍ରଭୃତିର ପତନ ଶବ୍ଦ ବଜ୍ରପାତ ଶୁଣାଗଲା । ଅସ୍ତ୍ର ଶସ୍ତ୍ର ବର୍ଷଣରେ ଅଗ୍ନି ଜାତ ହେଲା, ବଳୟ ଭୂର୍ଜରେ ବହ୍ନିଜାତ ବଜ୍ରାଗ୍ନି ନିଷ୍ଫଳ ହେଲା ପରି ରାମଙ୍କଠାରେ ଖଡ୍ଗ, ତ୍ରିଶୂଳ, ଗଦା ପ୍ରଭୃତି ଅସ୍ତ୍ର ଶସ୍ତ୍ର ନିଷ୍ଫଳ ହେଲା ।

୮୧ ଓ ୮୨ ତମ ପଦ—ଦୁର୍ଗରୂପ ରାମଚନ୍ଦ୍ରଙ୍କ ଦେହ ଚାରିପ୍ରାଚୀର, ବକ୍ଷସ୍ଥଳ କବାଟ ପିଢ଼ା, ଭୁଜଯୁଗଳ ଦ୍ୱାରବନ୍ଧ, ଜଙ୍ଘ ଅର୍ଗଳି ପ୍ରାୟ ଅଟେ । ସେହ

ବେଷ୍ଟନରେ ରହୁ ସହୁ ବଳ୍ପକ ସାର ।
ବଧାସ୍ତ୍ର ଶସ୍ତ୍ର ଚୋପନରେ ପୂରତ ।୮୨।
ବଳ ସିନ୍ଧୁ ତରଳକୁ ଅଗସ୍ତ୍ୟ ସର ।
ବତାଣ ନିଷିଦ ଶିର ତାଳଫଳର ।୮୩।
ବଣୁର ଭବ ହୋଇ ସେ ବନ-ଭାର୍ଯ୍ୟାକୁ ।
ବଶୋଧିଲେ ଦୂଷଣକୁ ବୃଣ ପ୍ରସ୍ତୁତ ।୮୪।
ବ୍ୟାଘ୍ର ଲକ୍ଷ୍ୟେ ଲକ୍ଷ୍ମଣ ନାସ୍ୱଳସାର ।
ବଦାବ ଉଲେ ସଜାଇ ଲପିତେ ଖର ।୮୫।
ବେଶରେ ମନ୍ଦରେ ପ୍ରକ୍ତ ଗୁଣିଅ ଘେନ ।
ବକୁର ହୋଇଲ ସୂର୍ପଣଖା ଡାକିନୀ ।୮୬।
ବାହୁତାଳକେ ସ୍ୱଦବ ସଜସଦନେ ।
ବନ୍ଦ ବନ୍ଦ ହାସ ରହୁଥିଲ ବଦନେ ।୮୭।

---

୮୩ତମ ପଦ—ବଳସିନ୍ଧୁ—ସୈନ୍ୟସମୁଦ୍ର ।
୮୫ତମ ପଦ—ନାସ୍ୱଳ ସାର—ଶ୍ରେଷ୍ଠ ଶର । ଖର—ଗଧ ।

---

ରାମଚନ୍ଦ୍ର ସୈନ୍ୟ ଭିତରେ ରହି ବଳ୍ପକ ସାର ସହିତ ଯୋଗେନ୍ଦ୍ରୋଧଯୁକ୍ତ ହୋଇ ଅସ୍ତ୍ର ପ୍ରହାର କଲେ ।

୮୩ତମ ପଦ—ସୈନ୍ୟରୂପୀ ସମୁଦ୍ରକୁ ରାମଚନ୍ଦ୍ରଙ୍କ ଶର ରୂପ ଅଗସ୍ତ୍ୟ ପାନ କଲା । ନିଷିଦ ରାକ୍ଷସର ଶିର ଆକାଶରେ ତାଳ ଫଳ ପ୍ରାୟ ସମସ୍ତ ଶରରେ ଛିନ୍ନ ପଡ଼ିଲା ।

୮୪ତମ ପଦ—ରାମଚନ୍ଦ୍ର ବଣ ଭବ ପରି ଦଣ୍ଡକାରଣ୍ୟ ରୂପ ଭାର୍ଯ୍ୟାକୁ ଦୂଷଣ ରାକ୍ଷସ ରୂପ ଦୋଷରୁ ନିଜ ଶୌର୍ଯ୍ୟ ଗୁଣରେ ସଂଶୋଧନ କରି ଦେଲେ । ( ଯେପରି ଦୋଷଜ୍ଞ ପଣ୍ଡିତ ଭାର୍ଯ୍ୟାକୁ ଦୋଷ ବାଛି ଦେଇ ଭାର୍ଯ୍ୟାକୁ ଶୁଦ୍ଧ କରି ଦିଏ, ସେହିପରି ରାମଚନ୍ଦ୍ର ଦୂଷଣକୁ ନାଶ କରି ଦଣ୍ଡକାରଣ୍ୟକୁ ଶୁଦ୍ଧ ଧନ୍ୟ କରି ଦେଲେ ) ।

୮୫ତମ ପଦ—ରାମଚନ୍ଦ୍ରଙ୍କ ଶ୍ରେଷ୍ଠ ଶର ବ୍ୟାଘ୍ର ପରି ଲକ୍ଷ୍ମଣ ଶର ଗଧରୂପୀ ଖର ଅସୁରକୁ ବାନ୍ଧି ମାରିବେ ଉଦାର ତଳେ ପକାଇ ଦେଲା ।

୮୬ତମ ପଦ—ରାମଚନ୍ଦ୍ର ଅସ୍ତ୍ର ପ୍ରୟୋଗରେ ମନ୍ତ୍ର ଯୁକ୍ତ ହୋଇଥିବାରୁ ଗୁଣିଆ ମନ୍ତ୍ର ପାଠ କଲେ ଯେପରି ଡାକିନୀମାନେ ଅଁ କରି ପଳାଇଯାନ୍ତି, ସେହିପରି ସୂର୍ପଣଖା ପଳାଇଗଲା ।

୮୭ତମ ପଦ—ଏହାପରେ ରାମଚନ୍ଦ୍ର ପଞ୍ଚବଟୀକୁ ଆସି ବାସ କଲେ । ସେତେବେଳେ ତାଙ୍କ ମୁଖରେ ମନ୍ଦ ମନ୍ଦ ହାସ ଲାଗି ରହୁଥାଏ ।

ଜଳରୁହରୁ ଜନମ ହୋଇ ତୁଷାର ।
ବିରୋଧୀ ନାହିଁ ଅଧିକେ ଦିଶି ରୁଚିର ।୮୮।
ବର୍ଷ୍ମ ସ୍ୱେଦେ ରକ୍ତପାତେ ପବନବଳେ ।
ବିଦ୍ରୁମ ପଙ୍କୁର ଦେଇ ମର୍କତଶିଳେ ।୮୯।
ବଶିଷ ଚର୍ମକୃତରୁ ଅଦ୍‌ଭୁତ ହୋଇ ।
ତାହାର ଗନ୍ଧକୁ ରାମ ଅନୁଜ ଦୁଇ ।୯୦।
ବିଖ୍ୟାତ ଓଳଗ ବହି ମହାସନ୍ତୋଷ ।
ବିଧୌତ ପଙ୍କ ସରିତେ ଜାନକୀ- ଈଶ ।୯୧।
ବୟାଣୋଇ ପଦେ ଛନ୍ଦ ଅତି ମାଧୁରୀ ।
ସୀରଧର ଉପେନ୍ଦ୍ର ଭଞ୍ଜ ବିସ୍ତର ।୯୨।

---

୮୭ତମ ପଦ—ପଙ୍କଜବଦନ—ତୁଣ୍ଡଅଙ୍ଗାର । ବଦନ—ମୁଖ ।
୮୮ତମ ପଦ—ଜଳରୁହ—ପଦ୍ମ । ତୁଷାର—ହିମକଣା ।
୮୯ତମ ପଦ—ବର୍ଷ୍ମ—ଦେହ । ସ୍ୱେଦ—ଝାଳ । ବିଦ୍ରୁମ—ପୋହଳା ।

---

୮୮ତମ ପଦ—ପଦ୍ମରୁ ତାହାର ଜାତ ହୋଇ ତାହାର ଶତ୍ରୁ ହୋଇ-ଥାଏ, ମାତ୍ର ସେ ସ୍ୱେଦବିନ୍ଦୁ ରୂପ ତାହାର ମୁଖପଦ୍ମରୁ ଜାତ ହୋଇ ସୁଦ୍ଧା ଶତ୍ରୁ ହୋଇ ନାହିଁ । ବରଂ ଅଧିକରେ ମନୋହରତା ବଢ଼ାଇ ଅଛି ।

୮୯ତମ ପଦ—ଦେହ ଝାଳଯୁକ୍ତ ହୋଇଥିବାରୁ ଓ ତହିଁରେ ବାୟୁଯୋଗେ ଅସି ରକ୍ତବିନ୍ଦୁମାନ ଲାଗିଥିବାରୁ, ତାହା ମରକତ ଶିଳାରେ ପୋହଳା ଗଢ଼ ହେଲ ପ୍ରାୟ ଶୋଭା ଦେଖାଯାଉ ଅଛି ।

୯୦ତମ ପଦ—ରାମଚନ୍ଦ୍ର ଅସ୍ତ୍ରଯୋଗେ ଚର୍ମ ଚଢ଼ିବାରୁ ସେଠା ଏପରି ଅଶ୍ଚର୍ଯ୍ୟ ଘଟନା ଘଟିଲା ! (ମରକତ ଶିଳାରୁ ପୋହଳା ଉଜଳସ) । ରାମଙ୍କୁ ଦେଖି ସୀତା ଓ ଲକ୍ଷ୍ମଣ ପଙ୍କଜ ଗନ୍ଧରୁ ବାହାରିଲେ ।

୯୧ତମ ପଦ—ରାମଙ୍କୁ ଦେଖି ସୀତା ଓ ଲକ୍ଷ୍ମଣ ଦୁହେଁ ମହାସନ୍ତୋଷ ହୋଇ ଓଳଗିଲେ । ରାମ ଗୋଦାବରୀ ନଦୀରେ ସର୍ବାଙ୍ଗ ଧୌତ କଲେ ।

୯୨ତମ ପଦ—ଏହି ଛନ୍ଦ ବୟାଣୋଇ ଛନ୍ଦରେ ସୀରଧର ଉପେନ୍ଦ୍ର ଭଞ୍ଜ ଅତି ମାଧୁର୍ଯ୍ୟର ସହିତ ବିରଚନ କଲେ ।

# ଚତୁର୍ବିଂଶ ଛାନ୍ଦ

## ରାଗ—କୁମ୍ଭକାମୋଦୀ

ବିନାଶ ନାସା ଶ୍ରବଣ ସୂର୍ପଣଖା ପ୍ରବେଶ ଲଙ୍କାର ।
ବୃକ୍ଷ ପାଟଳୀରୁ ଫୁଲ ଝାଡ଼ି ଉଡ଼ି ଯାଉଛନ୍ତି କି କୀର ?
ବଟେ ନେତ୍ରୁ ଅଶ୍ରୁ, ପତ୍ରୁ କି ଖସୁଛି ପଡ଼ିଲା ତୁଷାର ।
ବାତବାୟୁରେ ଧୈର୍ଯ୍ୟ ମୂଳ ଉପୁଡ଼ି ହେବା ପ୍ରକାର ।୧।
ବିଂଶପାଣି ଅଗେ ପଡ଼ି ପୃଚ୍ଛି ବେଗେ ଏ ଦଣ୍ଡ କେ ଇଚ୍ଛି ।
ଭଗ୍ନୀ ତୁ ମୋର ନ ଜାଣି ସଂସାରମଧ୍ୟରେ କେ ଅଛି ?
ବୃଷା ବୃଷାସନ ବାସୁକି ବିଧାନ ନୋହେ ଏ ଜଗତେ ।
ବନ୍ଧା ସୁତେ କୈଳାସ ଉପାଡ଼ନ୍ତେ ଜାଣନ୍ତି ସେ ମୋତେ ।୨।

---

୧ମ ପଦ – କୀର—ଶୁକପକ୍ଷୀ ।

୨ୟ ପଦ— ବିଂଶପାଣି—ରାବଣ । ବୃଷା—ଇନ୍ଦ୍ର । ବୃଷାସନ—ମହାଦେବ ।

---

# ଚତୁର୍ବିଂଶ ଛାନ୍ଦ

୧ମ ପଦ—ନାସା ଓ ଶ୍ରବଣ ଛେଦିତ ହୋଇଥିବା ସୂର୍ପଣଖା ଯାଇ ଲଙ୍କାପୁରରେ ପ୍ରବେଶ ହେଲା । ସେ ଶୀଘ୍ରଗତିରେ ଗଲାବେଳେ ବୋଧହେଲା, ପାଟଳି ବୃକ୍ଷରୁ ଫୁଲସବୁକୁ ଝଡ଼ାଇ ଦେଇ ଶୁକପକ୍ଷୀ ଉଡ଼ିଯାଉଛନ୍ତି କି ? ରାତିରେ ପାଟଳିପତ୍ରରେ ପଡ଼ିଥିବା କାକର ପତ୍ରରୁ ଖସିପଡ଼ିଲା ପ୍ରାୟ ତା ନେତ୍ରରୁ ଲୋତକ ବହୁଅଛି, ବତାସ ପବନରେ ପାଟଳି ବୃକ୍ଷ ଉପୁଡ଼ି ପଡ଼ିଲା ପରି ସୂର୍ପଣଖାର ଧୈର୍ଯ୍ୟ ବୃକ୍ଷ ଉପୁଡ଼ି ପଡ଼ିଲା । (ସୂର୍ପଣଖାର ଦେହ ପାଟଳି ବୃକ୍ଷ, କର୍ଣ୍ଣ ଓ ନାସିକାରୁ ବନ୍ଧ ବନ୍ଧ ହୋଇ ଖସି ପଡ଼ୁଥିବା ରକ୍ତ ପାଟଳି ଫୁଲ ସଙ୍ଗେ ଉପମିତ )

୨ୟ ପଦ—ସୂର୍ପଣଖା ଯାଇ ରାବଣ ଅଗ୍ରତରେ ପଡ଼ିଯାନ୍ତେ, ସେ ଶୀଘ୍ର ପଚାରିଲା, "ତୋତେ ଏ ଦଣ୍ଡ କିଏ ଦେଲା ? ତୁ ମୋର ଭଉଣୀ, ଏହା ସଂସାର-ମଧ୍ୟରେ କିଏ ନ ଜାଣିଛି ? ସ୍ୱର୍ଗର ଇନ୍ଦ୍ର, ମର୍ତ୍ତ୍ୟର ମହାଦେବ, ପାତାଳର ବାସୁକିଙ୍କ ଦ୍ୱାରା ଏହା ଘଟିବା ସମ୍ଭବ ନୁହେ । କାରଣ ମୋ ପୁତ୍ରଦ୍ୱାରା ବନ୍ଦୀ ହୋଇଥିବାରୁ ଏବଂ ମୁଁ କୈଳାସ ପର୍ବତ ଉପାଡ଼ନ୍ତେ ଇନ୍ଦ୍ର, ମହାଦେବ ଓ ବାସୁକି ମୋତେ ଜାଣିଛନ୍ତି ।"

ବାଣୀଦଇବତ ଷିବ୍ର ଅଶ୍ୱ ଦନ୍ତ ଭରବ ପବଧି ।
ବଡ଼ି କ ରୋଗ ଏ ଦଶା ହେଲା ଯୋଗ ନ ଦେଲେ ଔଷଧି ।
ବୋଇଲ ଅନୁଜା ନାଗଜାତ ରାଜା ଜଗତବଳଶ୍ରୀ ।
ବନ୍ଧୁ କି ହେବ ନେଜ ମଦେ ମୂର୍ଚ୍ଛିତ ପ୍ରତଚକ୍ଷୁ ଘର ।୩।
ବାଣ୍ଡିବଦ ସ୍ଥାନ ବଶ୍ୟ ପାଠମାନ ଗୋଚର ହେବାକୁ ।
ବଧି କିଷିର ଦୂଷଣ ଖର ମୋତେ ଏ ଦଣ୍ଡ ଦେବାକୁ ।
ବନୌକା ଦେଶେ ନାମ ରାମ ଲକ୍ଷ୍ମଣ ଅଯୋଧ୍ୟା ନରେଶ ।
ବେଳକୁମର ବାମା ତାଙ୍କ ସଙ୍ଗର ଦଣ୍ଡକେ ନିବାସ ।୪।
ବ୍ରହ୍ମା କୋଟିଏ କନ୍ୟା ଘର ଗୋଟିଏ ଗଢ଼ିବେ କି ଭଉ ।
ବ୍ରହ୍ମାଣ୍ଡ ଲକ୍ଷରେ ଖୋଜିଲେ ଲକ୍ଷ୍ୟକେ ନ ଥିବ ସୁଜସ୍ତ୍ରୀ ।

---

୩ୟ ପଦ—ବାଣୀଦଇବତ—ଅଶ୍ୱିନୀକୁମାର ( ସ୍ୱର୍ଗବୈଦ୍ୟ ) । ଷିବ୍ର—ସମସ୍ତ । ଅନୁଜା—ସାନ ଭଉଣୀ । ମଦେ—ଗର୍ବରେ ।

୪ର୍ଥ ପଦ—ବାଣ୍ଡିବଦ—ଦୂତ । ବନୌକା—ବନବାସୀ, ଋଷି । ବାମା—ସ୍ତ୍ରୀ ।

---

୩ୟ ପଦ—"ମୁଁ ଅଜ ସ୍ୱର୍ଗବୈଦ୍ୟ ଅଶ୍ୱିନୀକୁମାରଙ୍କ ସମସ୍ତ ନକ୍ଷ ଦର୍ଶେଦର୍ ବ ରୋଗ ହୋଇ ବଡ଼ ବଢ଼ି ଯେ ଏ ଦଶା ବଟଇ; ନାଡ ଦାନ ଛଡ଼ିଗଲା— ସେଥିପାଇଁ ଯେ ଔଷଧ ନ ଦେଲେ ବାହିଁକି ?" ଏହା ଶୁଣି ସାନ ଭଉଣୀ ସୂର୍ପଣଖା କହଇ, "ରାଜାମାନେ ନାଗସର୍ପଙ୍କ ପରି ଜଗତର ଗର୍ବ ଅଛନ୍ତି, ତୁମ୍ଭର ଚକ୍ଷୁ ଥାଇ ବା କଣ ହେବ ? ଗର୍ବରେ ତା ମୂର୍ଚ୍ଛିତ ହୋଇ ଯାଉଛି । ସେଥିପାଇଁ ତୁମ୍ଭର ପ୍ରତଚକ୍ଷୁ (ଚଷମା) ଦେବା ଦରକାର ପଡ଼ୁଛି ।"

୪ର୍ଥ ପଦ—"ବ୍ରାହ୍ମଣ ହେଲେ ପ୍ରତଚକ୍ଷୁ ଲଗାଇ ଯେପରି ବେଦ ପଢ଼ିପାରନ୍ତି, ସେହିପରି ରାଜାମାନେ ଦୂତରୂପ ପ୍ରତଚକ୍ଷୁ ଦ୍ୱାରା ସଂସାରର କଥାମାନ ଜାଣିପାରନ୍ତି । ତୁମ୍ଭର ଦୂତରୂପ ପ୍ରତଚକ୍ଷୁ ନ ଥିବାରୁ ତୁମ୍ଭେ କିଛି ଜାଣିପାରୁ ନାହିଁ । କି ଚିତ୍ର, ଦୂଷଣ ଓ ଖର ଏ ଚଉଦ ରାକ୍ଷସଙ୍କୁ ବିନାଶ କରି ମୋତେ ଏ ଦଣ୍ଡ ଦେବାପାଇଁ ଅଯୋଧ୍ୟା ଦେଶର ନରପତି ଦଶରଥଙ୍କ ଦୁଇ ପୁଅ ଗୋଟିଏ ସ୍ତ୍ରୀ ସଙ୍ଗରେ ବେନି ବନବାସୀ ହୋଇ ଦଣ୍ଡକାରଣ୍ୟରେ ରହିଅଛନ୍ତି ।

୫ମ ପଦ—"କୋଟିଏ ବ୍ରହ୍ମା ମିଳିତ ହୋଇ ଯେ ସୃଷ୍ଟିପରି ଆଉ ଗୋଟିଏ ସ୍ତ୍ରୀ ଗଢ଼ି ପାରିବେ ନାହିଁ । ଲକ୍ଷ ସଂଖ୍ୟକ ବ୍ରହ୍ମାଣ୍ଡରେ ଖୋଜିଲେ ସେ ସ୍ତ୍ରୀ ସଦୃଶ ସୁନ୍ଦରୀ ଆଉ ମିଳିବେ ନାହିଁ । ମୁଁ ଦେଖିଛି,—ରମ୍ଭା, ଉର୍ବଶୀ ତୋ ଆଗରେ ଅତି

ଏଡ଼େ ନୃତ୍ୟେ ଅସି ରମ୍ଭା ଉର୍ବଶୀ ତୋ ଅଗେ ଓଲସିଛୁ ।
ବନିତାମଣି ଦାସୀପଣେ ନ ଗଣି ମୋ ମନେ ରଖିଛୁ । ୫ ।
ବଦନ ଓଷ୍ଠ ସୁଷମା ଭର ପୂର୍ଣ୍ଣ ପୂର୍ଣ୍ଣମୀ ପ୍ରାଚୀଏ ।
ବିଧୁ ବାଳାର୍କ ବ୍ୟାଜେ ସୌମ୍ୟ ମାଣିକ୍ୟ ସ୍ଥାଳୀକ ଧରି କି ?
ବନ୍ଦାଣ ମାସରେ ଉଦେ ଦେ ଉଷୁରେ ଦେ ନୀତୀ ବନ୍ଦାଇ ।
ବିହଙ୍ଗ ଅଳୀ ହୁଳାଳେ ହୁଳହୁଳୀ ଉତ୍ଫୁଲ୍ଲ ଦେଇ । ୬ ।
ବଦଳ ଖଙ୍ଗ ନୋହୁବା ହେବା ଯୋଷ ଏକାଳ ସୁବୃତ୍ତ ।
ବାସରମୁଖେ ସନ୍ଧ୍ୟାରେ ଭ୍ରମି ଦୁଃଖେ ଦେଖନ୍ତି ସେ ଲକ୍ଷ ।
ବିଭୂଷା ସୁବର୍ଣ୍ଣ ସେ ସହସ୍ରେ ବାନ ପିଞ୍ଜର ଧର ତେ ।
ବର୍ଣ୍ଣିଲୁ ନଉନ ଦଶେ ଏତେ ବାନ ଥାଇ ତା ଶରୀରେ । ୭ ।

---

୬ଷ୍ଠ ପଦ—ସୁଷମା—ପରମ ଶୋଭା ବା ଅତ୍ୟନ୍ତ ଶୋଭା । ପ୍ରାଚୀ—ପୂର୍ବଦିଗ । ବିଧୁ—ଚନ୍ଦ୍ର । ବାଳାର୍କ—ବାଳସୂର୍ଯ୍ୟ । ବିହଙ୍ଗଅଳୀ—ପକ୍ଷୀର ଶ୍ରେଣୀ ।

୭ମ ପଦ—ସୁବୃତ୍ତ—ମନୋହର । ବାସରମୁଖେ—ସକାଳେ । ବିଭୂଷା—ଅଳଙ୍କାର । ପିଞ୍ଜର—ପିତ୍ତଳ । ବାନ—ତେଜ ।

---

ନୃତ୍ୟ କରନ୍ତି । ମାତ୍ର ସେ ସ୍ତ୍ରୀରତ୍ନର ଦାସୀପଣକୁ ମଧ୍ୟ ଏମାନେ ଗଣନା ହୋଇ ପାରିବେ ନାହିଁ ।"

୬ଷ୍ଠ ପଦ – "ସେ ସ୍ତ୍ରୀର ମୁଖ ଓ ଓଷ୍ଠର ସୌନ୍ଦର୍ଯ୍ୟ ଦେଖି ମନେ ହୁଏ, ମାସକରେ ଥରେ ପୂର୍ଣ୍ଣିମା ପୂର୍ଣ୍ଣଚନ୍ଦ୍ର ରୂପ ରୂପାଥାଳିରେ ଓ ପ୍ରତିଦିନ ସକାଳେ ପୂର୍ବଦିଗ ବାଳସୂର୍ଯ୍ୟରୂପ ମାଣିକ୍ୟଥାଳିରେ ଉତ୍ସୁକ ମନରେ ତାଙ୍କ ମୁଖ ଓ ଓଷ୍ଠକୁ ବନ୍ଦାପନା କରନ୍ତି କି ? ପୁଣି ପୂର୍ବଦିଗ ବନ୍ଦାପନା କଲବେଳେ ପକ୍ଷୀସମୂହ ବସର ଶ୍ରେଣୀ ରୂପେ ହୁଇଦେଲା ହୁଳହୁଳି ଦେଉଥାନ୍ତି ?"

୭ମ ପଦ – "ପୂର୍ଣ୍ଣଚନ୍ଦ୍ର ଓ ବାଳସୂର୍ଯ୍ୟ ସକାଳେ ଓ ସନ୍ଧ୍ୟା ସମୟରେ ଅଧିକ ସୁନ୍ଦର ଦେଖା ଯିବାରୁ ତାଙ୍କେ ମନେ ଭାବିବେ ଯେ, ଆମେ ସେ ସ୍ତ୍ରୀ ମୁଖ ସହିତ ସମାନ, ସେଥିପାଇଁ ପ୍ରାତଃକାଳରେ ଓ ସନ୍ଧ୍ୟା ସମୟରେ ଦେବାଳୟରେ ବାଜୁଥିବା ଶଙ୍ଖ କହୁ ଛନ୍ତି,—ନା ତୁମ୍ଭେ ତାଙ୍କ ସହିତ ସମାନ ହେବ ନାହିଁ । ଶଙ୍ଖଙ୍କ ବୁଝି ପାରି ଚନ୍ଦ୍ର ଓ ସୂର୍ଯ୍ୟ ଦୁଃଖମନରେ ଯଥାକ୍ରମେ ସନ୍ଧିସ୍ଥାନ ଓ ଜନସ୍ଥାନ ବୁଲି ପୁଣି ସକାଳ ହେଲେ ଓ ସନ୍ଧ୍ୟାହେଲେ ମୁହଁ ଲୁଚାନ୍ତି । ସେ ସ୍ତ୍ରୀର ଦେହ ପ୍ରଭା ଏପରି ତେଜୀୟାନ୍ ଯେ, ତା ଦେହରେ ଥିବା ସହସ୍ର ସ୍ୱର୍ଣ୍ଣଯୁକ୍ତ ସ୍ୱର୍ଣ୍ଣର ଅଳଙ୍କାରମାନ ପିତ୍ତଳପ୍ରାୟ ହୀନପ୍ରଭ ଦେଖା ଯାଉଅଛି ।"

ତରୁଣୀ ଯେ ତୋର ସଂସାରର ସା ତହିଁଙ୍କ ମଧ୍ୟରେ ।
ବଡ଼ ସୁନ୍ଦରୀ ବୋଲାଇ ମନ୍ଦୋଦରୀ କାହିଁକି ବର୍ଣ୍ଣରେ ?
ବିଧ୍ୱଂସି ହେଲା ସେ ସଂଶୟ ରଭସେ ତାହାର ଦର୍ଶନେ ।
ବିଧାତା ଛନ୍ଦ ରଖିଛି ନାମେ ମନ୍ଦ ଏହାର ଯତନେ ।୮।
ବର ଦେବରଙ୍କୁ ମାରି ମୁଁ ତାହାକୁ ଆଣନ୍ତି ତୋ ପାଇଁ ।
ବଳୁଥିଲୁପେ ଯାଇଁ ତାଙ୍କ ସମୀପେ ଏ ଦଣ୍ଡ ସେ ଦେଇ ।
ଜନମି ଲୋକନେ ନିକ୍ଷିପ୍ତ ଦୂଷଣେ ସବଳେ ଖରହିଁ ।
ବିରଣ୍ଡି ସମରେ ଗଲେ ଯମପୁର ପଳାଇ ମୁଁ କହି ।୯।
ବଳଶ୍ରେଷ୍ଠ ଗର୍ବସ୍ତୁ ମାନ ଯେବେ ରକ୍ଷିବ ପାରିବ ।
ବାରିଧି ଜୀବନେ ଜୀବନ ତେଜିବା ତେବେ ମୋ ନୋହିବ ।

---

୧୦ମ ପଦ – ବଳଶ୍ରେଷ୍ଠ—ମହାପରାକ୍ରମୀ । ଗର୍ବସ୍ତୁମାନ—ନାକ କାନ କାଟିବାରୂପ ସୁବୁତର ଅପମାନ । ବାରିଧି—ସମୁଦ୍ର । ଜୀବନେ—ଜଳରେ । ଜୀବନ—ପ୍ରାଣ । ବଇଶ୍ରବଣ—ରାବଣ । ବିଶ୍ୱପୃଷ୍ଠରେ—ସମସ୍ତ ସଂସାରରେ ।

---

୮ମ ପଦ — "ତୁମ୍ଭର ଯୁବତୀମାନେ ଏ ସଂସାରରେ ଶ୍ରେଷ୍ଠା, ସୃଷ୍ଟି ସେମାନଙ୍କ ମଧ୍ୟରେ ମନ୍ଦୋଦରୀ ବଡ଼ ସୁନ୍ଦରୀ । ମାତ୍ର ତା ନାମ ମନ୍ଦୋଦରୀ କାହିଁକି ହେଲା—ମୁଁ ସେ କଥା ବୁଝୁ ନ ଥିଲି । ସେ ସ୍ତ୍ରୀକୁ ଦେଖିବାରୁ ମୋର ପୂର୍ବର ସଂଶୟ ଶୀଘ୍ର ବିନାଶ ହେଲା । ମନ୍ଦୋଦରୀର ନାମରେ ବିଧାତା କପଟ କରି ମନ୍ଦ ଶବ୍ଦ ସହ ସଂଯୁକ୍ତ ରଖିଅଛନ୍ତି । ( ମନ୍ଦୋଦରୀର ଶୋଭା ସେ ସ୍ତ୍ରୀର ସୌନ୍ଦର୍ଯ୍ୟଠାରୁ 'ମନ୍ଦ' ଅର୍ଥାତ୍ ନ୍ୟୂନ—ସେଥିପାଇଁ ବିଧାତା ତା ନାମ ମନ୍ଦୋଦରୀ ଦେଇଅଛନ୍ତି ) ।"

୯ମ ପଦ—"ତାର ସ୍ୱାମୀ ଓ ଦେବରକୁ ମାରି ମୁଁ ତୁମ୍ଭପାଇଁ ସେ ସ୍ତ୍ରୀକୁ ଆଣିବାକୁ ଇଚ୍ଛା କରି ଯୁଦ୍ଧର ବୁଝରେ ତାଙ୍କ ପାଖକୁ ଯିବାରୁ, ସେ ମୋତେ ଏ ଦଣ୍ଡ ଦେଲେ । ମୋର ଏ ଦଣ୍ଡ ଦେଖି ଖରେ, ଦୂଷଣ ଓ ଖର ସୈନ୍ୟ ସେନା ଶକ୍ତିମି ଯୁଦ୍ଧ କରନ୍ତେ, ଯମପୁରକୁ ଗଲେ । ମୁଁ ତୁମ୍ଭକୁ ସେ କଥା କହିବା ପାଇଁ ଆସିଲି ।"

୧୦ମ ପଦ—"ହେ ମହାପରାକ୍ରମି ! ଯେବେ ମୋର ସୁବୁତର ଅପ-ମାନକୁ ମୋତେ ଉଦ୍ଧାର କରି ପାରିବ, ତେବେ ସମୁଦ୍ର ଜଳରେ ମୋର ପ୍ରାଣ ତେଜିବା ନ ହେବ । (ମୋର ଏ ଅପମାନ ନ ମେଣ୍ଟିଲେ, ମୁଁ ସମୁଦ୍ରରେ ବୁଡ଼

ଦଶସ୍କନ୍ଧ ଶ୍ରବଣ କର କହେ ହେବ ସେ ଜାନକୀ ।
ବିଶ୍ୱ ପ୍ରପଞ୍ଚରେ ଏହେ ସୁପଞ୍ଚରେ ସୌନ୍ଦର୍ଯ୍ୟ ଆନ କି ? ।୧୦।
ବ୍ରହ୍ମର କର କର୍ଣ୍ଣ ନାସା ଚରଣ କାହିଁକି ଅବଜ୍ଞ ?
ବିଗତଶୋଚନା ତୁଅ ସୁଲୋଚନା ଦେଖ ମୋ ପ୍ରତିଜ୍ଞ ।
ବଳେ ବା କପଟେ ତା ଅବଳା ଏବେ ଆଣିବି ମୁଁ ହରି ।
ବନେ ଦେଖି ଭ୍ରାତ ଝୁରି,ହେବେ ହତ ଭକ୍ଷ ତୁ ବିହରି ।୧୧।
ବିରସ ଶୁଣି ସକଳ ରାଣୀଶ୍ରେଣୀ ଦୁର୍ଭାଗ୍ୟ ଶଙ୍କାରେ ।
ବିଧବା ହେବା ଡରେ ଦର ମନ୍ଦୋଦରୀ ବଚନ ଛଳାରେ ।
ବାହେ ସ୍ୱଲେଖନ ଶ୍ଳୋକେ ଅବଧାନ ନୋହୁଛ କାହିଁକି ?
ବାର କି ବାରିଜାକ୍ଷି ଅନୁକୂଳରେ ? ବୋଇଲା ଚାହିଁକି ।୧୨।

---

୧୧ଶ ପଦ—ଅବଜ୍ଞ—ଅନାଦର । ବିଗତଶୋଚନା—ଶୋକଶୂନ୍ୟା । ସୁଲୋଚନା—ସୁନେତ୍ରୀ । କପଟେ—କପଟରେ ବା ଛଳରେ ।

---

କରିବ) ” । ରାବଣ, ସୂର୍ପଣଖା କଥା ଯାକ ଶୁଣି କହନ୍ତି, “ସେ ନିଶ୍ଚୟ ଜଗତ ଜନନୀ ହେବ । ସମସ୍ତ ସଂସାରରେ ଏପରି ସ୍ତ୍ରୀ ଆଉ କେଉଁଠାରେ ନାହିଁ ।”

୧୧ଶ ପଦ—ରାବଣ ପୁଣି କହନ୍ତି, “ବ୍ରହ୍ମପଦାର୍ଥର ନାକ, କାନ ଓ ହାତଗୋଡ଼ ନାହିଁ—ତଥାପି ସେ ଅପମାନନା ପାଏ କି ? (ସେହିପରି ତୋର ନାସା କର୍ଣ୍ଣ ନ ଥିଲେ ମଧ୍ୟ ତୋତେ ଅପମାନନା କରିବାକୁ କେହି ସାହସ କରିବେ ନାହିଁ । କାରଣ ତୁ ମୋର ଭଉଣୀ ) । ହେ ସୁଲୋଚନା ! ତୁ ଶୋକ କର ନାହିଁ । ଏବେ ମୋର ପ୍ରତିଜ୍ଞା ଦେଖ । ବଳେ କି କପଟରେ ତାହାର ଭାର୍ଯ୍ୟାକୁ ମୁଁ ହରି ଆଣିବି । ତାହାହେଲେ ବନରେ ସେ ଦୁଇ ଭାଇ ସ୍ତ୍ରୀକି ଝୁରି ଝୁରି ମରିବେ । ତୁ ସେ ବନକୁ ଯାଇ ତାଙ୍କୁ ଭକ୍ଷଣ କରିବୁ ।”

୧୨ଶ ପଦ—ରାବଣର ବଚନ ଶୁଣିପାରି ( ବଳେ ବା କୌଶଳରେ ତାହା ଭାର୍ଯ୍ୟାକୁ ହରି ଆଣିବ ଏହି ବଚନ ) ରାଣୀମାନେ “ଆମେ ଏଣିକି ଆଉ ଅବୃତା ହେବୁ ନାହିଁ”—ଏହି ଆଶଙ୍କା କରି ବିରସ ହେଲେ । (ରାବଣ ସୀତାକୁ ଆଣିଲେ ଆଉ ଆମ୍ଭକୁ ପଚାରିବେ ନାହିଁ) । କିନ୍ତୁ ବୁଦ୍ଧିମତୀ ମନ୍ଦୋଦରୀ ବିଧବା ହେବା ଭୟରେ କହିଲା, “ବାହୁରେ ଆପଣା ହସ୍ତରେ ଲେଖିଥିବା ଶ୍ଳୋକକୁ ଦେଖୁନାହାନ୍ତି କାହିଁକି ? ।( ରାବଣ ବାହୁରେ ଲେଖି ରଖିଥିଲେ ଯେ, ସୀତାହରଣ ରାବଣ ମରଣ )।” ତା ଶୁଣି ରାବଣ କହନ୍ତି, “ହେ ପଦ୍ମଲୋଚନେ ! ଅନୁକୂଳ କାଳ ସମୟରେ ନିଷେଧ କରିବା ଉଚିତ କି ? ( ନିଷେଧ କର ନାହିଁ ) ।”

ବିମାନେ ଅବେଷ୍ଟି ଅଭିମାନେ ଯାଇ ବସ୍ତୁରୁ ମାନସେ ।
ବୁଦ୍ଧି ସ୍ଫୁରିଲା ମାରୀଚ ପାଶେ ଗଲା ବିନୟୀ ହୁହିଁ ସେ ।
ବୋଇଲା ଚାତକ ପ୍ରାୟ ମୁଁ ଯାଚକ ଆସିଛି ତୃଷାଏଁ ।
ବାରିଦ ତୁହି ଆଶାରେ ଉଦେ ହୋଇ ରସ ଦେ ତ୍ୱରିତେ ।୧୩।
ବୋଲେ ସୁନ୍ଦାତ୍ମଜ ତୁ ରାଜାଧିରାଜା କି ଦେବି ତୋତେ ମୁଁ ?
ବଧି ଜନନୀ ଭ୍ରାତା ମୋ ସୈନ୍ୟ ସେଣୀ ଜୀଇଛି କି ଧର୍ମୁଁ ।
ଦଶଭୁଜ ଭଣି ବଇରୀ କେ ପୁଣି କହ ମୋତେ ତାକୁ ।
ବାଢ଼ି ବନ୍ଧୁ ହୋଇ ନ ଦେଲୁ କାହିଁ ଶତ୍ରୁ ହେବାକୁ ।୧୪।
ବୁଡ଼ି ପାରାବାର ବାରିରେ ସୋଦରଙ୍କୁ ଦେଖାଇ ।
ଖରବେଶ ଧରି ମାରିବାକୁ ଅଛୁ ବାହାର ତାଡ଼କାଇ ।

---

୧୩ଶ ପଦ—ବାରିଦ—ମେଘ । ଆଶା—ଦିଗ । ରସ—ଜଳ, ଅନୁରାଗ ।

୧୪ଶ ପଦ—ସୁନ୍ଦାତ୍ମଜ—ମାରୀଚ । ରାଜାଧିରାଜ—ମହାରାଜ ।

୧୫ଶ ପଦ—ପାରାବାର—ସମୁଦ୍ର । ଖରବେଶ—ନଗ । ତାଡ଼କା ନନ୍ଦନ—ମାରୀଚ ।

---

୧୩ଶ ପଦ—ତତ୍ପରେ ରାବଣ ରଥରେ ବସି ଅଭିମାନଭରେ ମନରେ ଉଗ୍ର କରି ଯାଉ ଯାଉ ଏକ ବୁଦ୍ଧି ଦେଖାଗଲା । ( ମାରୀଚ ପାଖକୁ ଗଲେ କାର୍ଯ୍ୟ ସିଦ୍ଧି ହେବ—ଏହି ବୁଦ୍ଧି । ] ସେ ମାରୀଚ ପାଖକୁ ଯିବାରୁ ମାରୀଚ ତାକୁ ଦେଖି ବିନୟୀ ହେଲା । ରାବଣ କହିଲା, ମୁଁ ତୃଷାତୁର ଚାତକ ପକ୍ଷୀ ପ୍ରାୟ ପ୍ରାର୍ଥୀ ହୋଇ ଆସିଅଛି । ତୁ ମେଘ ପରି ମୋର ପ୍ରତ୍ୟାଶାରୂପ ଦିଗରେ ଉଦେ ହୋଇ ଅନୁରାଗରୂପ ଜଳକୁ ଶୀଘ୍ର ଦାନ କର ।" ( ମୋର କାମନା ପୂର୍ଣ୍ଣ କରିବାକୁ ତତ୍ପର ହୁଅ ) ।

୧୪ଶ ପଦ—ରାବଣର କଥା ଶୁଣି ମାରୀଚ ଉତ୍ତର ଦେଲା, "ତୁମ୍ଭେ ରାଜାଧିରାଜ. ତୁମ୍ଭକୁ ମୁଁ କି ଧନ ଦେବି ? ମୋ ଜନନୀ ତାଡ଼କା ଓ ସୈନ୍ୟସହ ଭାଇ ସୁବାହୁ ମଲେ । କେଉଁ ଧର୍ମବଳରୁ ମୁଁ ବଞ୍ଚି ରହିଛି ସିନା !" ଏହା ଶୁଣି ରାବଣ କହିଲା, "ତୋର ପୁଣି ଶତ୍ରୁ କିଏ କହ; ମୁଁ ତାକୁ ବିନାଶ କରିବି । ତୁ ମୋର ବନ୍ଧୁ ହୋଇ ଶୁଦ୍ଧି ହେବା ପାଇଁ ମୋତେ ଉଦର ନ ଦେଲୁ କାହିଁକି ?

୧୫ଶ ପଦ—ତତ୍ପରେ ରାବଣ ଭ୍ରାତୃଙ୍କ ଦେଖାଇବା ନିମିତ୍ତ ସମୁଦ୍ରରେ ସ୍ନାନ କରି ଅସି ନଗରେ ହାତ ବୁଲାଇ ଶତ୍ରୁ ମାରିବା ପାଇଁ ଭଳି କହିଲା, "ଆ, ତୋର ଶତ୍ରୁକୁ ମାରିବା ।" ତାହା ଶୁଣି ତାଡ଼କାନନ୍ଦନ ମାରୀଚ

ବୋଇଲ ତାଡ଼କାନନ୍ଦନ ତହିଁଣ ବସ ହେ ଭୂପତି ।
ବହ୍ନିରେ ଗୃହିବା ବିଷ ଜୀର୍ଣ୍ଣ ହେବା ଉପାୟେ ଅଛନ୍ତି ।୧୫।
ବିନା ଉପାୟ ରାଘବ ପରାଜୟ ସମର ସେ ଯମ ।
ବିଷ୍ଣୁ ହେଲେ ହେବ ଆଉ ତ ନ ଥିବ ତାହାଙ୍କୁ କେ ସମ ?
ବଡ଼ କହିଲୁ ତ ବୋଲେ ଲଙ୍କନାଥ ନ ଡର ତୁ କହୁ ।
ତାଙ୍କ ବିଷ୍ଣୁ ଚକ୍ର ମୋ ହୃଦେ ପଦକ ପରାୟେ ଲଗିଛି ।୧୬।
ବୋଲୁ ଯେ ରାଘବ ତାହାର ପୂର୍ବପୁରୁଷ ମାରିଛି ।
ବିଧାତା ଘଟନ ତୋର ମୋର ପୁଣ ବଇରୀ ହୋଇଛି ।
ବଧି ତୋ ଜନନୀ ଛେଦିଛି ମୋ ଭଗ୍ନୀ ନାସିକା ଶ୍ରବଣ ।
ବଳ ଭ୍ରାତା ହତ ହେଲେ ଏକମତ ବାଞ୍ଛୁବା ମାରଣ ।୧୭।
ବକ୍ରମାଳୀକି ମାରୀଚ ଛଳକୁ ତୋ ସାମର୍ଥ୍ୟ କହାଇ ।
ବାନ୍ଧିଲା ଅର୍ଜୁନ ତୋତେ ତା ଛେଦନ ଦର୍ପ ଯେ ଛଡ଼ାଇ ।

---

୧୮ଶ ପଦ—ବକ୍ରମାଳୀ—ରାବଣ । ସାମର୍ଥ୍ୟ—ବଳ । ବାହ୍ୟହ ଜାତୁକ ।

---

କହିଲା, "ହେ ରାଜା ବସ—କଥା ଶୁଣ । ଅଗ୍ନିରେ ଗୃହଣିବାର, ବିଷ ଖାଇ ଜୀର୍ଣ୍ଣ କରିବାର ଉପାୟ ଅଛି ।"

୧୬ଶ ପଦ—"ମାତ୍ର ରାମଙ୍କ ଆଗେ ସବୁକୁ ଉପାୟ ନାହିଁ । ସେ ରାମ ସମର ଯମ । ମୁଁ ବିଚାରୁଛି, କେବଳ ବିଷ୍ଣୁ ସେ ରାମଙ୍କୁ ସମାନ ହୋଇ ପାରେ । (ମାତ୍ର ଆଉ କେହି ତା ସମାନ ନାହାନ୍ତି) ।" ମାରୀଚ ଏହା କହନ୍ତେ ରାବଣ ଉତ୍ତର ଦେଲା, "ତୁ ତ ବଡ଼ କଥାଟାଏ କହିଲୁ ? ସେ ବିଷ୍ଣୁ ସଙ୍ଗେ ସମାନ ହେବ ବୋଲି ଯାହା କହିଲୁ, ସେ ବିଷ୍ଣୁକୁ ତ ମୁଁ ଡରେ ନାହିଁ । କାରଣ ସେ ବିଷ୍ଣୁର ଚକ୍ର (ସୁଦର୍ଶନଚକ୍ର) ମୋ ବକ୍ଷ ସ୍ଥଳରେ ବାଜି ପଦକ ପରି ରହିଅଛି ।"

୧୭ଶ ପଦ—'ତୁ ଯେଉଁ ରାଘବକୁ ଏତେ ବଳିଷ୍ଠ ବୋଲି କହୁଛୁ; ମୁଁ ତାର ପୂର୍ବପୁରୁଷ ଅନରଣ୍ୟ ରାଜାକୁ ମାରିଛି । ଦୈବଯୋଗରେ ସେ ରାଘବ ପୁଣି ତୋର ଓ ମୋର ଶତ୍ରୁ ହୋଇଛି । ସେ ତୋର ମାତାକୁ ବଧ କରିଛି ଓ ମୋ ଭଗ୍ନୀ ଶୂର୍ପଣଖାର ନାସା କର୍ଣ୍ଣ ଛେଦନ କରିଅଛି । ତୋହର ଭାଇକୁ ଓ ମୋର ଭାଇ ଖର ଦୂଷଣାଦିଙ୍କୁ ସୈନ୍ୟସହ ବିନାଶ କରିଅଛି । ତେଣୁ ଦୁହେଁଯାକ ମିଶି ତାର ମରଣ କଥା ବିଚାର କରିବା ।"

୧୮ଶ ପଦ—ରାବଣର କଥା ଶୁଣି ମାରୀଚ ଛଳ ପୂର୍ବକ କହିଲା, "ତୋର ସାମର୍ଥ୍ୟ କେତେ କି ? ତୋତେ ଯେଉଁ ସହସ୍ରାର୍ଜ୍ଜୁନ ବାନ୍ଧିଥିଲା, ସେହି

ବର୍ଣ୍ଣ ନ ମସ ଦାତୃତ୍ୱ ପଣ୍ଡ ହୋଇ ବିଶେଷ କରନା ।
ବିମ୍ବ ଜଳ ଥପ୍ର କୂପେ ଫିଙ୍ଗ ପ୍ରାପ୍ତ ବୁଡି ତୁ ମରନା ।୧୮।
ବୋଲି ସ୍ୱାମାମଣି ସ୍ୱାମାଙ୍କ କେ ଭଣି ବଧୂକୁ ବିଧୁକୁ ।
ବେଗେ ଅଗେ ଦୃଷ୍ଟି ସ୍ୱମା ମଣି କଷ୍ଟି ହୃଦୟେ ବଧିକୁ ।
ବିଶ୍ରମ ଆଶ୍ରମ କହୁ ହୋଇ ଭ୍ରମ ପଛକୁ ଅନାଇ ।
ବନ୍ଧିବା ଠାଣି ପୂର୍ବରୁ ଦଣ୍ଡ ପୁଣି ବଞ୍ଚି ମୁଁ ପଳାଇ ।୧୯।
ବିଜନେ ବାସ ଦେଲଟି ପୁଣ ତ୍ରାସ ଦେଖିଲି ସ୍ୱପନେ ।
ବିନିଦ୍ର ହୋଇ ତପସ୍ୱୀ ବେଶ ବହି ରହିଛି ଏ ସ୍ଥାନେ ।

---

୧୯ଶ ପଦ—ବଧୂକୁ—ସ୍ତ୍ରୀକୁ । ବିଧୁକୁ—ଚନ୍ଦ୍ରକୁ । ବିଶ୍ରମ—ବିଶ୍ରାମ । ଆଶ୍ରମ—ଉପବନ ।

୨୦ଶ ପଦ—ବିଜନ—ନିର୍ଜ୍ଜନ ସ୍ଥାନ । ତ୍ରାସ—ଭୟ । ବିନିଦ୍ର—ଉଜାଗର । ବର୍ଣ୍ଣମୂର୍ତ୍ତି—ସ୍ୱବର୍ଣ୍ଣ । ଶଙ୍କଚମସ୍ତି—ଶଙ୍କସ୍ଥଗ ।

---

ସହସ୍ରାର୍ଜ୍ଜୁନର ଛେଦନକାରୀ ପର୍ଶୁରାମଙ୍କ ଶବ୍ଦ ଯେଉଁ ସ୍ୱମ ଶବ୍ଦ କହିଅଛନ୍ତି, ଏ ସେହି ସ୍ୱମ (ଅର୍ଥାତ୍ ତୋ ଅପେକ୍ଷା ବହୁତ ଗୁଣରେ ବଳିଷ୍ଠ ଅଟନ୍ତି) । ତୁ ତାହାଙ୍କ ସହିତ ଶତ୍ରୁତା କର ନାହିଁ, ତାହାଙ୍କ ସ୍ଥାୟୀ ବର୍ଣ୍ଣ ମସ୍ତ ନାହିଁ । (ଗୋଟିଏ ତାନ୍ତ୍ରିକ ଜାଲରେ ପଡ଼ିଲେ ସେ ପ୍ରଲୋଭନ ଦେଖାଇ ଅନ୍ୟ ତାନ୍ତ୍ରିକମାନଙ୍କୁ ଆଣି ଜାଲରେ ବନ୍ଧନ କରାଏ, ତେଣୁ ଗୋଟିକ ଯୋଗୁଁ ବଂଶକ୍ଷୟ କରନ୍ତି) । କୂପ ଜଳରେ ନିଜର ପ୍ରତିବିମ୍ବ ଦେଖି ସିଂହ ଗର୍ବରେ ତେଇଁପଡ଼ି ବୁଡି ମଲାପରି ତୁ ମର ନାହିଁ ।"

୧୯ଶ ପଦ—"ବେହି ଆପଣା ସ୍ତ୍ରୀକୁ 'ସ୍ୱାମାମଣି' ବୋଲି କିମ୍ବା ଦେହି ଚନ୍ଦ୍ରକୁ 'ସ୍ୱମାଙ୍କ' ବୋଲି କହିବାର ଶୁଣିଲେ, ମୁଁ ଶୀଘ୍ର ଆଗର ଦୁଇ ଅକ୍ଷର 'ସ୍ୱମ'କୁ ମନରେ ଆଣି ସ୍ୱମ ଆଗରୁ ଅଛି ବିନାଶ କରିବେ କି ? ଏହି ଭୟରେ ଅସ୍ଥିର ହୋଇ ଉଠେ । (ସ୍ୱମ ଶବ୍ଦ ଯେ କୌଣସି ପ୍ରକାରେ ହେଉ ନା କାହିଁକି, ମୋ କାନରେ ପଡିଲେ, ମୋ ପ୍ରାଣ ଥରି ଉଠେ ) । କେହି ବିଶ୍ରମ କିମ୍ବା ଆଶ୍ରମ କହିଲେ, ମୁଁ ଭ୍ରମବଶତଃ ପଛକୁ ଅନାଇଁ ଦିଏ ଏବଂ ପୂର୍ବେ ସ୍ୱମଙ୍କର ଶର ବନ୍ଧିବା ଠାଣି ମନରେ ପଡି ଯିବାରୁ ଭୟରେ ଥରି ମୁଁ ପଳାଇ ଯାଏ । ( ବିଶ୍ରମ ଓ ଆଶ୍ରମର ପଛ ଦୁଇ ଅକ୍ଷର ସ୍ୱମ ହୋଇଥିବାରୁ, ସ୍ୱମ ପଛରୁ ଆସି ଶର ବନ୍ଧିଲେ କି ? ଏହି ଭୟ ହୁଏ) ।"

୨୦ଶ ପଦ—"'ସ୍ୱମ ଶବ୍ଦ ଶୁଣିବା ହେତୁରୁ ଯେ ଭୟ ଜାତ ହୁଏ, ସେହି ଭୟ ଯୋଗୁଁ ମୁଁ ନିର୍ଜନ ସ୍ଥାନରେ ବାସ କରୁଅଛି । (ନିର୍ଜନରେ ରହିଲେ ସ୍ୱମ ଶବ୍ଦ ମୋ କାନକୁ ଆସିବ ନାହିଁ । ତେଣୁ ମନ ଭୀତ ହେବ ନାହିଁ) ।

ବତ୍ସା ଦଶକଣ୍ଠ ନ ଭଙ୍ଗ ମୋ ଶ୍ରଦ୍ଧା ମାରିବା କପଟେ ।
ବିହର ଶଠ ଚମସ୍ୱରୂପ ଧରି ତୁ ତାଙ୍କ ନିକଟେ ।୨୦।
ଦୂରେ ନେଇ ରାମ ତ୍ରାହି ଲକ୍ଷ୍ମଣ କହି ହୋ ଅନ୍ତର ।
ବଟୁ ବେଶେ ଭିକ୍ଷା ମାଗି ପଦ୍ମାକ୍ଷୀ ହରିବି ମୁଁ ତାର ।
ବୋଲେ ମାରୀଚ ରାଜା ଏ ଲୋଭ ମୁଞ୍ଚ ତୁ ମଧୁ ସଦୃଶ
ବଂଶ ପଦ୍ମବନ କରିଛୁ ବର୍ଦ୍ଧନ ସୁମନ ପ୍ରକାଶ ।୨୧।
ବେଶ୍ମରେ ସୀତା ଶୀତ ହେଲେ ମିଳିତା ସେ ରାମ ଲକ୍ଷ୍ମଣ ।
ବରଷି କରରୁ ତୁଷାର ଶରକୁ ନାଶିବେ ତତ୍‌କ୍ଷଣ ।
ବୈଦ୍ୟ ସୁବୁଦ୍ଧି ବାଣୀ ତାର ଔଷଧି ନ ରୁଚି ଭକ୍ଷଣେ ।
ବ୍ୟାଧି ନାଶକାର ଯେବେ ତା ନ କର ପ୍ରବର୍ତ୍ତି ମରଣେ ।୨୨।

---

ତଥାପି ସ୍ୱପ୍ନରେ ରାମଙ୍କୁ ଦେଖି ବ୍ୟାକୁଳିତ ହେଉଅଛି । ସେଥିପାଇଁ ଅନିଦ୍ରାରେ ରହି ତପସ୍ୱୀ ବେଶ ଧରି, ଏ ସ୍ଥାନରେ ରହିଅଛି । (ନିଦ୍ରାଗଲେ ସିନା ରାମଙ୍କୁ ସ୍ୱପ୍ନ ଦେଖି ଭୀତ ହେବି )।" ଏହା ଶୁଣି ରାବଣ କହିଲା, 'ତୁ ମୋ ଶ୍ରଦ୍ଧା ଭଙ୍ଗ ନାହିଁ, ରାମକୁ କପଟରେ ମାରିବା । ତୁ ତାଙ୍କ ଆଗରେ କନକ ମୃଗ ହୋଇ ଖେଳିବୁ ।"

୨୧ଶ ପଦ—"ତୋର କନକ ରୂପ ଦେଖି ସେ ତୋତେ ମାରିବାକୁ ବାହାରିଲେ ତୁ ରାମଙ୍କୁ ବହୁତ ଦୂରକୁ ନେଇଯାଇ 'ହେ ଲକ୍ଷ୍ମଣ ତ୍ରାହି' ଏହା କହି ଅନ୍ତର ହୋଇଯିବୁ । ଲକ୍ଷ୍ମଣ ତୋ ଡାକ ଶୁଣି ଦୂରକୁ ଚାଲିଗଲେ, ପଦ୍ମନୟନା ସୀତାଙ୍କୁ ମୁଁ ବ୍ରହ୍ମଚାରୀ ବେଶରେ ଭିକ୍ଷା ମାଗି ହରଣ କରି ନେଇ ଆସିବି ।" ଏହା ଶୁଣି ମାରୀଚ କହିଲା, "ହେ ରାଜା ! ଏ ଲୋଭ ଛାଡ଼, ତୁ ବସନ୍ତକାଳ ପ୍ରାୟ ହୋଇ ତୋ ବଂଶକୁ ପଦ୍ମବନ ସଦୃଶ ବଢ଼ାଇଅଛୁ (ବସନ୍ତକାଳରେ ପଦ୍ମବନ ବିଶେଷ ବୃଦ୍ଧି ହୋଇଥାଏ) । ଏବେ ସେ ବଂଶପୁଷ୍ପ ପ୍ରତି ଉତ୍ତମ ମନ ଦେଇ ବିଚାର କର । (ଅର୍ଥାତ୍ ନିଜ ବଂଶ ପ୍ରତି ସ୍ନେହ ଦୃଷ୍ଟି ରଖି ତାକୁ ବଢ଼ା—ନଷ୍ଟ କରିବାର ପଥ ଖୋଜ ନାହିଁ )।"

୨୨ଶ ପଦ—"ବଧୂରେ ସୀତା ଶୀତକାଳ ହୋଇ ଲଙ୍କାରେ ପ୍ରବେଶ କଲେ, ରାମ ଲକ୍ଷ୍ମଣରୂପ ଚନ୍ଦ୍ର, ସ୍ୱୀୟ କରକିରଣରୁ ତୁଷାରରୂପ ଶର ବରଷି ତୋର ବଂଶ ପଦ୍ମବନକୁ ବିନାଶ କରିବେ । ପୁଣି ଯେଉଁ ରୋଗୀ ଉତ୍ତମ ବୈଦ୍ୟର ପଥ୍ୟ କଥା ନ ମାନେ ଓ ଔଷଧ ଗ୍ରହଣ ନ କରେ, ତାହାର ରୋଗ ଭଲ ହୁଏ ନାହିଁ, ସେ ବିନାଶ ହୁଏ । (ବୁଦ୍ଧିମାନ ଲୋକର ହିତ କଥା ଯେ ଗ୍ରହଣ ନ କରେ ସେ ମରେ । ମୁଁ ତୋତେ ଯେଉଁ ହିତ କଥା କହୁଛି, ତା ଅବହେଳା କର ନାହିଁ )।"

ବୋଲୁଛୁ ମଧୁ ପ୍ରକାର ଭେଦେ ପୁଣି ମହୀଶ ଅପଣ ।
ବାର୍ଦ୍ଧିଜା ଦୁର୍ଗା ଲେଖେ ଯାହା ହୋଇଲେ ତାହା କି ନ ଜାଣ ?
ବଳେ ଯେ ଯାହାରେ ଊଣା ସ୍ନେହ ତାହାରେ ଅବଶ୍ୟେ କି ଦ୍ୱନ୍ଦ ।
ବହୁ ଅହଂବୁଦ୍ଧି ମନ କରୁ ସିଦ୍ଧି କପୁଳେ ଯେ ମନ୍ଦ । ୨୩ ।
ବିଶ୍ରବା ସୁତ କୋପରେ ପ୍ରଜ୍ୱଳିତ ଶୁଣି ତା ବଚନ ।
ବିକୋଷ କରଣ କରବାଳ କର ବାଳରେ ତା ମନ ।
ବୋଇଲା ଅବଜ୍ଞା କରୁ ମୋର ଆଜ୍ଞା ମାନବ ଉଚ୍ଛିଷ୍ଟ !
ବାଳକ ମୁଁ ସତେ ତୁ ବୁଝାଉ ମୋତେ କେ ତୋତେ ସମ୍ଭାଳୁ ? ।୨୪
ବିଶ୍ୱରିଲି ତାହିଁକେଣ୍ଣୁ ଏ ମାରିଲେ ହୋଇବ ଅମୋକ୍ଷ ।
ବୈକୁଣ୍ଠେ ନେମନ୍ତ୍ରି ସମ କରୁ ହତ ଦେଖିଛୁ ପ୍ରତ୍ୟକ୍ଷ ।

---

୨୪ଶ ପଦ—ବାର୍ଦ୍ଧିଜା—ଲକ୍ଷ୍ମୀ ।

---

୨୩ଶ ପଦ—"ମୁଁ ତୁମ୍ଭକୁ ତୋତେ ମଧୁ କହିଅଛୁ, (ପୂର୍ବେ 'ମଧୁ' ବସନ୍ତକାଳ ହୋଇଥିଲା, ବର୍ତ୍ତମାନ ମଧୁଦୈତ୍ୟ ଅର୍ଥ ହେଲା) ପୁଣି ତୁ ତ 'ମହୀଶ' ସଜ୍ଞା ଅଟୁ । ପ୍ରକାର ଭେଦରେ ମହିଷ ଅର୍ଥାତ ମହିଷାସୁର ହେଲା । ମଧୁଦୈତ୍ୟ ଲକ୍ଷ୍ମୀଙ୍କ ଲେଖରେ ଓ ମହିଷାସୁର ଦୁର୍ଗାଙ୍କ ଲେଖରେ ଯାହା ହେଲେ, ତାହା ତୁ କଣ ଜାଣୁ ନାହିଁ ? [ତୁ ସୀତାଙ୍କଠାରେ ଲୋଭ କଲେ ତାଙ୍କ ପରି ନାଶ ଯିବୁ] । ଯେ ଯାହାଠାରୁ ବଳରେ ଊଣା, ସେ ତାହାଠାରେ ସ୍ନେହ ତା ଅବଶ୍ୟ କରେ କି ? ତୁ ଅହଂ ଗୁଣରେ ଗର୍ବ ଓ ମର୍ଯ୍ୟାଦାକୁ ବଢ଼ାଉ ଅଛୁ । ସେଥିରୁ ଯେ ମନ୍ଦ ଫଳ ଜାତହେବ, ଏହା ବୁଝିବା ଉଚିତ ।"

୨୪ଶ ପଦ—ମାରୀଚ କଥା ଶୁଣି ରାବଣ କ୍ରୋଧରେ ଜଳି ଉଠି ଖଡ୍ଗକୁ ଖାପରୁ ବାହାର କରି ମାରୀଚ ବାଳକୁ ବାମ ହସ୍ତରେ ଧରିବାକୁ ମନ କଲା । ପୁଣି କହିଲା; "ରେ ମାନବ ଉଚ୍ଛିଷ୍ଟ ! [ଶିର ମନୁଷ୍ୟଙ୍କୁ ଭକ୍ଷ୍ୟ କରୁ ଅଥବା ମନୁଷ୍ୟ ପଛ ଖାଉ] ମୋର ଆଦେଶ ଅବମାନନା କରୁଅଛୁ । ମୁଁ କଣ ବାଳକ ହୋଇଛି ଯେ ତୁ ମତେ ଶିକ୍ଷା ଦେଉଅଛୁ ? ଏବେ ତୋତେ କିଏ ଆସି ରଖିବ ?"

୨୫ଶ ପଦ—ରାବଣର ଏପରି ନିଷ୍ଠୁର ବଚନ ଶୁଣି ମାରୀଚ ବିଚାରି କଲା, 'ଏ ରାବଣ ମାରିଲେ, ମୁଁ ଅମୋକ୍ଷ ରହିବି । ମାତ୍ର ରାମ ଯାହାକୁ ବିନାଶ କରନ୍ତି ସେ ବୈକୁଣ୍ଠକୁ ଗମନ କରେ, ମୁଁ ଏହା ସାକ୍ଷାତରେ ଦେଖିଛି । [ମୋର ମରଣ ତ ନିଶ୍ଚିତ, ରାବଣ ହାତରେ ମଲେ ନରକଗତି ଓ ରାମଙ୍କ ହାତରେ ମଲେ ବୈକୁଣ୍ଠ ପ୍ରାପ୍ତି, ତେବେ ରାମଙ୍କ ହାତରେ ନ ମରିବି କାହିଁକି] ?' ଅନନ୍ତର ରାବଣକୁ ଅଭୟ ହୋଇ କହିଲା, "ଯେପରି ଶୋଣସ୍ୱର ପାଣି ଭାଗରେ

ଜଳଅଭ ଜନ୍ତୁ ଅଗ ମୁହିଁ ତୁହି ମରିବୁ ସଙ୍କଟରେ ।
ଜାଗ୍ରତ ହସ ଶୁଣି ଗ୍ରାହ ବଂଶ ଯେମନ୍ତେ ତାହାରେ । ୨୫ ।
ବିଷାଣ ତୀକ୍ଷଣ ଖୁର ସୁଘଟନ ମାଣିକ୍ୟ ନିର୍ମିତ ।
ବିରାଜେ ସ୍ୱର୍ଣ୍ଣ ଅଙ୍ଗନେ ଲୋମପନ୍ତି ମୁକ୍ତା ମର୍କତ ।
ବିମଳ କ୍ଷୁଦ୍ର ନୀଳେନ୍ଦ୍ରମଣି ବୃନ୍ଦ ପୁଚ୍ଛ କି ଚାମର ?
ବିଚିତ୍ର ମୃଗ ହୋଇ ବେଗ ବିହରେ ରାବଣ ଅଗର । ୨୬ ।
ବସୁ ପ୍ରାପତ କୃପଣ ଧନବନ୍ତ ହୋଇଲା ଅନାଇ ।
ବାହିଲା ବିମାନ ପଞ୍ଚବଟୀ ବନ ବସାଇ ରସାଇ ।
ବେଗେ ମାୟାମୃଗ ଯାନ କରି ତ୍ୟାଗ ଅରଣ୍ୟେ ପଶିଲା ।
ବୈଦେହୀ ଚତ୍ୱରେ ଖେଳନ୍ତେ ସତ୍ୱରେ ଦେଖି ସେ ରସିଲା ।୨୭।
ବୀଣାଜିଣା ଭାଷୀ ଶ୍ରୀରାମରେ ଭାଷି ଏ ମୃଗେ ମୋ ଶ୍ରଦ୍ଧା ।
ବସନ୍ତି ଅଙ୍ଗନେ ଅଛ ସୁରଞ୍ଜନେ ପିବ କି ଏ ବାଧା ?

---

୨୭ଶ ପଦ—ଚତ୍ୱର – ଅଗଣା ।

---

ଅଗ ମୀନ ସବୁ ଓ ପରେ ପାଣି ଶୁଖିଗଲେ କୁମ୍ଭୀରମାନେ ମରନ୍ତି, ସେହିପରି ଅଗ ମୁଁ ମରିବି, ସଙ୍କଟରେ ତୁ ବିନାଶ ହେବୁ ।”

୨୬ଶ ପଦ—(ଏହା କହି ମାରୀଚ, ମାୟାମୃଗ ରୂପ ଧାରଣ କଲା ) ମାଣିକ୍ୟ ନିର୍ମିତ ତୀକ୍ଷ୍ଣ ଶୃଙ୍ଗ ଖୁରୁ ଓ ଖୁରା ଖୁବ ସୁନ୍ଦର ଦିଶୁଅଛି । ସୁବର୍ଣ୍ଣ ନିର୍ମିତ ଚର୍ମରେ ମୁକ୍ତା ଓ ମରକତ ମଣିର ଲୋମ ସବୁ ବିରାଜୁଅଛି । ନିର୍ମଳ ଇନ୍ଦ୍ରନୀଳମଣି ସଦୃଶ କ୍ଷୁଦ୍ର ପୁଚ୍ଛ ଚାମର ପ୍ରାୟ ଶୋଭା ପାଉଅଛି । ଏହିପରି ଗୋଟିଏ ସୁନ୍ଦର ମୃଗ ହୋଇ ମାରୀଚ ରାବଣ ଅଗରେ ବିହାର କଲା ।

୨୭ଶ ପଦ—ରାବଣ ସେ ବିଚିତ୍ର ମୃଗକୁ ଦେଖି କୃପଣ ଓ ଦରିଦ୍ର ଲୋକ ଧନ ପାଇଲା ପ୍ରାୟ ଆନନ୍ଦିତ ହେଲା । ତତ୍ପରେ ସେ ମୃଗକୁ ଶ୍ରଦ୍ଧାରେ ରଥରେ ବସାଇ ପଞ୍ଚବଟୀ ଅରଣ୍ୟକୁ ରଥ ଚଳାଇ ନେଲା । ସେଠାରେ ପହଞ୍ଚି ସେ ମାୟାମୃଗ ଖରତରରେ ବିମାନ ତ୍ୟାଗ କରି ଯାଇ ବନ ମଧ୍ୟରେ ପ୍ରବେଶ କଲା । ସେ ମୃଗ ରାମଚନ୍ଦ୍ରଙ୍କ ପର୍ଣ୍ଣ କୁଟୀରର ଅଗଣାରେ ଶୀଘ୍ର ବିହାର କରନ୍ତେ, ସୀତା ତାକୁ ଦେଖି ଶ୍ରଦ୍ଧା ପ୍ରକାଶ କଲେ ।

୨୮ ଶ ପଦ— ବୀଣାଜିଣାଭାଷୀ ସୀତା ରାମଚନ୍ଦ୍ରଙ୍କୁ କହିଲେ,“ଏ ମୃଗଠାରେ ମୋହର ଶ୍ରଦ୍ଧା ହେଉଅଛି । ଏ ମୃଗର ଚର୍ମରେ ମୁଁ ଆନନ୍ଦର ସହିତ ବସନ୍ତି; ଏହାର ମନୋହର ପୁଚ୍ଛକୁ ବେଶ ବନ୍ଧନ ପାଇଁ ଚର୍ଚ୍ଚିତ କରନ୍ତି ।

ବସନେ ଝବରୀ କରନ୍ତି ତହିଁସ୍ତ ଏ ଗୃହ୍ଣ ଗୃମର ।
ବାଣମ ଧନୁ ଧରି ରାଘବ ଭଣନ୍ତି ଏ କେତେ ମାତର ? ୨୮ ।
ବଦନ୍ତି ଲକ୍ଷ୍ମଣ ଏ କପଟୀ ଏଣେ ମାରୀଚ ନିଶ୍ଚୟ ।
ବିଲୋକିବା ଆଉ ଶୁଣିଛ ବାତାୟୁ ସ୍ୱର୍ଣ୍ଣରତ୍ନମୟ ।
ବିନୋଦ ଦେଖାଇ ଦୂର କରି ନେଇ ନୃପଜମାନଙ୍କୁ ।
ବଧ କରେ ତୁଙ୍ଗ ଶୃଙ୍ଗରେ ଏ ରଙ୍ଗ ଆସଇ ମନକୁ । ୨୯ ।
ବଧିବି ଅବଶ୍ୟ ମୃଗ ବା ରାକ୍ଷସ ଶ୍ରୀରାମ ବୋଇଲେ ।
ବରାରୋହା ଭୀରୁ ନାସ୍ତି କରୁ କରୁ ତା ପଛେ ଧାଇଁଲେ ।
ବୋଇଲେ ଲକ୍ଷ୍ମଣ ସୀତାର ରକ୍ଷଣ ଲାଗଇଛି ତୋତେ ।
ବହୁ ମାୟାବୀ ଅସ୍ରପେ ଏ ଅଟବୀ ଭ୍ରମନ୍ତି ନିରତେ । ୩୦ ।

---

୨୮ଶ ପଦ—ଅଜିନ—ମୃଗଚର୍ମ ।

୨୯ଶ ପଦ—ଏଣ—ମୃଗ । ବିଲୋକିବା—ଦେଖିବା । ବାତାୟୁ—ମୃଗ । ନୃପଜନମାନଙ୍କୁ—ରାଜପୁତ୍ରମାନଙ୍କୁ । ତୁଙ୍ଗ—ଉଚ୍ଚ ।

୩୦ଶ ପଦ—ବରାରୋହା—ପରମା ସୁନ୍ଦରୀ । ଭୀରୁ—ଭୟାର୍ତ୍ତ । ଅସ୍ରପେ—ରାକ୍ଷସମାନେ । ଅଟବୀ—ବନ ।

---

ଏହାକୁ ବାନ୍ଧି ପାରିବକି ? " ସୀତାଙ୍କ କଥା ଶୁଣି ରାମଚନ୍ଦ୍ର ବାମହସ୍ତରେ ଧନୁ ଧରି କହିଲେ, "ଏ କା କେତେ ମାତ୍ର ? ( ଏହାକୁ ଅକ୍ଲେଶରେ ମାରି ଦେବି ।)"

୨୯ଶ ପଦ—ସେତେବେଳେ ଲକ୍ଷ୍ମଣ କହିଲେ, "ଏ ମାୟାମୃଗ ନିଶ୍ଚୟ ମାରୀଚ ରାକ୍ଷସ ଅଟେ । ସ୍ୱର୍ଣ୍ଣରତ୍ନମୟ ମୃଗ ଦେଖିବା ତ ଦୂରର କଥା—କେବେ ଶୁଣିଛ କି ? ମାରୀଚ ରାକ୍ଷସ ଏ, କପଟରେ ମୃଗ ହୋଇ ରାଜପୁତ୍ରମାନଙ୍କୁ କ୍ରୀଡ଼ା ଛଳରେ ଅନ୍ତର କରାଏ ଏବଂ ପର୍ବତର ଉଚ୍ଚ ଶୃଙ୍ଗରେ ବଧ କରେ—ଏକଥା ମୋ ମନକୁ ଆସୁଛି ।"

୩୦ଶ ପଦ— ଲକ୍ଷ୍ମଣଙ୍କ କଥା ଶୁଣି ଶ୍ରୀରାମ କହିଲେ, "ଏ ମୃଗ ହେଉ ବା ରାକ୍ଷସ ହେଉ, ନିଶ୍ଚୟ ଏହାକୁ ବଧ କରିବି ।" ଲକ୍ଷ୍ମଣଙ୍କ କଥାରେ ଭୟ ପାଇ ସୀତା ମନା କରୁ କରୁ ରାମଚନ୍ଦ୍ର ମୃଗ ପଛରେ ଧାଇଁଲେ । ସେତେବେଳେ କହିଗଲେ, "ହେ ଲକ୍ଷ୍ମଣ ସୀତାଙ୍କୁ ରକ୍ଷା କରିବା ତୋତେ ଲାଗିଲା । ବହୁ ମାୟାବୀ ରାକ୍ଷସମାନେ ନିରନ୍ତର ଏ ବନରେ ବୁଲୁଅଛନ୍ତି ।"

ଝଟୁର ରକ୍ଷ ଝଟୁ୍ୟ ପ୍ରାୟ ପ୍ରତ୍ୟକ୍ଷ ହୁଅଇ ନୁହଇ ।
ଝହୁରେ ନେଇ ଲକ୍ଷ୍ମଣ ସାନ୍ଦ୍ର କହୁ ନିବାର ଧ୍ୱଜଇ ।
ବଧୂରବର ଧୀର ସୀତା-ଦେବର ସେ ଶବ୍ଦ ଶୋତାରେ ।
ବସୁମତୀପୁତ୍ରୀ ବୋଇଲେ ସୌମିତ୍ରି ଯାଅ ହେ ସତ୍ୱରେ ।୩୧।
ଝପନ୍ତ ପତନ ପଡ ତବ ନାମ ଧର ଯେ ଡାକନ୍ତି ।
ଝଣ୍ଟେ ଏକ ବୀର ଏ ଜଗତ ଟିର ତାଙ୍କର କି ସତ !
ବୋଲନ୍ତେ ଲକ୍ଷ୍ମଣ ମୈଥିଳୀ ଭାଷଣ ଛଦ୍ମେ କି ଗମନ
ବକ୍ଷସ୍ଥି କର ମୋତେ ଦେବୁ ଝର୍ତ୍ତୃର ଭରତ ସଜନ ।୩୨।
ବୈଶ୍ୱାନରେ ମୁଁ ପଶିବ ବୋଲି ଖରେ ସେ ପାଣେ ଘଟିଥ ।
ବାହ୍ୟ କର ଏକ ଅମ୍ବା ହୁସ୍ତେ ହେବ ଲକ୍ଷ୍ମଣ ଭାଷିତ ।
ବ୍ୟାଘ୍ର ପସ୍ୱେ ଗତକ ବ୍ୟଗ୍ର ବଲେ ହୋଇ ସେ କ୍ଷୁଧିତ ।
ଝଜନ ବନ ଶଙ୍କା ଘେନି ଜାନକୀ ହୁଅନ୍ତେ ସ୍ତୁପତ ।୩୩।
ବହୁ ଯତବେଶ ରାବଣ ଯେ ଅସ୍ୟ ଲୁକକୁ ଲଙ୍ଘଇ ।
ଝଲୁଡ ଅଙ୍ଗ ଭରଙ୍କ ବରମାଳେ ଶଙ୍କର ଜପଇ ।

---

୩୩ଶ ପଦ—ଈଙ୍ଗିତ—ଇଚ୍ଛା ।

---

୩୧ଶ ପଦ—ସେ ରାକ୍ଷସ ଅଳ୍ପ ଦୂରରେ ବଜ୍ରୂଳ ପ୍ରାୟ ଦେଖା ହୋଇ ପୁଣି ଅଦୃଶ୍ୟ ହୋଇ ଯାଏ । ଏହିପରି ରାମଙ୍କୁ ବହୁତ ଦୂରକୁ ନେଇଗଲା । ଅବଶେଷରେ ରାମ ଶର ମାରନ୍ତେ, 'ହେ ଲକ୍ଷ୍ମଣ ରକ୍ଷା କର' ! ଏହିପରି ଜନାର୍ତ୍ତ ଶୁଣାଇ [ ସୀତା ଓ ଲକ୍ଷ୍ମଣ ଯେପରି ଶୁଣି ପାରିବେ—ସେହିପରି ଉଚ୍ଚ ଶବ୍ଦରେ ] ଡାକ ଦେଲା । ସେ ଶବ୍ଦ ଶୁଣି ଲକ୍ଷ୍ମଣ ସ୍ଥିର ହୃଦରେ କାଳ ପରି [ ଶୁଣି ନ ଶୁଣିଲା ପ୍ରାୟ ] ହୋଇ ରହିଲେ । ମାତ୍ର ସୀତା କହିଲେ, "ହେ ଲକ୍ଷ୍ମଣ ! ତୁମ୍ଭେ ଶୀଘ୍ର ଯାଅ ।"

୩୨ଶ ପଦ—"ବିପତ୍ତି ପଡ଼ିବାରୁ ରାମଚନ୍ଦ୍ର ତୁମ୍ଭ ନାମ ଧରି ଡାକୁଛନ୍ତି ।" ସୀତାଙ୍କ ବାଣୀ ଶୁଣି ଲକ୍ଷ୍ମଣ କହିଲେ,'ହେ ସତି ! ସଂସାର ମଧ୍ୟରେ ରାମ ଅଦ୍ୱିତୀୟ ବୀର । ତାଙ୍କଠାରୁ ଏପରି କାତର ବଚନ ବାହାରିବ କି ?" ଲକ୍ଷ୍ମଣ ଏହା କହିବାରୁ ସୀତା ଉତ୍ତର ଦେଲେ, "ତୁ ମୋତେ ଭରତର ସ୍ତ୍ରୀ କରି ତା ପାଖରେ ଦେବୁ ବୋଲି ଶତ୍ରୁର କପଟରେ ବନକୁ ଆସିଅଛୁ ।"

୩୩ଶ ପଦ—ମୁଁ ଯାଉଛି ଅଗ୍ନିରେ ଝାସ ଦେବି ।" ଏହା କହି ଶୀଘ୍ର ସେ ଅଗ୍ନି ପାଖକୁ ଝାସ ଦେବା ଇଚ୍ଛାରେ ଗଲେ । ତାହା ଦେଖି ଲକ୍ଷ୍ମଣ କହିଲେ,

ବଚନ କଷାୟ ଭିକ୍ଷା ଆଣି ଦିଅ ଥାଳରେ ବୋଇଲା ।
ବସ କ୍ଷଣେ ଈଶ ଆସନ୍ତୁ ଏ ଭାଷ ଭାଷଣ ମହିଳା । ୩୪ ।
ବଂଶପାଣି ଭଣି ଈଶାନ କଲେଣି ଏ ବନେ କି ବସା ?
ବୈଦେହୀ କହୁ ନ ବୁଝ କି ନସ ନୋହେ ଧବରେ ଏ ଭାଷା ।
ବୋଲେ ଲଙ୍କପତି ଏଥି ଗତାଗତ କରନ୍ତି ବୃକ୍ଷ କି ?
ବଲ୍ଲଭେ କହଇ ସ୍ୱଭାବଟି ସେହି ଭାଷିତ ଜାନକୀ । ୩୫ ।
ବିଚିତ୍ର ବାଣୀ ଶୁଣିଲି ଦୈତ୍ୟ ଭଣି ତୁହି ତ ମାନୁଷୀ ।
ବାରିଧିବାସୀ ମତ୍ସ୍ୟ ସେ ସ୍ଥଳେ ଆସି ତୋ ସଙ୍ଗେ ବିଳସି ।
ବନି ଜଟିଳ କହୁଛ ହୋଇ ଯତି ବୋଇଲେ ପାର୍ଥିବୀ ।
ବୋଲେ ମୁଁ ଲଙ୍କେଶ ତୋତେ ହରି ଅଣ ଆସିଛି ମାଧବୀ ।୩୬।

---

"ଆମ୍ଭେ ଏତ ଅଗ୍ନି ଅଟୁଁ । ତୁମ୍ଭେ ଆମ୍ଭଙ୍କୁ ଭିନ୍ନ ମନେ କରୁଅଛ, ତେଣୁ ତୁହିତା ହେବ ।" ଏପରି କହି ତୁରନ୍ତ ମନରେ ସେ ଲକ୍ଷ୍ମଣ ବ୍ୟାଘ୍ର ଆଶ୍ରୟ ଗତ କରି ଶରତରରେ ଗଲେ । ଲକ୍ଷ୍ମଣ ଚାଲିଯିବାରୁ ଜାନକୀ ନିଜ ନିବନ ହେତୁ ଭୟ କରି ଲଭିଲେ ।

୩୪ଶ ପଦ—ଲକ୍ଷ୍ମଣ ଚାଲି ଯିବାରୁ ରାବଣ ନବ ମୁଖ ଓ ଅଠର ହାତରୁ ଲୁଚାଇ, ବ୍ରହ୍ମଚାରୀ ବେଶ ଧରି, ଦେହସାରା ଭସ୍ମ ବୋଳିହୋଇ, କଷାୟବସ୍ତ୍ର ପିନ୍ଧି, ହସ୍ତରେ କମଣ୍ଡଳୁ ଓ ମାଳାଧରି ଶଙ୍କର ନାମକୁ ଜପି ଜପି ଆସି "ଥାଳରେ ଭିକ୍ଷା ଆଣି ଦିଅ" ବୋଲି ଡାକିଲା । ତାହା ଶୁଣି ସୀତା କହିଲେ, "କ୍ଷଣେ ମାତ୍ର ବସ, 'ଈଶ' ସ୍ୱାମୀ ଆସନ୍ତୁ ।"

୩୫ଶ ପଦ - ଈଶ ଆସନ୍ତୁ ବୋଲି କହିବାରୁ ରାବଣ ବକ୍ରୋକ୍ତିରେ କହିଲା, "ଏ ବନରେ 'ଈଶାନ' ମହାଦେବ ବସା କଲେଣି କି ?" ସୀତା କହିଲେ, 'ଧବ' ପତିଙ୍କୁ ଈଶ କହନ୍ତି, ଏହା କଣ ତୁମ୍ଭେ ବୁଝି ପାରିଲ ନାହିଁ ?" ରାବଣ ପୁଣି ପଚାରିଲା, "ଏ ବନରେ ଧବ ବୃକ୍ଷସବୁ ଯିବା ଆସିବା କରନ୍ତି କି ?" ଜାନକୀ ଉତ୍ତର ଦେଲେ, 'ବଲ୍ଲଭ' ପତିଙ୍କୁ ଧବ କହନ୍ତି, ମୋ ବଲ୍ଲଭଙ୍କ ନାମ ରାଘବ ଅଟେ ।"

୩୬ଶ ପଦ—ରାବଣ କହଇ, "ତୋଠାରୁ ଆଶ୍ଚର୍ଯ୍ୟ କଥା ଶୁଣିଲି । ତୁ ତ ମାନବୀ, ସମୁଦ୍ର ମଧ୍ୟରେ ଥିବା 'ରାଘବ' ମତ୍ସ୍ୟ ସ୍ଥଳକୁ ଆସି ତୋ ସହିତ ବିହାର କରେ କି ?" ସୀତା କହିଲେ—"ତୁମ୍ଭେ ଯତି ହୋଇ ଏପରି ବକ୍ରୋକ୍ତିରେ କଥା କହୁଅଛ ?" ଏହା ଶୁଣି ରାବଣ ଉତ୍ତର ଦେଲା, ମୁଁ ଲଙ୍କାର ରାଜା, ହେ ସତି ! ତୋତେ ଅପହରି ଆସିଅଛି ।

ଅଦ୍ଭୁତ କିସ କହିବି ମୋର ଦେଶ କନକ ମୃତ୍ତିକା ।
ବିଂଶଭୁଜ ଦଶବଦନ ବିଶେଷ ପଦ୍ମିନୀ ନାୟିକା ।
ବଳପଣେ ବସେ ଇନ୍ଦ୍ର ଦ୍ୱାସ୍ଥ ପାଶେ ବିଶ୍ରବ ତାତରେ ।
ବ୍ରହ୍ମାର ଚତୁର୍ଥ ପୁରୁଷ ମୁଁ ସତ ଚିରାୟୁ ତା ବରେ । ୩୭ ।
ବୋଇଲେ ମହୀଜା ଯାତୁଧାନ ଯା ଯା ନୋହୁ ଶିରଚ୍ଛେଦ ।
ବୃଷାଳି ବଞ୍ଚକ ବିରୂପ ଅଟିକି ବଢ଼ାଇ ସମ୍ବାଦ ।
ବୀରକେଶରୀ ଜାୟାକୁ ଲୋଡ଼ୁ, ହର ହୋଇଛୁ କେବେହେଁ ।
ବୀର ଅରଣ୍ୟେ ନୃପୁଁ ତୋ ପତି ଧନ୍ୟ ହେବ କି ସେ କହେ ।୩୮
ବପ୍ତା ଦଶରଥ ଜଣା ସାମର୍ଥ୍ୟ ତସ୍ୟାର୍ଜ ଭୃଗୁଜ ।
ବୋଲେ ଦେଖିଛି ତା ଗର୍ବଦଳ ନାଶ ମିତ୍ର ରେ କୌଣପ ।

---

୩୮ଶ ପଦ—ମହୀଜା—ସୀତା । ଯାତୁଧାନ—ରାକ୍ଷସ । ବୃଷ—ମୂଷା
ଅଳି—ଭଙ୍ଗା । ବଞ୍ଚକ—ବିଲୁଆ । ବିରୂପ—ବିକୃତ ରୂପ ।

---

୩୭ଶ ପଦ—"ମୋର ଐଶ୍ୱର୍ଯ୍ୟ କଥା କଣ ବା କହିବି ? ମୋ ଦେଶର ମାଟିସବୁ ସ୍ୱର୍ଣ୍ଣ ନିର୍ମିତ । ମୋର କୋଡ଼ିଏ ହାତ, ଦଶମୁଖ ବିଦ୍ୟମାନ । ମୋର ପଦ୍ମିନୀ ଜାତୀୟା ସ୍ତ୍ରୀମାନେ ଅଛନ୍ତି । ମୋର ବଳସ୍ଫୁରଣ ହେତୁ ଇନ୍ଦ୍ର ମୋର ଦ୍ୱାରପାଳ ପାଖରେ ଆସି ବସେ । ମୁଁ ବ୍ରହ୍ମାଙ୍କର 'ଚତୁର୍ଥ ପୁରୁଷ' ଗଣନାରେ । ( ତେଣୁ ତାତରେ ବିଶ୍ରବ ) । ପୁଣି ବ୍ରହ୍ମାଙ୍କ ବରରେ ଚିରାୟୁ ହୋଇଅଛି—ଏହା ମିଥ୍ୟା ନୁହେଁ ।"

୩୮ଶ ପଦ—ରାବଣର କଥା ଶୁଣି ସୀତା କହିଲେ, "ରେ ରାକ୍ଷସ ! ଶିରଚ୍ଛେଦ ନ ହେଉଣୁ, ତୁ ଏଠାରୁ ଶୀଘ୍ର ପଳାଇ ଯା । ତୁ ମୂଷା, ବେଙ୍ଗ, ଭ୍ରମର, ବିଡ଼ାଳାଙ୍ଗ ଓ ବିଲୁଆ ଅଟୁ । [ ତୁ କହିଲୁ ମୋ ଦେଶ କନକ ମୃତ୍ତିକା—ମୂଷାର ମୃତ୍ତିକାରେ ଆଦର ଥାଏ । ତୁ କହିଲୁ ମୋର ବିଂଶ ଭୁଜ—ବେଙ୍ଗର ବହୁତ ଭୁଜ ଥାଏ । ତୁ କହିଲୁ ମୋର ପଦ୍ମିନୀ ନାୟିକା ଅଛନ୍ତି—ଭ୍ରମରର ବହୁତ ପଦ୍ମିନୀ ଥାନ୍ତି । ତୁ କହିଲୁ ଦଶମୁଣ୍ଡ—ତେଣୁ ବିଡ଼ାଳାଙ୍ଗ, ତୁ କହିଲୁ ଚିରାୟୁ—ବିଲୁଆ ଚିରାୟୁ ଅଟନ୍ତି ] । ବିଲୁଆ ହୋଇ ତୁ ବୀର କେଶରୀ ଭାର୍ଯ୍ୟା ହରିବାକୁ ଇଚ୍ଛା କରୁଅଛୁ,—ଏହା ସମ୍ଭବ ହୋଇଛି କି ?" ସୀତାଙ୍କ କଥା ଶୁଣି ରାବଣ ପୁଣି କହିଲା, "ବୀର ଅନରଣ୍ୟ ରାଜାଠାରୁ ( ରାମର ପୂର୍ବପୁରୁଷ ) ତୋ ପତି ବେଶୀ ଗୁଣଂଧାର ଯୋଗ୍ୟ କି ? [ ବେଶୀ ବଳିଷ୍ଠ କି ?—ମୁଁ ତ ତାକୁ ମାରିଛି ]

୩୯ ଓ ୪୦ଶ ପଦ—"ତାହାର ପିତା । ( ତୋ ସ୍ୱାମୀର ପିତା ) ଦଶରଥର ଯେପରି ସାମର୍ଥ୍ୟ, ତା ଜଣାଅଛି । ତାକୁ ପଶୁ'ରାମ ଭଗବାନଙ୍କୁ ସେ

ବଂଶାଭିମାନ ଉଦ୍ଧରେ ରଘୁନନ୍ଦନ ସେ କାଳ ପ୍ରମାଣ ।
ବହୁ ନିଜମୂର୍ତ୍ତି ବହଳ ନେବା ରୀତି ଆରମ୍ଭ ରାବଣ । ୩୯ ।
ବହ୍ନି ଅନ୍ତରେ ଗୁପତ ସତ୍ୱରେ ନ ଦେଖି ଲଙ୍କେଶ ।
ବେଦମତୀ ମତ ଏହୁ ହେଲା ସତ ଭାବୁରେ ମାନସ ।
ବ୍ୟକ୍ତ ଦର୍ଶ ପୁଣି ବଳେ ଧରି ଆଣି ଅଣନ୍ତେ ଅଙ୍ଗଣ ।
ବାତ ସହିତ ସ୍ଫଟିକ ତରଳିତ ହୋଇଲା ପାଷାଣ । ୪୦ ।
ବସୁଧା କମ୍ପିତା ଚକିତ ଦେବତା କି ହେଲା କି ହେଲା ।
ବଚନେ ଶୋଭନେ ଅଶ୍ରୁ ବିମୋଚନେ ଅକାଶ ପୂରିଲା ।
ବରଷିଲା ଝୋପା ଝୋପା ଘନ କମ୍ପା ନ ଥାଇ ମୁଦାରେ ।
ବିହଙ୍ଗେ ଉଷ୍ଣ ରେ ସାବନ୍ତ ଗୃଢରେ ବାଉଳେ ପାନରେ ।୪୧।
ବିବୁଧ ବିବିଧ ବୁଦ୍ଧି କଲେ ସନ୍ଧି କେ ବୋଲେ ଏ ସୀତା ।
ବୋଲେ କେ ଛାୟା କେ ବୋଲେ ମାୟା ଜାୟା କାଣାଇ କପାଟା

---

ସ୍ତ୍ରୀମାନଙ୍କ ମଧ୍ୟରେ ଲୁଚି ରହିଲୁ ।” ସୀତା କହିଲେ, “ସେହି ପର୍ଶୁରାମର ଗର୍ବ ରାମଚନ୍ଦ୍ର ଭାଜି ଅଛନ୍ତି । ରେ ରାକ୍ଷସ ! ତୁ କଷ୍ଟରେ ନାଶଯିବୁ । ପୂର୍ବ ପୁରୁଷ ଅନରଣ୍ୟଙ୍କୁ ମାରିବୁ ବୋଲି ଯେ ଗର୍ବ ଦେଖାଉଛୁ, ସୂର୍ଯ୍ୟ କୁଳର ଅଭିମାନକୁ ଉଦ୍ଧାର କରେ । ବର୍ତ୍ତମାନ ସେ ସମୟ ଉପସ୍ଥିତ । [ ସୂର୍ଯ୍ୟବଂଶଧର ରାମଚନ୍ଦ୍ର ତୋତେ ମାରି କୁଳ ମର୍ଯ୍ୟାଦା ବଢ଼ାଇବେ ]” । ଏହା ଶୁଣି ରାବଣ ନିଜରୂପ ଧରି ବଳପୂର୍ବକ ସୀତାଙ୍କୁ ନେବାକୁ ଆରମ୍ଭ କରନ୍ତେ, ସୀତା ଶୀଘ୍ର ଅଗ୍ନି ମଧ୍ୟରେ ଗୁପ୍ତ ହେଲେ । ରାବଣ ତାଙ୍କୁ ଦେଖି ନ ପାରି ମନ ମଧ୍ୟରେ ବିଚାର କଲା, ବେଦବତୀ କନ୍ୟା ପରି ଏ କନ୍ୟା ହେଲା କି । ପୁଣି ସୀତା ପ୍ରକାଶିତ ହୋଇ ଦେଖାଯାନ୍ତେ, [ ମାୟା ସୀତା ପ୍ରକାଶିତ ହୁଅନ୍ତେ ] ରାବଣ ପଞ୍ଚ କୁଡ଼ିଆର ଅଗଣାକୁ ବଳାତ୍କାରରେ ଧରି ଆଣିଲା । ସେତେବେଳେ ବାୟୁ ଓ ଜଳ ସ୍ରୋତ ସ୍ଥିର ହୋଇଗଲେ ଏବଂ ପାଷାଣ ତରଳି ଗଲା ।

୪୧ଶ ପଦ—ପୃଥିବୀ କମ୍ପିତ ହେଲା, ଦେବତାମାନେ ଚମତ୍କୃତ ହେଲେ । କି ହେଲା, କି ହେଲା ?—ଏହି ଶୋକପୂର୍ଣ୍ଣ ବାକ୍ୟରେ ଆକାଶ ପୂର୍ଣ୍ଣ ହେଲା । ସୀତା ଅଶ୍ରୁପାତ କରିବାରୁ ପକ୍ଷୀମାନେ ଉଦ୍ବିଗ୍ନ ମନରେ ଭାବିଲେ, ମେଘ ନ ଥାଇ ମେଘ ଝୋପାଝୋପା ହୋଇ ବର୍ଷିଲା କିପରି ? ଗୃଢକ ପକ୍ଷୀମାନେ ତା ପାନ କରିବାରୁ ଜାଣିଲେ, ତାହା ବୃଷ୍ଟିଜଳ ନୁହେ ।

୪୨ଶ ପଦ—ଦେବତାମାନେ ନାନାପ୍ରକାର ବିଚାର ଠିକ୍ କଲେ । କେହି କହିଲେ, ‘ଏ ସୀତା,’ କେହି କହିଲେ, ‘ଏ ଛାୟା,’ କେହି କହିଲେ, “ଏ ମାୟା

ବନ୍ଦୀ ଚାରଣପୁରେ ମୃଦଙ୍ଗ ପ୍ରଭାତେ ବସାଇ ସ୍ୟନ୍ଦନେ ।
ବନ୍ଦୀ ହୋଇ ସେ ସ୍ତୁତିପାଠ ପଠନେ ବାନ୍ଧିଲା ବନ୍ଧନେ । ୪୨ ।
ବନ ବଲଜା ହା ରାମ ସ୍ୱନେ ପୂର୍ଣ୍ଣ ଜଟାୟୁ ଡାକେ ।
ବନପ୍ରିୟଙ୍କୁ ଶିଖାଇ ଗୀତ ଶୋକବସତୀ ସଙ୍ଗେ କେ ?
ବଜାଇ ବୀଣାରେ ନାରଦ ରାମରେ ସନ୍ତୋଷି ଯାଇ କି ?
ବଂଶଦାନ୍ତ ସୀତା ଏକ ରଥେ ସ୍ଥିତା ଗୃଧ୍ରାନ୍ତେ ଚାଲେକ । ୪୩ ।
ବେଦପୋଥି କେ ସୁରାପ କରେ ଦେଲା ବୋଲି ସେ ଧାଇଁଲା ।
ବସ୍ତ୍ରାର୍ତ୍ତ ଚଞ୍ଚୁ ସ୍ୟନ୍ଦନ ଗ୍ରାସ କରୁଁ ଉଦ୍ଗାର ଥୋଇଲା ।
ବାଞ୍ଛି ଅଗସ୍ତି ଉଦରେ ଜୀର୍ଣ୍ଣମତ ଏକ୍ଷଣି ହୁଅନ୍ତୁ ।
ବୈଦେହୀ ଦାନ୍ତ କହି ଦେହ ବିଦାର ମୁଖ ଦୋଷ ଦେଲୁ । ୪୪ ।

---

୪୩ଶ ପଦ—ବନବଲଜା—ବନଭୂମି । ବଲଜା—ଉରସ୍ତ୍ରୀ ।
୪୪ଶ ପଦ—ସୁରାପ – ମଦ୍ୟପ ଅର୍ଥାତ୍ ଯେ ସୁରା ବା ମଦ୍ୟ ପାନ କରେ ।

---

ସୀତା,' ଆଉ କିଏ କହିଲା, 'ସତ କଥା କଣ ବିଧାତା ଜାଣେ ।' ବନ୍ଦୀମାନେ ବନ୍ଦୀ ଲୋକଙ୍କୁ ବନ୍ଦ କରି ରଖିଲା ପରି ସୀତାଙ୍କୁ ରଥରେ ବସାଇ ରାବଣ ଶୀଘ୍ର ରଥ ଚଳାଇ ନେଲା । ସୀତା ସେ ରଥରେ 'ବନ୍ଦୀ' ଭାଟ ପ୍ରାୟ ସ୍ତୁତି ପାଠ କରିବାକୁ ଲାଗିଲେ । (ସୀତା ରାମଚନ୍ଦ୍ରଙ୍କ ଗୁଣ କାହିନ କାନ୍ଦିବାକୁ ଲାଗିଲେ ) ।

୪୩ଶ ପଦ—ବନଭୂମି 'ହା ରାମ' ସ୍ୱରରେ ପୂର୍ଣ୍ଣ ହୁଅନ୍ତେ ( ଅଥବା "ବନଜା" ଶ୍ରେଷ୍ଠ ସ୍ତ୍ରୀ ସୀତାଙ୍କ ହା ରାମ ସ୍ୱନରେ ବନ ପୂର୍ଣ୍ଣ ହୁଅନ୍ତେ ) ଜଟାୟୁ ବିଚାର କଲା, 'କୋକିଳକୁ ଶୋକବସତୀ ରାଗରେ କେଉଁ ଲୋକ ଗୀତ ଶିଖାଇଲା କି ? କିମ୍ବା ନାରଦ ବୀଣାରେ ରାମ ନାମ ବଜାଇ ରାଗରେ ଗାଇ ରାମଙ୍କୁ ସନ୍ତୋଷିବାକୁ ଯାଉ ଅଛନ୍ତି କି ?" ଜଟାୟୁ ଏହା ବିଚାର ଉପରକୁ ଗୃଧ୍ରାନ୍ତେ ଦେଖିଲା ଯେ ରାବଣ ସୀତା ଏହା ରଥରେ ବସି ଅଛନ୍ତି ।

୪୪ଶ ପଦ—"ମଦୁଆ ହାତରେ ବେଦପୋଥି କିଏ ଦେଲା ?" ଏହା ଭାବି ଜଟାୟୁ ଧାଇଁଲା । ସେ ଥଣ୍ଟ ବସ୍ତ୍ରାର୍ତ୍ତ କରି ରଥକୁ ଗିଳିଦେଇ ପୁଣି ବାନ୍ତି କରି ପକାଇଲା । (ରଥରେ ସୀତା ଅଛନ୍ତି, ଗିଳିଦେଲେ ସୀତା ପେଟରେ ଜୀର୍ଣ୍ଣ ହୋଇଯିବେ, ଏହା ଭାବି ବାନ୍ତି କଲା) । ରାବଣକୁ ଗୃଧ୍ର କହିଲା, "ଅଗସ୍ତି ଋଷିଙ୍କ ପେଟ ସମୁଦ୍ର ଜୀର୍ଣ୍ଣ ହେଲା ପ୍ରାୟ ତୁ ଏକ୍ଷଣି ମୋ ପେଟରେ ଜୀର୍ଣ୍ଣ ହୋଇଯାଆନ୍ତୁ, ମାତ୍ର ସୀତା ଯୋଗୁ ରକ୍ଷା ପାଇଲୁ ।" ଏହା କହି ନଖ ଓ ଚଞ୍ଚୁ ଦ୍ୱାରା ରାବଣକୁ ବିଦାରି ପକାଇଲା ।

ବିମାନକୁ ପକ୍ଷପାତେ ପକ୍ଷଘାତେ ଭଙ୍ଗିଲା ଉଦ୍‌ବେଗେ ।
ବାମେ କ୍ଷୀଣକୁକ୍ଷୀ ଦକ୍ଷିଣେ ପକ୍ଷକୁ ଛେଦଇ ଖଡ଼ଗେ ।
ବସି ପୁଷ୍ପକରେ ଭ୍ରବୁଁ ଅସିବାରେ ଶୂନ୍ୟରେ ଗମନ ।
କହି ଦେବା ଯାଏ ଅଯୋଧ୍ୟାଧିଶ୍ବରେ ଥାଉଁ ତୋ ଜୀବନ ।୪୫।
ବୋଲନ୍ତେ ଠାକୁରାଣୀ ଦଶ ଛଳ ଭଣି ଅଯୋଧ୍ୟାବର ଯେ ।
ବାରତା ପ୍ରାପତେ କି ନରବର ମୋତେ ପୁଣି ସେ ନାଶିବେ ?
ବ୍ୟୋମେ ରଥ ଯାଇ ଋଷ୍ୟମୂକେ ପାଇ ଅବଳା ଦେଖିଲେ ।
କପିଙ୍କୁ ସୁଗ୍ରୀବ ପେଖିଣ ସଚିବ ଭୂଷଣ ଡାଳିଲେ ।୪୬।
ବସନେ ବାନ୍ଧି ପକାଇ କୃପାନିଧି ପାଇବେ କଳିଣ ।
ବାନରେଶ ପାଇ ଦେଲା ଶୂନ୍ୟେ ଗୃହି ଜାନକୀ ଭୂଷଣ ।

---

୪୫ଶ ପଦ—ଶୂନ୍ୟରେ—ଆକାଶରେ ।

---

୪୫ଶ ପଦ—ସୀତାଙ୍କୁ ରକ୍ଷା କରିବା ଆଶାରେ ଉଦ୍‌ବେଗ ହୋଇ ସୀତାଙ୍କ ପକ୍ଷ ନେଇ ନିଜର ପକ୍ଷାଘାତ ଦ୍ୱାରା ରାବଣର ରଥକୁ ଭଙ୍ଗି ପକାଇଲା । ଏହା ଦେଖି ରାବଣ ବାମ ହସ୍ତରେ କ୍ଷୀଣକଟି ସୀତାଙ୍କୁ ଧରି, ଦକ୍ଷିଣ ହସ୍ତରେ ଖଡ଼୍ଗ ଧରି ଜଟାୟୁର ପକ୍ଷ ଛେଦନ କଲା । ତତ୍ପରେ ପୁଷ୍ପକ ଯାନକୁ ସ୍ମରଣ କରନ୍ତେ, ସେ ରଥ ଆସିଲା । ରାବଣ ସୀତାଙ୍କୁ ନେଇ ତହିଁରେ ବସି ଶୂନ୍ୟମାର୍ଗରେ ଗମନ କଲା । ସେତେବେଳେ ସୀତା ଜଟାୟୁକୁ କହିଲେ, "ଅଯୋଧ୍ୟାବର" ଶ୍ରୀରାମଙ୍କୁ କହି ଦେବାଯାଏ, ତୋ ଜୀବନ ଥାଉ ।"

୪୬ଶ ପଦ—ସୀତା ଏହା କହନ୍ତେ, ରାବଣ ଛଳ କରି କହିଲା, "ସେ 'ଅଯୋଧ୍ୟାବର' ମୋ ସଙ୍ଗେ ଯୁଦ୍ଧ କରିବାକୁ ଅସମର୍ଥ, ତେଣୁ ଅଯୋଧ୍ୟାରାଜ୍ୟକୁ 'ବରଦ' ତ୍ୟାଗ କଲା । ସେ ପୁଣି ମାନବ ମାତ୍ର, ସେ ବାରତା ପାଇଲେ ତା ଦ୍ୱାରା ମୋର କଣ ଏହି ସମୟରେ ରଥ ଆକାଶମାର୍ଗରେ— ଯାଇ ଋଷ୍ୟମୂକ ଗିରି ସମାନ ପହଞ୍ଚିଲା । ସେ ଠାରେ ସୁଗ୍ରୀବ ମନ୍ତ୍ରୀମାନଙ୍କୁ ସଙ୍ଗତରେ ନେଇ ବସିଛନ୍ତି । ସୀତା ତାହା ଦେଖି ଆପଣା ଦେହରୁ ଅଳଙ୍କାରମାନ କାଢ଼ିଲେ ।

୪୭ଶ ପଦ—"କୃପାନିଧି" ରାମଚନ୍ଦ୍ର ଏହା ପାଇବେ ସୀତା ଏହିପରି ମନରେ ବିଚାର କରି, ବସନରେ ବାନ୍ଧି ଅଳଙ୍କାରମାନ ପକାଇ ଦେଲେ । ବାନରରାଜା ସୁଗ୍ରୀବ ସେ ଅଳଙ୍କାର ପାଇ ଶୂନ୍ୟକୁ ଗୃହଁ ଦେଲେ । ତା ଦେଖି ଜାନକୀ କହିଲେ, "ରାମଙ୍କୁ ଏ କହିବ,—ରାବଣ ମୋତେ ଲଙ୍କା ଗ୍ରାମକୁ

କାଣ୍ଡି କରି ଯେବେ ମୋତେ ଲଙ୍କାସ୍ଥାନେ ନେଲାଣି ରାବଣ ।
ବିଚାରିଲେ ଶତ୍ରୁ ମୂଳଟି ମୋ ମୃତ୍ୟୁ କାହାକୁ ଦୂଷଣ ।୪୭।
ବୋଲିବାକୁ ରଥ ଗଲା ଏତେ ପଥ ଅଦୃଶ୍ୟ ହୋଇଲା ।
ବିଭୂଷଣମାନ କରିଣ ଯତନ ସୁଗ୍ରୀବ ଥୋଇଲା ।
ବିୟତ୍ତୁଁ ଖସାଇ ରଥ ପୁରେ ଯାଇ ଅଶୋକ ବିପିନେ ।
ବେଢାଇ ସହସ୍ର ଅସୁରୀ ଜଗାଇ ତହିଁରେ ପ୍ରଧାନେ ।୪୮।
ବେଭରେ ସମର୍ପି ସରମାକୁ ସଖୀ ତ୍ରିଜଟା କରାଇ ।
ବୃଦ୍ଧି ହରଷ ଭବନରେ ପ୍ରବେଶ ହସିଲା ହୁଅଇ ।
ବାନ୍ଧବୀ ସମର ପାଶବନ୍ଧା ମୃଗୀ ପ୍ରବନ୍ଧ ଭୟରୁ ।
ବହିଲା ଶିଳା ପିତୁଳା ତୁଳା ହିଙ୍ଗି ସୁଶୀଳା ହେବାରୁ ।୪୯।
ବିଧାତା ବଚନେ ସୁଧା ଘେନି ବନେ ନାରଦ ମିଳିତ ।
ବିମୋହିତ କରି ଅସୁରୀମାନଙ୍କୁ କହିଲେ ସଙ୍କେତ ।
ବିଚ୍ଛେଦ ତୁଟିବ ଚତୁର୍ଦ୍ଦଶମାସେ ନ କର ଶୋଚନା ।
ବଧ ରାବଣ ସଗୋଷ୍ଠେ ହୋଇ ହେବ ବିମଳଲୋଚନା ।୫୦।

---

୪୮ଶ ପଦ—ବିୟତ୍ତୁଁ—ଆକାଶରୁ ।

---

ନେଇ ଯାଉଛି । ସେ ମୋତେ ମନରୁ ପାଶୋରି ଦେଲେ, ନିଶ୍ଚୟ ମୋର ମୃତ୍ୟୁ ହେବ । ଏ ନିନ୍ଦା କାହାକୁ ହେବ ? ( ତାଙ୍କୁହିଁ ଏ ନିନ୍ଦା ହେବ ) ।"

୪୮ ଓ ୪୯ଶତ୍ ପଦ—ସୀତା ଏହି କଥା କହୁ କହୁ ରଥ ଏତେ ଦୂର ଗଲା ଯେ, ଆଉ ଦୃଶ୍ୟ ହେଲା ନାହିଁ । ସୁଗ୍ରୀବ ସୀତା ପକାଇଥିବା ଅଳଙ୍କାରମାନ ଯତ୍ନ କରି ଥୋଇଲେ । ରାବଣ ଆକାଶରୁ ରଥ ଖସାଇ ଆପଣା ପୁରକୁ ଯାଇ ଅଶୋକ ବନରେ ସହସ୍ର ଅସୁରୀ ବେଢାଇ ସୀତାଙ୍କୁ ରଖିଲା । ସେମାନଙ୍କ ମଧ୍ୟରେ ପ୍ରଧାନ ସରମା ରାକ୍ଷସୀକୁ ସୀତାଙ୍କୁ ସମର୍ପଣ କଲା ଏବଂ ତ୍ରିଜଟା ନାମକ ରାକ୍ଷସୀକୁ ତାଙ୍କ ସଖୀ କରାଇ ଆନନ୍ଦ ବୃଦ୍ଧି ହୋଇଥିବାରୁ ହସ ହସ ହୋଇ ଯାଇ ନିଜ ଗୃହରେ ପହଞ୍ଚିଲା । ସୀତା ଭୟ ପାଇ ପାଶବଦ୍ଧ ହରିଣୀ ପ୍ରାୟ ହେଲେ, ମାତ୍ର ସୁଶୀଳା ହେତୁ ପ୍ରସ୍ତର ମୂର୍ତ୍ତି ପରି ତୁନି ହୋଇ ରହିଲେ ।

୫୦ଶତ୍ ପଦ—ବ୍ରହ୍ମାଙ୍କ ଆଜ୍ଞାରେ ନାରଦ ଅମୃତ ନେଇ ଯାଇ ଅଶୋକବନରେ ମିଳିଲେ, ଅସୁରୀମାନଙ୍କୁ ବିମୋହିତ କରି ସୀତାଙ୍କୁ ସଙ୍କେତ ଦେଇ କହିଲେ, "ଚଉଦ ମାସ ପରେ ତୁମ୍ଭର ବିଚ୍ଛେଦ ତୁଟିବ, ସେଥିପାଇଁ ଶୋକ କର ନାହିଁ । ହେ ନିର୍ମଳ ଲୋଚନେ ! ରାବଣ ସବଂଶରେ ବିନାଶ ପ୍ରାପ୍ତ ହେବ ।"

ବାଧା ନ କରିବ କ୍ଷୁଧା ପିପାସା ଏ ସୁଧା କର ଗ୍ରାସ ।
ବୈଦ୍ୟ ଅଷ୍ଟାଙ୍ଗବ୍ୟାଧିମନ୍ତେ ଔଷଧ କହିଲା ସତୃଷ ।
ବିବେକ ହେଲ ପାଇବି ତ ମୁଁ ଧନ୍ୟ ଈଶ୍ୱର ଭରସା ।
ବାହୁଡିଲେ ଋଷି ଅମୃତକୁ ଗ୍ରାସେ କସିଲେ ସୁଦୃଶା । ୭୧ ।

ବଂସ୍ତ୍ରୀ ପଦମାଦୃଷ୍ଟି ପତି କସ୍ତ୍ରୀ କପୋଳେ ଶୀକର ।
ବ୍ୟାକୁଳ କେତେ ନ ଦେଖି ହେବେ ମୋତେ କରେ ଏ ବିଗ୍ରହ ।
ବଇଦେହୀଶ ବିଳାସ ନାମ ଗୀତ ବକାରେ ରଚନ ।
ବାଳପଦେ ଗ୍ରନ୍ଥ ଉପେନ୍ଦ୍ର କୃତ ବୁଝିବେ ସୁମନ । ୭୨ ।

---

୭୧ଶତ୍ ପଦ—"ଏ ଅମୃତ ନେଇ ଗ୍ରାସ କର, ତୁମ୍ଭକୁ କ୍ଷୁଧା ତୃଷା ବାଧିବ ନାହିଁ ।" ଅଷ୍ଟାଙ୍ଗ ବ୍ୟାଧି ଘୋଟିଥିବା ରୋଗୀକୁ ବୈଦ୍ୟର ଔଷଧ ଭଳି କଲ ପଦ ସୀତାଙ୍କୁ ନାରଦଙ୍କ ବାଣୀ ପୁଷ୍ଟ କଲା । ସେ ବିଗ୍ରର କଲେ, ମୁଁ ରାମଚନ୍ଦ୍ରଙ୍କୁ ପୁନର୍ବାର ପାଇ ଧନ୍ୟ ହେବି । ଏଥିପାଇଁ କେବଳ ମାତ୍ର ଈଶ୍ୱର ଭରସା ।" ତତ୍ପରେ ନାରଦ ଋଷି ବାହୁଡି ଗଲେ, ସୀତା ଅମୃତ ଖାଇ ବସି ରହିଲେ ।

୭୨ଶତ ପଦ—ସୀତା ରାମଚନ୍ଦ୍ରଙ୍କ ବିରହରେ ଅତି ମ୍ଳାନ ଭାବରେ ମୁଖ ପୋତି ଭୂମିକୁ ଗୃହିଁ ଦକ୍ଷିଣ ହସ୍ତ ଗଣ୍ଡସ୍ଥଳରେ ଦେଇ ଚିନ୍ତା କଲେ, "ରାମଚନ୍ଦ୍ର ମୋତେ ନ ଦେଖି କେତେ ବ୍ୟାକୁଳ ହେବେ । ବୈଦେହୀଶବିଳାସ ନାମକ କାବ୍ୟ ବ ଅକ୍ଷରରେ ରଚିତ ହୋଇଅଛି । ଉପେନ୍ଦ୍ର କୃତ କାଞ୍ଚନ ପଦର ଏ ଗ୍ରନ୍ଥ ପଣ୍ଡିତମାନେ ବୁଝିବେ ।

---

# ପଞ୍ଚବିଂଶ ଛାନ୍ଦ

## ରାଗ—ଶଙ୍କରାଭରଣ

ବାଣ ବାଜିବାରେ ହାହା ଲକ୍ଷ୍ମଣ ଶବଦ ।
ବରଚନେ ରାମ ରାମ ହୋଇଲେ ସ୍ତବଧ ।
ବହିଲାକ ନର-ବାଣୀ ।
ବସାଦ ନ ପୁଣ ଉପସ୍ଥିତ ହୁଏ ଶୁଣି । ୧ ।
ବିମଳ କେମନ୍ତ ଚନ୍ଦ୍ର, ସେ ନ ମାରୁଁ ମରି ।
ବସିଲା କଳଙ୍କ ହୋଇ ଅଙ୍କେ ସେହୁପରି ।
ବଧ ମୋହ ଯୋଗୁଁ ଏହୁ ।
ବରେ କଳଙ୍କ ନ କରୁ ରାମଚନ୍ଦ୍ର ମୁହିଁ । ୨ ।
ବପୁରୁଁ ମାୟାମୃଗର ଜ୍ୟୋତି ବାହାରିଲା ।
ବପୁରେ ସେ ଦୂଷଣରିପୁର ମିଶିଗଲା ।
ବଡ଼ ସୁକୃତ ଶବର ।
ବାହୁଡିଲେ ଭାର ଭଵ ସୁମନସବର । ୩ ।

---

୧ମ ପଦ—ବାଣ—ଶର । ରାମ—ମୃଗ । ନରବାଣୀ—ମନୁଷ୍ୟ ପରି କଥା ।

୩ୟ ପଦ—ବପୁରୁଁ—ଦେହରୁ । ବପୁରେ—ଦେହରେ । ଦୂଷଣରିପୁ—ରାମଚନ୍ଦ୍ର । ଶବର—ମୃତଦେହର । ସୁମନସବର—ଦେବଶ୍ରେଷ୍ଠ ବା ପଣ୍ଡିତ ଶ୍ରେଷ୍ଠ ।

---

# ପଞ୍ଚବିଂଶ ଛାନ୍ଦ

୧ମ ପଦ—ଶର ବାଜିବା ମାତ୍ରେ କାଞ୍ଚନମୃଗ 'ହା ହା ଲକ୍ଷ୍ମଣ' ଶବ୍ଦ କରିବାରୁ ରାମଚନ୍ଦ୍ର ଚକିତ ହୋଇ ଭାବିଲେ, "ଏ ପଶୁ ହୋଇ ମନୁଷ୍ୟପରି କଥା କହିଲା ! ବିପଦ କିଛି ପଡ଼ିବ ନାହିଁ ତ ?" (ପଶୁ ବଚନ ଶ୍ରବଣରେ ବିପଦ ପଡ଼ିବାର ସମ୍ଭାବନା ।)

୨ୟ ପଦ—"ଚନ୍ଦ୍ର ବିପରି ନିଷ୍କଳଙ୍କ, ସେ ନ ମାରି ମଧ୍ୟ ମୃଗ ନିଜ ଇଚ୍ଛାରେ ମରି ତା କୋଳରେ କଳଙ୍କ ପ୍ରାୟ ହୋଇ ବସି ରହିଲା । ଅଥଚ ଏ ମୃଗ ମୋ ହସ୍ତରେ ବଧ ହେଲା । ମୁଁ 'ରାମଚନ୍ଦ୍ର,' ମନୋହର ଚନ୍ଦ୍ର । ସଂସାର ମଧ୍ୟରେ ଏ ମୃଗ ମୋହର କଳଙ୍କ ସ୍ୱରୂପ ନ ହେଉ ।"

୩ୟ ପଦ—ମାୟାମୃଗର ଦେହରୁ ଜ୍ୟୋତି ବାହାରିଲା । ସେ ଜ୍ୟୋତି ପାପର ଶତ୍ରୁ ରାମଚନ୍ଦ୍ରଙ୍କ ଦେହରେ ମିଶିଗଲା । ସେ ମୃତଦେହର ବଡ଼ ପୁଣ୍ୟ, କାରଣ ଦେବଶ୍ରେଷ୍ଠ ରାମଚନ୍ଦ୍ର ତାକୁ ଭାର ଭବ ବାନ୍ଧରେ ବନ୍ଧ ବାହୁଡ଼ିଲେ ।

ବାଟରେ ଅନୁଜ ଭେଟ ମତ ଉରପିତା ।
ବୋଲେ ବୀର ସୀତା କାହିଁ କଲୁ ତୁ ଏକତା ।
ବର୍ଷୁଁ ହୋଇଲେ ଅନ୍ତର ।
ବହଇ ସେ ଥର ଭସ୍ମେ ହୃଦୟ ପଥର । ୪ ।
ବୋଇଲେ ସୁମିତ୍ରାସୁତ ଶୁଣ ରଘୁମଣି ।
କଣାହେଲେ ଜଣାଥାଇଁ ତୁମ୍ଭ ବୀରପଣ ।
ବାଣୀ ମୋର ନାମେ ଯାହି ।
ଶ୍ରବଣରୁ ସରୁମଧ୍ୟା ଭୀରୁ ଭସ୍ମ ବହି । ୫ ।
ବୈଦେହୀ ପ୍ରମାଣ ଫଳେ କଟୁ ଭବ ଜାତ ।
ବିଦାରନ୍ତ ହୃଦକ୍ଷେତ୍ର ସୀତା ନାମ ସତ ।
ବିନା ଭକ୍ଷୁଁ ଜନେ ବାମା ।
ବାଣୀ ସୁଧା ବୋଲେ ସୁରମତେ ନୋହେ ସମା । ୬ ।

---

୪ର୍ଥ ପଦ—ଅନୁଜ—ସାନଭାଇ । ଥର—କମ୍ପନ । ହୃଦୟପଥରେ—ମନରେ ।

୫ମ ପଦ—ସରୁମଧ୍ୟା—କ୍ଷୀଣକଟୀ ବନିତା ।

୬ଷ୍ଠ ପଦ—ବୈଦେହୀ—ତିନ୍ତିଳୀ । ସୀତା—ଲଙ୍ଗଳଲତା । ସୁରମତେ—ଦେବତାମାନଙ୍କ ମତରେ ।

---

୪ର୍ଥ ପଦ—ବାଟରେ ଲକ୍ଷ୍ମଣଙ୍କର ଭେଟ ହେବାରୁ ରାମଚନ୍ଦ୍ରଙ୍କ ମନ ଉରସଯୁକ୍ତ ହେଲା । ସେ କହିଲେ, "ସୀତା କାହିଁ, ତାକୁ ଏକାକିନୀ ଛାଡ଼ି ଆସିଲ କାହିଁକି ? ମୋ ବକ୍ଷସ୍ଥଳରୁ ଅନ୍ତର ହେଲେ ସେ ଯେ ମନମଧ୍ୟରେ ଭୟରେ ଥରହର ହୁଏ ।"

୫ମ ପଦ—ଲକ୍ଷ୍ମଣ କହିଲେ, "ହେ ରଘୁରାଣ ! ଶୁଣ, ତୁମ୍ଭର ବୀରପଣ ଜଣାଥିଲେ ମଧ୍ୟ 'ହା ଲକ୍ଷ୍ମଣ' ଶବ୍ଦ ଶୁଣାଯିବାରୁ କ୍ଷୀଣକଟୀ ଭୀରୁ ସୀତା ବଣାହୋଇ ଭୟ କଲେ ।"

୬ଷ୍ଠ ପଦ—"ତାଙ୍କର ବୈଦେହୀ ନାମ ପ୍ରମାଣିତ ହେଲା । 'ବୈଦେହୀ' ତିନ୍ତିଳୀ ବୃକ୍ଷର ଫଳ ଯେପରି କଟୁ ପ୍ରଦାନ କରେ, ସୀତା ସେହିପରି ଶେଷରେ ମୋତେ କଟୁକଥା କହିଲେ । ପୁଣି ତାଙ୍କର ସୀତା ନାମ ସାର୍ଥକ ଅଟେ । 'ସୀତା' ଲଙ୍ଗଳକୁ କଅଁରୀକୁ ଚଷି ଫାଳ ଫାଳ କଲା ପରି ସେ ମୋ ହୃଦୟ କ୍ଷେତ୍ରକୁ ଉଜାଡ଼ି ପକାଇଲେ । ଲୋକେ ଅମୃତ ଖାଇ ନ ଥିବାରୁ ସ୍ତ୍ରୀଙ୍କ କଥାକୁ ଅମୃତ ସଙ୍ଗେ ତୁଳନା ଦେଉଥାନ୍ତି, ମାତ୍ର ଦେବତାମାନଙ୍କ ମତରେ ତା ଠିକ୍ ନୁହେ । ( ଦେବତାମାନେ ଯେ ଅମୃତ ଖାଇଅଛନ୍ତି ) ।"

ଷଣ୍ଢ ଯେଣୁ ଯୋଗୀ ତେଣୁ ଶ୍ରଦ୍ଧାରେ ନ ଶୁଣି ।
ବୋଲେ ରାମ ଶିବଙ୍କୁ ତେ ବଡ଼ ଯୋଗୀ ପୁଣି ।
ବହୁ ଅର୍ଦ୍ଧ ଅବୟବେ ।
ଷଡୁର ଶଙ୍କାରେ ଶୁଣୁଛନ୍ତି ସଂପଦବେ । ୭ ।
ବଚନ ଦୀର୍ଘ ଭଜନ ସତ୍ୱର ଗମନ ।
ବାଳା ଅନୁସରି ନ ଅସିବା ଦେଖି ଛଳ ।
ବିଚାରନ୍ତି ସ୍ନେହାଧୀନା ।
ବିମନା ନୋହେ ସଦୋଷେ ଏବେ ଦୋଷ ବିନା । ୮ ।
ବୃକ୍ଷ କରୁଣାରେ ସେ ନିରାଶ ଫଳ କହୁ ।
କହୁ ସ୍ୱାଧୀନ ଭର୍ତ୍ତୃକା ବୋଲି ଯେବେ ମୁହିଁ ।
ବାଟେ ଲେଖିଥାଇଁ ସ୍ନେହ ।
ବୋଲିଥାଇ ଲେଖ ତବାଧୀନଭର୍ତ୍ତା କହ । ୯ ।

---

୭ମ ପଦ—ଷଣ୍ଢ—କ୍ଷମ । ଷଡୁର—ଅନ୍ତର ।
୯ମ ପଦ—କରୁଣା—ଦୟା । ସ୍ୱାଧୀନଭର୍ତ୍ତୃକା—ଯେଉଁ ସ୍ତ୍ରୀର ଅଧୀନରେ ସ୍ୱାମୀ ଥାଏ । ଭର୍ତ୍ତା—ସ୍ୱାମୀ ।

---

୭ମ ପଦ—"ଯୋଗୀମାନେ ବିଶେଷ କ୍ଷମ ଅଟନ୍ତି, ତେଣୁ ସ୍ତ୍ରୀଙ୍କ ବଚନରେ ସେମାନେ ଶ୍ରଦ୍ଧାନ୍ୱିତ ହୁଅନ୍ତି ନାହିଁ କି ତା ଶୁଣନ୍ତି ନାହିଁ ।" ଲକ୍ଷ୍ମଣ ଏହା କହିବାରୁ ରାମଚନ୍ଦ୍ର କହିଲେ, "ଶିବଙ୍କଠାରୁ ଆଉ ବଡ଼ ଯୋଗୀ କିଏ ଅଛି ? ସ୍ତ୍ରୀ ଅନ୍ତର ହେବା ଭୟରେ ସେ ଅର୍ଦ୍ଧାଙ୍ଗରେ ଧରି ରଖି ସ୍ତ୍ରୀଙ୍କ କହନ ବଚନ ଶୁଣୁଅଛନ୍ତି ।"

୮ମ ପଦ—ରାମଚନ୍ଦ୍ର ଏ କଥା ଦୀର୍ଘ ସ୍ୱରରେ ଲକ୍ଷ୍ମଣଙ୍କୁ କହି ଶୀଘ୍ର ଗମନ କଲେ । କୁଟୀର ନିକଟରେ ପ୍ରବେଶ କରି ପ୍ରିୟା ଆସି ବାଟକୁ ଗୃହିଁ ନ ଥିବାର ଦେଖି ସେ କାତର ହେଲେ । ପୁଣି ମନ ମଧ୍ୟରେ ବିଚାର କଲେ, 'ସେ ତ ସ୍ନେହାଧୀନା, ମୁଁ କୋପ କରିଥିଲେ ମଧ୍ୟ ମୋ ଠାରେ ସେ ବିମନା ହୁଏ ନାହିଁ । ଏବେ ବିନା ଦୋଷରେ ବିମନା କାହିଁକି ହେଲା ? [ ସେ କାହିଁକି ଦୁଆର ମୁହଁରେ ମୋ ଆସିବା ବାଟକୁ ଗୃହିଁ ଠିଆ ହୋଇ ନାହିଁ ? ] ।

୯ମ ପଦ—'କରୁଣା ବୃକ୍ଷରେ ନୈରାଶ୍ୟ ଫଳ କେବେ ଫଳେ କି ? ଯେବେ ମୁଁ କାନ୍ଥରେ 'ମୋର ପ୍ରିୟା ସ୍ୱାଧୀନ ଭର୍ତ୍ତୃକା' ମୁଁ ମୋର ପ୍ରିୟାର ଦାସ—ଏହା ଲେଖିଥାଏଁ, ତେବେ ସେ ତାହା ଦେଖି ମୋତେ କହେ 'ତବାଧୀନଭର୍ତ୍ତା'—ତୁମ୍ଭର ମୁଁ ଦାସୀ ହୋଇ ଲେଖ ।'

ବିରହୋତ୍କଣ୍ଠିତା ସାର ନାଗରୀ ରତନ ।
ବସୁଛ ତ ଥାନ୍ତା ନବ ନବ ଭାବମାନ
ଚେତନରେ ମୁଁ ତାହାର ।
ବନ୍ଧନେ କବରୀ ଅଣି ଅପେକ୍ଷୁ ଚଉଁରୀ ।୧୦।
ବାସକସଜ୍ଜା ହୋଏ ମୁଁ ପାଶୁଁ ଗଲା କ୍ଷଣେ ।
ବେଶ ସାରି ଶଯ୍ୟା କରି ନିରେଖେ ପ୍ରାଙ୍ଗଣେ ।
ବିପ୍ରଲବ୍ଧା ହୋଇ ଧନ ।
ତକାଏ କୁସୁମକାଳେ ତେଜି କେଳି ସ୍ଥାନ ।୧୧।
ବାର ବାର ଅଭିସାର ମୋ ପାଶେ ପଣ୍ଡିତା ।
ବିପରୀତ ମାଗିବାରେ ହୁଅଇ ଖଣ୍ଡିତା ।
ବିଧି ପ୍ରୋଷିତଭର୍ତ୍ତୃକା ।
ବାଞ୍ଛିବାକୁ କରିବାକୁ କରୁଅଛି ଦକା ।୧୨।

---

୧୨ଶ ପଦ—ଅଭିସାର—ସଙ୍କେତ ସ୍ଥଳକୁ ଗମନ ।

---

୧୦ମ ପଦ—'ସେ ନାଗରୀବରର ସୀତା ବିରହୋତ୍କଣ୍ଠିତା ନାୟିକାଙ୍କ ମଧ୍ୟରେ ଶ୍ରେଷ୍ଠ । ସେ ମୋର ବିରହରେ ନବ ନବ ଭାବନାମାନ ଚିତ୍ତରେ ବସୁଛି ଥାନ୍ତି । ମୁଁ ତାହାର ପଦେ କଥାରେ କେଶ ବନ୍ଧନ ପାଇଁ ଚଉଁରୀ ଅଣିଅଛି । ( ତେବେ ସେ ବିମନା ହେଲେ କାହିଁକି ?)

୧୧ଶ ପଦ—'ମୋ ପାଖରୁ ଗଲାକ୍ଷଣି ସେ ବାସକସଜ୍ଜା ନାୟିକାପ୍ରାୟ ହୁଏ । ଅପେ ବେଶ ସାରି ଶେଯ ପକାଇ ଅଗଣାରେ ଠିଆ ହୋଇ ମୋତେ ନିରେଖୁ ଥାଏ । ପୁଣି ସେହି ପ୍ରିୟା ମୋର ବିପ୍ରଲବ୍ଧା ନାୟିକା ହୋଇ ପୁଷ୍ପକାଳ ସମୟରେ କେଳି ସ୍ଥାନ ତେଜି ଚାଲିଯାଏ ।' [ ତାହା ତ ହୋଇ ନାହିଁ ଏବେ ନ ଆସେ କାହିଁକି ? )

୧୨ଶ ପଦ—'ଅଭିସାରିକା ନାୟିକାପରି ସେ ବାରମ୍ବାର ମୋ ପାଖକୁ ଅଭିସାରେ ନିପୁଣ ଅଟେ । ମୁଁ ବିପରୀତ ରତି ମାଗିବା ବେଳେ ସେ ଖଣ୍ଡିତା ନାୟିକା ହୁଏ ଅର୍ଥାତ୍ କ୍ରୋଧଯୁକ୍ତା ହୋଇ ମୋ ବାକ୍ୟ ଖଣ୍ଡନ କରେ । [ଏବେ ମୁଁ ବିପରୀତ ରତି ମାଗି-ନାହିଁ – ତେବେ ସେ ବିମନା ହେଲା କାହିଁକି ? ) । ବିଧାତା ମୋର ପ୍ରିୟାକୁ 'ପ୍ରୋଷିତଭର୍ତ୍ତୃକା' କରିବାକୁ ( ମୋ ସହିତ ବିଚ୍ଛେଦ କରିବାକୁ ] ମୁଁ ସବୁବେଳେ ଆଶଙ୍କା କରୁଥାଏ । ବର୍ତ୍ତମାନ ସେ ଆଶଙ୍କା ସତ୍ୟ ହେଲା କି ?'

ବହୁଥିବାରେ ଶରୀର ଜୀବନଈଶ୍ୱରୀ ।
ବହିବ ନାହିଁ ଚଳନ୍ତାନ୍ତରତା ସ୍ମୃତିରୀ ।
ବିବର୍ଜିତ ପ୍ରିୟାହୃଦ ।
ବିଚ୍ଛନ୍ଦରେ କେମନ୍ତେ ସେ ହେବ ଆସପଦ । ୧୩ ।
ବୋଇଲେ ଦେହଳୀ ପାଶେ ମୃଗଚର୍ମ ଥୋଇ ।
ବାସ ଦେହର କି ଛଳ ଲୁଚାଇବୁ ତୁହି !?
ବିଳମ୍ବେ ମୋ କରି ହଠ ।
ବିଧାନ ଯେ କରିଅଛୁ ଲୁଚିବା କପଟ । ୧୪ ।
ବିଲେପ ନୋହିବୁ ରସବତୀ ପୂରି ତମେ ।
ବିଧିରେ ପ୍ରସନ୍ନମୁଖୀ ହାସ୍ୟ ଭାବ କ୍ରମେ ।
ବିସ୍ତାରିତ କରି ପାଣି ।
ବେଶ୍ମେ ପଶି କେଳିକୁ ଆସ ରେ ପ୍ରିୟ ଭଣି । ୧୫ ।

---

୧୩ଶ ପଦ—ବିବର୍ଜିତ—ଶୂନ୍ୟ । ବିଚ୍ଛନ୍ଦରେ—କୌଶଳରେ । ଛନ୍ଦ—କପଟ । ଆସପଦ—ସ୍ଥାନ ।

୧୪ଶ ପଦ—ଦେହଳୀ—ଏରୁଣ୍ଡୀ ବନ୍ଧ ।

୧୫ଶ ପଦ—ବିଲେପ—ଛପିବା । ତମ—ଅନ୍ଧକାର । ପ୍ରସନ୍ନମୁଖୀ—ଉଜ୍ଜ୍ୱଳବଦନା ବା ଚନ୍ଦ୍ରମୁଖୀ । ପାଣି—ହସ୍ତ । ବେଶ୍ମ—ଘର ।

---

୧୩ଶ ପଦ—'ମୋ ପ୍ରାଣେଶ୍ୱରୀ ଦେହ ଧରି ଥିବାଯାଏ, ଚଳନ୍ତାନ୍ତରତା ସ୍ମୃତିରୀ ବହିବ ନାହିଁ । [ ଚଳନ କରି ମୋଠାରୁ ଅନ୍ତର ହେବ ନାହିଁ ]। କାରଣ ମୋର ପ୍ରିୟାର ହୃଦୟ କପଟଶୂନ୍ୟ । ଏବେ କି କୌଶଳରେ 'ଛନ୍ଦ' କପଟ ସେ ହୃଦୟରେ ସ୍ଥାନ ପାଇଲା ?'

୧୪ଶ ପଦ—ରାମଚନ୍ଦ୍ର ମନେ ମନେ ଏହା ବିଚାରି ଯାଇ ଦ୍ୱାର ମୁହଁ ପାଖରେ ମୃଗଚର୍ମ ଥୋଇ ଦେଇ କହିଲେ, "ମୋର ଆସିବାରେ ବିଳମ୍ବ ହେବାରୁ, ତୁ ହଠ କରି କପଟରେ ଲୁଚିଅଛୁ । ମାତ୍ର ତୋହର ଦେହର ବାସନାକୁ କପଟ କରି ତୁ ଲୁଚି ରହି ପାରିବୁ ? ( ତୋର ଦେହର ବାସନାରୁ ମୁଁ ଜାଣିପାରୁଛି ଯେ, ତୁ କେଉଁଠି ଲୁଚିଅଛୁ । ତେଣୁ ଲୁଚି ଫଳ କିଛି ନାହିଁ )।"

୧୫ଶ ପଦ—"ହେ ରସବତି ! ତୁ ଅନ୍ଧକାର ଗୃହରେ ମଧ୍ୟ ଅଦୃଶ୍ୟ ହୋଇ ପାରିବୁ ନାହିଁ । ଦୈବକ୍ରମେ ତୁ ପ୍ରସନ୍ନମୁଖୀ । ତୋର ହାସ୍ୟ ଭାବ ପରି ଫୁଟିବ [ ତେଣୁ ଅନ୍ଧକାରରେ ମଧ୍ୟ ତୋ ଦେଖା ଦିଶିପାରିବ ]।" ଏହା କହି ରାମଚନ୍ଦ୍ର ଗୃହ ମଧ୍ୟରେ ପ୍ରବେଶ କରି ହସ୍ତ ବଢ଼ାଇ ଡାକିଲେ, "ହେ ପ୍ରିୟା ! ମୋ କୋଳକୁ ଆ ।"

ବୋଲିଥିଲୁ ଆଣ ଏବା ମୃଗଚର୍ମ ପୁଚ୍ଛ ।
ବାଛି ବାଛି ତୋଳି ଆଣିଅଛି ପୁଷ୍ପଗୁଚ୍ଛ ।
ବସ ସେ ଅଜିନେ ବେଗେ ।
ବାନ୍ଧିବି ମୁଁ କୁନ୍ତଳ ଭ୍ରମର ଫୁଲଯୋଗେ । ୧୬ ।

ବହୁଛୁ ଶଙ୍କା ଚଉଁରୀ ଦେଇ ମୋର ହସ୍ତ ।
ବଦାଇବେ ରଚିବାକୁ କି ପୁଚ୍ଛାନ୍ୱିତ ।
ବୋଲିବାକୁ ନାହିଁ ଭାହି ।
ବୋଇଲି ବଚନ ଆନ ହୋଇଛି ମୋ ଠାହିଁ ।୧୭।

ବନ୍ଧୁ ତୁହି ଧନ ତୁହି ପ୍ରାଣ ତୁହି ସତେ ।
ବନ୍ଧୁ ଧନ ଦୂର କରି ଅଛି ସଙ୍ଗତେ ।
ବିଗତ ତୁ ହେଲେ ରକ୍ଷା
ବ୍ରହ୍ମାଣ୍ଡରେ କି ରୂପରେ ଅଛି ସୁକଣ୍ଠାକ୍ଷା । ୧୮ ।

---

୧୬ଶ ପଦ—ପୁଷ୍ପଗୁଚ୍ଛ—ଫୁଲପେଣ୍ଡା । ଅଜିନ—ମୃଗଚର୍ମ । କୁନ୍ତଳ—କେଶ । ଭ୍ରମର—ଚଉଁରୀ ।

୧୭ଶ ପଦ—ପୁଚ୍ଛାନ୍ୱିତ—ଉପସ୍ଥିତ ରଚ ।

୧୮ଶ ପଦ—ସୁକଣ୍ଠାକ୍ଷ—ସୁକ୍ରୁଷା ।

---

୧୬ଶ ପଦ—"ତୁ କେବଳ ମୃଗଚର୍ମ ଓ ମୃଗପୁଚ୍ଛ ଆଣିବାକୁ କହିଥିଲୁ । ମାତ୍ର ମୁଁ ତାହା ବ୍ୟତୀତ ବାଛି ବାଛି ଫୁଲପେଣ୍ଡା ସବୁ ତୋଳି ଆଣିଛି । ତୁ ଶୀଘ୍ର ଆସି ସେ କନକ ମୃଗଛାଲରେ ବସ । ଫୁଲ ଓ ଚାମର ଯୋଗେ ମୁଁ ତୋର କେଶ ବାନ୍ଧି ଦେବି ।"

୧୭ଶ ପଦ—"ହେ ପ୍ରିୟେ ! 'ଚଉଁରୀ ମୋର ହସ୍ତରେ ଦେଇ ଉପସ୍ଥିତ ରଚ କରିବାକୁ କହିବାଇବେ'—ଏହା ଭାବି ତୁ ଭୟ କରୁଛୁ କି ? ତା ମଧ୍ୟ ମୁଁ କହୁ ନାହିଁ । ମୋର କହିବା କଥା କେବେ ଅନ୍ୟଥା ହୋଇଛି କି ?"

୧୮ଶ ପଦ—"ତୁ ମୋର ବନ୍ଧୁ, ତୁ ମୋର ଧନ, ତୁ ମୋର ପ୍ରାଣ ଅଟୁ, ଏହା ସତ୍ୟ ଅଟେ । ତେଣୁ ବନ୍ଧୁ ଧନ ଦୂର କରି ତୋତେ ସଙ୍ଗତରେ ପାଇଅଛି । ହେ ସୁକ୍ରୁଷା ! ତୁ ମୋର ପ୍ରାଣ, ତୁ ଛାଡି ଚାଲିଗଲେ ମୋର ଆଉ ବ୍ରହ୍ମାଣ୍ଡରେ କେଉଁ ରକ୍ଷା ଅଛି ? [ ପ୍ରାଣହୀନ ଶରୀର ରହିବା ଅସମ୍ଭବ ] ।"

କସଲ ହୃଦୟେ ଦୟା କଠିନ ଉରଜ ।
କନ୍ୟା ଜଗତରେ ଜ୍ୟେଷ୍ଠ ପଛର ସହଜ ।
ଜକର୍ମକୁ ମୋର ଦେଖ ।
କସ୍ପବେଦା ଏମନ୍ତ ଭାବକୁ ଅଛୁ ଉଭ ।୧୯।
ଅନନ୍ତ ଇଙ୍ଗିତ ଛଳ ବଚନ ପ୍ରକାଶି ।
ତେବେ ନ ପାରିଲେ ଯହୁଁ ବାଳା ମନ ତୋଷି ।
ବ୍ୟର୍ଥ ବାଗୁଲେ ପଣ୍ଡିତ ।
ବୁଝାଇଲ ପ୍ରାୟ ଶାସ୍ତ୍ର ହୋଇଲ୍ଲ ତେମନ୍ତ ।୨୦।
କହିବ୍ୟ ଲକ୍ଷ୍ମଣେ ଏ ଜାନକୀ କ୍ଷୀଣକୁକ୍ଷୀ ।
କଣ୍ଠ ହେଲା ରାକ୍ଷସୀ କପଟେ ଗଲ ଭକ୍ଷି ।
ବାଧ ବୋଲ ସ୍ତ୍ରୀହତ୍ୟା ।
କଧ ନ କଲକୁ ଶୁଝାଇଲ୍ଲ କଇବତା ।୨୧।

---

୧୯ଶ ପଦ—କସ୍ପବେଦା—ସୁନ୍ଦରୀ ।
୨୦ଶ ପଦ—ବାଗୁଳ—ବାତୁଳ ବାକଦୁଢ ।
୨୧ଶ ପଦ—କ୍ଷୀଣକୁକ୍ଷୀ—କ୍ଷୀଣୋଦରୀ । କଣ୍ଠ—ନାକକଟା କ୍ୟଙ୍ଗ ।
କଇବତା—ଶତ୍ରୁତା ।

---

୧୯ଶ ପଦ—"ଜୋ ହୃଦୟରେ ଦୟା ଓ କଠିନ ସ୍ତନଯୁଗଳ ଉଭୟେ ବାସ କରନ୍ତି । ତାଙ୍କ ମଧ୍ୟରେ ଜ୍ୟେଷ୍ଠ ଦୟା ସ୍ୱଭାବରେ ଜଗତରେ ପୂଜ୍ୟ ଅଟେ ( କଠିନ ଗୁଣ ପୂଜ୍ୟ ନୁହେ ) । ହେ ପରମାସୁନ୍ଦରୀ ! ମୋର କର୍ମ ଦୋଷକୁ ତୁ କନିଷ୍ଠ କଠିନ ଗୁଣକୁ ଧାରଣ କରିଅଛୁ କି ? ( ଏ ଜ୍ୟେଷ୍ଠହୋଇ ସୁଦ୍ଧା ପୂଜ୍ୟ ହେଲେ ନାହିଁ, ମାତ୍ର ଭରତ କନିଷ୍ଠ ହୋଇ ପୂଜ୍ୟ ହେଲେ । ଏହ କଥା ଜାଣିକ ତୁ ଜ୍ୟେଷ୍ଠ ଗୁଣ ଦୟାକୁ ଛାଡ଼ି କଠିନ ଗୁଣକୁ ଧରିଲୁ କି ? )"

୨୦ଶ ପଦ—ରାମଚନ୍ଦ୍ର ଏହିପରି ଅନନ୍ତ, ପରିହାସ, ଛଳ ପୂର୍ଣ୍ଣ ବାକ୍ୟମାନ ପ୍ରକାଶ କରି ମଧ୍ୟ ସୀତାଙ୍କ ମନ ତୋଷି ପାରିଲେ ନାହିଁ । ବାତୁଳ ଲୋକକୁ ପଣ୍ଡିତ ଶାସ୍ତ୍ର ବୁଝାଇଲା ପ୍ରାୟ ଏ ବଚନ ସବୁ ବ୍ୟର୍ଥ ହେଲା ।

୨୧ଶ ପଦ—ତତ୍ପରେ ଲକ୍ଷ୍ମଣଙ୍କୁ କହିଲେ, 'କୃଶୋଦରୀ ସୀତାକୁ କଟନାସିକା ସୂର୍ପଣଖା ରାକ୍ଷସୀ କପଟରେ ଆସି ଖାଇ ଗଲା କି ? ସ୍ତ୍ରୀ ହତ୍ୟା ଦୋଷ ବାଧିବ ବୋଲି ବିଚାରି ତାକୁ ବଧ ନ କରିବାରୁ ସେ ଏହିପରି ଶତ୍ରୁତା ଶୁଝାଇଲା କି ?"

ବିଧାତା ନିର୍ମାଣ କଲା କେ ଆନ କରିବ ।
ବୋଲନ୍ତି ପିତା ହା ରାମ ହା ରାମ ଗଲେ ଜୀବ ।
ହେଲ ପଡ଼ିଲା ଲକ୍ଷ୍ମଣ ।
ବୋଲି ହା ରାମ ହା ରାମ ଯିବ ମୋ ପରାଣ ।୨୨।
ବିରଚି କରୁଣ ତୋତେ କୃପାସିନ୍ଧୁ ମିତ ।
ବୋଲଇ ଯେ ପ୍ରଥମୁଁ ପୀୟୂଷ କରି ଜାତ ।
ବଶ କରି କଲୁ ଶିବ ।
ବିଷ ଜନ୍ମାଇଲୁ ଆନ ଅର୍ଥେ ପାର ଯିବ ।୨୩।
ବୋଲନ୍ତି ଯେ ଚନ୍ଦ୍ର ଶଶୀ କର୍ପୂର ହାଟକ ।
ବାରି ଶଶୀ ମାତ୍ର କରେ ଜଗତ ଆଲୋକ ।

---

୨୩ଶ ପଦ—କରୁଣ—କ୍ରନ୍ଦନ । ପୀୟୂଷ—ଅମୃତ । ଶିବ—ମଙ୍ଗଳ, ମହାଦେବ ।

୨୪ଶ ପଦ—ଶଶୀ—ଚନ୍ଦ୍ର । ହାଟକ—ସୁବର୍ଣ୍ଣ । ତମ—ଅନ୍ଧକାର । ବୈଦେହୀରଞ୍ଜନ—ରଘୁପତି ।

---

୨୨ଶ ପଦ—"ହେ ଲକ୍ଷ୍ମଣ ! ବିଧାତାର ବିଧାନ କଥା କିଏ ଅନ୍ୟଥା କରିବ ? ପିତା ଦଶରଥ 'ହା ରାମ ହା ରାମ' କହି ଜୀବନ ତ୍ୟାଗିଲେ; ଏବେ ସେହି ସମୟ ଆସି ପଡ଼ିଲା, 'ହା ରାମ ହା ରାମ, କହି ମୋର ଜୀବନ ଯିବ ।"

୨୩ଶ ପଦ—ତତ୍ପରେ ରାମଚନ୍ଦ୍ର ବେଦନ କରି କହିଲେ, "ହେ ସିନ୍ଧୁ ! ତୋତେ ମୁଁ କୃପାସମୁଦ୍ର ବୋଲି କହେ । ସମୁଦ୍ର ପ୍ରଥମରେ ଅମୃତ ଜାତ କରି ପରେ ବିଷ ଜାତ କଲୁ; ସେହିପରି ତୁ ପ୍ରଥମେ ସୁଖରୂପ ଅମୃତ ଦେଇ ମୋତେ ବଶ କଲୁ । ବର୍ତ୍ତମାନ ଶେଷରେ ତୁ ବିଷ ଜନ୍ମାଇଲୁ । ସେ ବିଷ ଶିବ ଭିନ୍ନ ଅନ୍ୟ କାହାଠାରେ ପାର ହେବ କି ? ( ମୋର ହୃଦୟରେ ବିଷ ଭରି ଦେଲୁ, ମୁଁ ତାହା ସହ୍ୟ କରି ନ ପାରି ନିଶ୍ଚୟ ନାଶ ଯିବି ) ।"

୨୪ଶ ପଦ—ଶଶୀ, କର୍ପୂର, ହାଟକ ( ସୁବର୍ଣ୍ଣ ), ବାରି ( ଜଳ ) ଏ ସମସ୍ତେ ଚନ୍ଦ୍ର ବୋଲନ୍ତି, ମାତ୍ର କେବଳ ଶଶୀ ଘୋର ଅନ୍ଧକାରକୁ ନାଶ କରେ ଓ ସଂସାରକୁ ଆଲୋକିତ କରେ । ସେହିପରି ସୀତା ଅନେକ ଥିଲେ ମଧ୍ୟ ତୁ କେବଳ ଏକା ମୋର ଆନନ୍ଦଦାୟିନୀ ଓ ଦୁଃଖନାଶିନୀ ଅଟୁ । ( କର୍ପୂର, ସୁବର୍ଣ୍ଣ, ଜଳ ଚନ୍ଦ୍ର ନାମ ବହନ କଲେ ମଧ୍ୟ ସେପରି ଜଗତକୁ ଆଲୋକିତ କରିବାର ଗୁଣ ତାଙ୍କର ନାହିଁ, ସେହିପରି ଏକା ତୋ ବ୍ୟତୀତ ଅନ୍ୟ କୌଣସି

ବିଧ୍ୱଂସିଲ ତମ ମୋର ।
ବିବେକରତନ ଧନ ମନେ ବେଳେ କର । ୨୪ ।
ବସନ୍ତ ଋତୁ ତ ଅନ୍ତ ହୋଇ ନାହିଁ ମୋର ।
ବଚନ କୋକିଳ କଣ୍ଠ ଗଞ୍ଜିଲା ମାଧୁର୍ଯ୍ୟ ।
ଦେଖୁ ଦେଖୁ ସେ ଅଧିକ ।
ବିଭ୍ରମ ଜନ୍ମୁ ପାଦପେ ବିନୟ ସର୍ଜିକ । ୨୫ ।
ବଲ୍ଲୀ ଆଲିଙ୍ଗନ ତ ତୁମ୍ଭର ନାହିଁ ଟଳ ।
ବିଯୋଗୀ ହେଲି ବିଶେଷେ ଅନୁସରିଥିଲି ।
ବାଳୀ କାହିଁ ଗଲା କହ ।
ବିକଶିତ ପୁଷ୍ପେ ତ ଗର୍ବ୍ୟ ହୋଇ ହସ । ୨୬ ।
ବୋଲଉଛ କେ ରସାଳ କେ ପୁଣି ଅଶୋକ ।
ବଞ୍ଜୁଳ କେହୁ କର ତୁମ୍ଭ ମଧ୍ୟେ ଏକ ।

---

୨୭ଶ ପଦ :—ରସାଳ—ରସଯୁକ୍ତ, ଆମ୍ବଗଛ । ଅଶୋକ—ଶୋକହୀନ, ଅଶୋକ ବୃକ୍ଷ । ବଞ୍ଜୁଳ—ନମ୍ରକ, ବାହାଡ଼ା ଗଛ ।

---

ସୀତା ନାମ୍ନୀ ରମଣୀର ମୋତେ ତୋଷ କରିବାର କ୍ଷମତା ନାହିଁ)। ରେ ବିବେକରତ୍ନ ! ରେ ଧନ । ଏ କଥାକୁ ଥରେ ମାତ୍ର ତୋ ମନରେ ବିଚାର କର ।

୨୫ ଶ ପଦ:—"ରେ ମୋର ! ବସନ୍ତ ଋତୁ ତ ଶେଷ ହୋଇ ନାହିଁ । ତୋର ବଚନ କୋକିଳ କଣ୍ଠ ମାଧୁର୍ଯ୍ୟ ଗଞ୍ଜିଲା ? (ବସନ୍ତ ଋତୁ ଥାଉଁ ଥାଉଁ ତୋର ବଚନ ରୂପ କୋକିଳର ଶବ୍ଦ ନୀରବ ହେଲା କାହିଁକି)?" ଏହିପରି ଦେଖୁ ଦେଖୁ ରାମଙ୍କର ଅଧିକ ବିଭ୍ରମ ଜାତ ହୁଅନ୍ତେ, ସେ ବୃକ୍ଷମାନଙ୍କୁ ବିନୟ କରି କହିଲେ—

୨୬ଶ ପଦ:—"ହେ ବୃକ୍ଷଗଣ ! ତୁମ୍ଭଙ୍କୁ ତ ଲତାମାନେ ଆଲିଙ୍ଗନ କରି ଅଛନ୍ତି—ତା ଅନ୍ୟଥା ହୋଇ ନାହିଁ । ମୁଁ ବିଶେଷରେ ତୁମ୍ଭଙ୍କ ଅନୁସରଣ କରି ଏଠାରେ ରହିଥିଲି । ବର୍ତ୍ତମାନ ମୁଁ ବିରହୀ ହେଲି । ମୋର ସୀତା କୁଆଡ଼େ ଗଲା କହ । ପୁଷ୍ପ ବିକାଶ ଛଳରେ ତ ଗର୍ବ୍ୟ ଭାବରେ ହସୁଅଛ । (ମୁଁ ତୁମ୍ଭର ଆଶ୍ରିତ—ତଥାପି ମୋ ବିପଦବେଳେ ହସୁଛ । ଏ କଣ ଭଲ ବ୍ୟବହାର ?)"

୨୭ଶ ପଦ:—"ତୁମ୍ଭମାନଙ୍କ ମଧ୍ୟରେ କିଏ 'ରସାଳ' ରସବନ୍ତ (ଆମ୍ବ), କିଏ ପୁଣି 'ଅଶୋକ' ଶୋକବିହୀନ, କିଏ 'ବଞ୍ଜୁଳ' ଉନ୍ନତମାନ ( ବାହାଡ଼ା )

ଏନା ବସ ମୁଁ ହୋଇବି ।
ତୁଣ୍ଡ ଗୋଚରେ ସ୍ତବକ ହୋଇ ଜନ ନେବି । ୨୭ ।
ହୋଇଣ ଯେ ଫଳବନ୍ତ ମୋ ପ୍ରଭପଣାରେ ।
ବଫଳ ହୋଇଣ କିଏ ହୋଇବ ସଂସାରେ ।
ବନ୍ଧୁବ ମୁଁ ନୋହେ ମିତ ।
ବହ ଠେଲି ତୁମ୍ଭେ ଜଣା ମୁଁ ବହନ୍ତି ସତ । ୨୯ ।
ବମୋହୃତ ଏକ ଗନ୍ଧ-ବାସ ସୁମନରେ ।
ବଲ୍ ବଲ ପିଧାନ ପୁଣି ଶାଖା ରଞ୍ଜନରେ ।
ବଳସିତ ଯହିଁରେ ଖଗ ।
ବାଞ୍ଛି ବହୁ ମୋ ପ୍ରିୟାର ନାଶ ଉଦ୍‌ବେଗ ।୨୯ ।

---

୨୯ ପଦ:—ବମୋହୃତ—ସୁବାସିତ ବା ପରମାନନ୍ଦିତ । ପିଧାନ—ପିନ୍ଧିବା । ଶାଖା—ଡାଳ, ସହାୟ । ଯହିଁରେ—ଯାହାରି, ଯହିଁରେ । ଖଗ—ପକ୍ଷୀ, ଶର ।

---

ହୋଇଥିଲ । ତୁମ୍ଭମାନଙ୍କ ମଧ୍ୟରେ ମୁଁ ବାସ କରି ଙ୍କରସ ହେବି, ପୁଣି ଗୋଚରେ ତୁଣ୍ଡ ଉତ୍ପାତ୍ତ ହୋଇ ଜନ ନେବି । ( ତୁମ୍ଭଙ୍କୁ ଆଶ୍ରୟ କରିବାରୁ କଣ ଏହି ଫଳ ମିଳିଲା ? ”

୨୭ଖ ପଦ—“ତୁମ୍ଭେମାନେ ପୁଣି ‘ଫଳବନ୍ତ’ ଫଳଯୁକ୍ତ ହୋଇଅଛ, ମୋ ପ୍ରଭୁ ପଣାରେ ବଫଳ ହୋଇବ କି ? ( ମୋ ଆଶାକୁ ବଫଳ କରିବ କି ? ) ସଂସାର ମଧ୍ୟରେ ମୁଁ ତୁମ୍ଭର ଶତ୍ରୁ ନୁହେଁ, ମିତ୍ର ଅଟେ । ତୁମ୍ଭେ ‘ଇଚ୍ଛା’ ଟେର ଧାରଣ କରିଅଛ ବୋଲି ମୁଁ ମଧ୍ୟ ଇଚ୍ଛା କରୁଅଛି । ଏହା ମଧ୍ୟ ମିଥ୍ୟା ନୁହେଁ ।”

୨୯ଗ ପଦ—“ତୁମ୍ଭେ ମନ୍ଦ ଓ ‘ବାସ ସୁମନରେ’ ସୁବାସିତ କୁସୁମରେ ବମୋହିତ ହୋଇଅଛ, ସେହିପରି ମୁଁ ମଧ୍ୟ ଉତ୍ତମ ମନରେ ପତି ଚିନ୍ତାରେ ମୋହିତ ହୋଇଅଛି । ପୁଣି ତୁମ୍ଭେ ବଲ୍‌କଳ ପିନ୍ଧିଛ ( ତୁମ୍ଭ ଦେହରେ ବକଳ ଜଡିତ ହୋଇ ରହିଛି ) ଓ ଡାଳମାନଙ୍କରେ ରଞ୍ଜିତ ହୋଇଅଛ । ମୁଁ ସେହିପରି ବଲ୍‌କଳ ପିନ୍ଧିଅଛି ଓ ଲକ୍ଷ୍ମଣର ସହାୟରେ ରହିଅଛି । ତୁମ୍ଭଠାରେ ପକ୍ଷୀମାନେ ବିଳାସ କରନ୍ତି, ମେ ହସ୍ତରେ ବାଣମାନେ ଶୋଭିତ ହୁଅନ୍ତି । (ସବୁ ପ୍ରକାରରେ ମୁଁ ତୁମ୍ଭର ମିତ୍ର ଅଟେ ) । ଅତଏବ ମୋ ପ୍ରିୟାର ଖବର କହି ମୋର ଉଦ୍‌ବେଗକୁ ଦୂର କର ।”

ବାତେ ପଲ୍ଲବ ଚଳାଇଲେ ଯେଉଁ ମାତୃଗ ନଗେ ।
ବିବେକ ଏ ଠାବନ୍ତି ପଚ୍ଛୁ କି ଏହୁ ଦଗେ ।
ବାସ ନିକଟେ ଉଟିଜ ।
ଶୁଣିଲେ ବାକ୍ୟକୁ ଶିଖିଛନ୍ତି ସାରୀ ଶୁକ ।୩୦।
ବୋଲନ୍ତେ ରାମ ରାଘବ ଦାଶରଥି ତହିଁ ।
ବିବେଚନା ନାମ ଧରି ଡାକେ କି ବୈଦେହୀ ।
ଦେବୀ ହୋଇ ଦେଖି ମାର୍ଗ ।
ବୈଷ୍ଣବ ସରସୀ ପ୍ରାପ୍ତ ଚକ୍ରଶଙ୍ଖେ ଯୋଗ ।୩୧।
ବଦନ୍ତି ଭ୍ରାତେ ସୁଦନ୍ତି ସୁଦନ୍ତୀଗମନା ।
ବଳେ ବସାଇ ସ୍ୟନ୍ଦନେ କେ ଗଲା କି ଘେନି ।
ଭାବ-ସିନ୍ଧୁ ମଧ୍ୟେ ମୋର ।
ବହିତ୍ର ବୁଡାଇ ଧନ ହରିନେଲା ଚୂର ।୩୨।

---

୩୦ଶ ପଦ—ପଲ୍ଲବ—ପତ୍ର । ନଗେ—ବୃକ୍ଷମାନେ ।
୩୨ଶ ପଦ—ସୁଦନ୍ତି—ସୁଦଶନା । ସୁଦନ୍ତୀଗମନା—ଗଜଗମନା ।
ସ୍ୟନ୍ଦନ—ରଥ । ବହିତ୍ର—ବୋଇତ ବା ଜାହାଜ । ଚୂର—ଲୁଟି ।

---

୩୦ଶ ପଦ—ପବନ ଦ୍ୱାରା ବୃକ୍ଷମାନଙ୍କର ପତ୍ର ଯେଉଁ ଦିଗକୁ ଚାଳିତ ହେଲା, ରାମ ସେ ଦିଗକୁ ଚାହିଁ ବିଚାର କଲେ, 'ତୁମ୍ଭର ପ୍ରିୟା ଏହି ଦିଗରେ ଅଛି'—ବୃକ୍ଷମାନେ ମୋତେ ଠାରି ଏହା କହୁଅଛନ୍ତି କି ? ଏହା ଭାବି ସେ ସେହି ଦିଗକୁ ଯିବାରୁ ଋଷିଙ୍କ ମଠ ନିକଟରେ ଥିବା ଶାରୀ ଶୁକ ପକ୍ଷୀଦ୍ୱୟଙ୍କର କଥାବାର୍ତ୍ତା କରୁଥିବାର ଶୁଣିଲେ ।

୩୧ଶ ପଦ—ସେହି ଶୁକ ଶାରୀ 'ରାମ ରାଘବ ଦାଶରଥି' ବୋଲି କହନ୍ତେ ରାମ ବିଚାରିଲେ, "ବୈଦେହୀ ମୋର ନାମ ଧରି ଡାକେ କି ?" ଏହା ଭାବି ସରୋବରରେ ଯାଇ ଦେଖିଲେ, ତାହା ବୈଷ୍ଣବ ପୁଷ୍କରିଣୀ ପରି ଚକ୍ରଶଙ୍ଖ ଯୁକ୍ତ ହୋଇଅଛି । [ ବୈଷ୍ଣବମାନେ ଯେପରି ଚକ୍ର ଛାପାରେ ଯୁକ୍ତ ହୋଇଥାନ୍ତି, ପୁଷ୍କରିଣୀ ସେପରି ଚକ୍ରବାକ ପକ୍ଷୀ ଦ୍ୱାରା ଯୁକ୍ତ ହୋଇଥାଏ, ସେହିପରି ପୃଥ୍ୱୀ ରଥର ଚକ୍ର ଚିହ୍ନରେ ଯୁକ୍ତ ହୋଇଅଛି ) ।

୩୨ଶ ପଦ—ରଥ ଚକ ପଡିଥିବାର ଦେଖି ରାମ ଲକ୍ଷ୍ମଣଙ୍କୁ କହିଲେ, "ଗଜଗମନା ସୁଦଶନା ସୀତାକୁ ବଳାତ୍କାରରେ ରଥରେ ବସାଇ କିଏ ନେଇ ଗଲା କି ? ଏହା ଯେ କଲା, ସେ ମୋର ଭବସମୁଦ୍ର ମଧ୍ୟରେ ପ୍ରୀତି ବାଣିଜ୍ୟର ବୋଇତକୁ ବୁଡାଇ ସୀତାରୂପ ଧନକୁ ଲୁଟି କରି ନେଇଗଲା ।"

ବାଣିଜ୍ୟ ବନ୍ଧନେ କେହ୍ନେ ଜୀବନ ପୋଷିବ ?
କର୍ଷସ୍ଥଳେ ତାହା ତନୁ ସୁବର୍ଣ୍ଣ କଷିବ ?
କାରକାନକୁ ସେ ଫାଇଁ ।
ବୃଦ୍ଧି ଗତ ଲଭ ମନ ଅନୁରୂପେ ପାଇ ।୩୩।
ବହୁଳାଇ ମାନସ ଝିଲ୍ଲିକା ସ୍ୱନ ଶୁଣି ।
ଜାତୁକ୍କି ତ ନୂପୁର ସନ୍ଦ୍ରାବ ଯୋଷାମଣି ।
ବେଗି ପୁଣି ଏତେ ଭଣି ।
ବିଭଞ୍ଜନ ରଥକୁ ଦେଖିଲେ ରଘୁମଣି ।୩୪।
କହିଲେ ଶୁଭ ମୋ ଶୁଭ କର୍ମେ ଏ ଭଗନ ।
କି ମାସ୍ତ୍ରୈର ଧରି ତାକୁ କରେ କି ଗମନ ।
କଦେ ଭ୍ରମର କିଙ୍କିଣୀ ।
କରଶବାରୁ କି ରଣ ରଣ ପୂର୍ଣ୍ଣି ପୁଣି ।୩୫।

---

୩୩ଶ ପଦ—କର୍ଷ-ସ୍ଥଳ—ଦେହରୂପ କଷଟି ପଥର । କାରକାନ - କାରକାନୀ ସ୍ୱର୍ଣ୍ଣ ଅର୍ଥାତ୍ ଖାଣ୍ଟି ସୁନା । ଫାଇଁ—ଲାଭ ।

୩୪ଶ ପଦ—ଝିଲ୍ଲିକ—ଝିଙ୍କାରି । ସନ୍ଦ୍ରାବ—ପଳାଇଯିବା ।

---

୩୩ଶ ପଦ - "ଏବେ ବାଣିଜ୍ୟ ବନ୍ଧନରେ ମୁଁ କିପରି ଜୀବନ ପୋଷିବି ? (ଧନ ଥିବାରୁ ସିନା ପ୍ରେମ ବାଣିଜ୍ୟ କରି ଜୀବନ ପୋଷୁଥିଲି, ଏବେ ତ ସୀତାରୂପ ଧନ ଗଲା, ମୁଁ କିପରି ଚଳିବି ? ) ତାହା ଦେହ ସୁନାକୁ ମୋ ଦେହରୂପ କଷଟି ପଥରରେ କଷିବି ? ( ମୁଁ ଆଉ ତାହାକୁ ଆଲିଙ୍ଗନ କରିବି ?) ଖାଣ୍ଟି ସୁନାଠାରୁ ମୋ ପ୍ରିୟା ତନୁରୂପ ସୁନା ଅଧିକ ଅଟେ । ମନ ଅନୁରୂପେ ବାଣିଜ୍ୟରେ ସୁନା ରତିଏ ମାହାରେ ବୃଦ୍ଧି ହେଲେ, ଯେପରି ବଣିକର ଆନନ୍ଦ ଜାତ ହୁଏ, ସେହିପରି ମୁଁ ସୁରତ ଲାଭକରି ସୁଖୀ ହେଉଥିଲି ।"

୩୪ଶ ପଦ—ଏହି ସମୟରେ ରାମଚନ୍ଦ୍ରଙ୍କ ମନ ଝିଙ୍କାରି ନାଦ ଶୁଣି ବହୁଳିତ ହେଲା । ସେ ଭାବିଲେ, ନେଉଥିବା ଲୋକ ପାଖରୁ ସୀତା ପଳାଇ ଯାଉଛନ୍ତି କି ? ତେଣୁ ନୂପୁର ଶବ୍ଦ ଶୁଣାଯାଉଛି, [ଝିଙ୍କାରି ଶବ୍ଦ ଶୁଣି ନୂପୁର ଶବ୍ଦ ବୋଲି ମନେ କଲେ ]। ଏହା କହି ରାମ ଶୀଘ୍ର ଆଗକୁ ଗଲେ ଓ ଭଙ୍ଗା ହୋଇ ପଡ଼ିଥିବା ରଥକୁ ଦେଖିଲେ ।

୩୫ଶ ପଦ—ଭଙ୍ଗା ରଥ ଦେଖି ରାମଚନ୍ଦ୍ର ପୁଣି ଅସ୍ଥିର ମନରେ କହିଲେ, ମୋହର ଶୁଭକର୍ମଯୋଗୁଁ ଏ ରଥ ଭଗ୍ନ ହେଲା । ନାସ୍ତ୍ରୈର ମୋ ପ୍ରିୟାକୁ ଧରି ଚାଲି ଚାଲି ଯାଉଅଛି କି ?' ଏହି ସମୟରେ ଭ୍ରମର ଗୁଞ୍ଜନ ଶବ୍ଦ ଶୁଣି ସେ ମନେ କଲେ, 'ମୋ ପ୍ରିୟା ନାସ୍ତ୍ରୈରର ସହିତ ଯୁଦ୍ଧ କରିବାରୁ ତାର କଟି କିଙ୍କିଣୀ ଏପରି ଶବ୍ଦ କରୁଅଛି କି ?'

ବାଣୀ ଶୁଣାଇବା ଭଳି ରହ ରହ ଭାବ ।
ବନ୍ଧୁ ରସସିନ୍ଧୁ ରସାଭୂଷା ବୋଲି ଟେକ ।
କଲ୍ପତରୁଲେ ବନ୍ଧୁ ଭୃଙ୍ଗ ।
ବନ୍ଧ୍ୟାମାନ ତବ ମୁଖପାଖେ ଇନ୍ଦୁ ଭଲ ।୧୬।
ବ୍ରହ୍ମା ଯହିଁ ଜାତ ତାକୁ ଦଳିଛୁ ପଦରେ ।
ବନ୍ଧାଉ ଶାଢୀ ଧଟୀରେ ସିଂହକୁ ମଧ୍ୟରେ ।
ବିପକ୍ଷର ଜୀବନକୁ ।
କଳାଇଛୁ ମୋର କରେ ଦେବାର ମନକୁ ।୧୭।
ବୋଲି ବୋଲି ଯାଉଁ ଏହା ଜଟାୟୁ ପିଛନ୍ତ ।
ବଚନ ହତ ଉନ୍ତରେ କହିଲ ଏମନ୍ତ ।
ବଶ୍ୟେ କୋଦଣ୍ଡଧାରଣ !
ବୈଦେହୀ ନେଇ ଗଲଟି ଲଙ୍କାକୁ ରାବଣ ।୧୮।

---

୧୮ଶ ପଦ—ପିଚ୍ଛନ୍ତ—ପକ୍ଷୀ ।

---

୧୬ଶ ପଦ—ସୀତାଙ୍କୁ ଶୁଣାଇବା ଭଳି ଉଚ୍ଚରେ ଡାକ ପକାଇଲେ, "ହେ ବନ୍ଧୁ ! ହେ ରସସିନ୍ଧୁ ! ହେ ପୃଥିବୀ ଭୂଷଣୀ ! ରହ, ରହ ! ବନ୍ଧ୍ୟାମାନେ ଚନ୍ଦ୍ରକୁ ତୋ ମୁଖ ସଙ୍ଗେ ତୁଳନା ନିକଟରେ ଓଜନ କରନ୍ତେ, ତୋର ମୁଖ ଚନ୍ଦ୍ରକୁ ଲଘୁ କରିଦେଲା, ତେଣୁ ସେ ଉପରକୁ ଉଠିଗଲା । ( ତୋର ମୁଖଶୋଭା ଚନ୍ଦ୍ରର ଗର୍ବକୁ ବଳୁଅଛି )।"

୧୭ଶ ପଦ—"ଯେଉଁ ପଦ୍ମରୁ ବ୍ରହ୍ମା ଜାତ ହେଲେ, ସେହି ପଦ୍ମକୁ ତୁ ପାଦରେ ଦଳୁଅଛୁ । [ ପଦ୍ମ ଶୋଭାଠାରୁ ତୋ ପାଦର ଶୋଭା ବେଶି ]। ତୁ କଟୀରେ ପିନ୍ଧିଥିବା ଶାଢ଼ୀର ଧଡ଼ିରେ ସିଂହକୁ ବନ୍ଧାଇଥାଉ । ( ତୋ କଟୀ ସିଂହ କଟୀ ଠାରୁ ସରୁ )। ତୁ ସିଂହକୁ ବନ୍ଧାଇ ଥିବାରୁ ମହାବୀର ଅଟୁ,—ତେଣୁ ଶତ୍ରୁକୁ ନିଜେ ସଂହାର ନ କରି ତାହାର ପ୍ରାଣକୁ ମୋ ହାତରେ ଦେବାକୁ ମନ କଳାଇଛୁ । ତୁ ନିଜେ ସଂହାର କରିବାକୁ ଇଚ୍ଛା କରିଥିଲେ କେବେଠୁ ଶତ୍ରୁ ସଂହାର କରି ସାରନ୍ତୁଣି, ମାତ୍ର ମୋ ହାତରେ ମରାଇବାକୁ ମନ କରିଥିବାରୁ ଏ ପର୍ଯ୍ୟନ୍ତ ରଖିଅଛୁ ।'

୧୮ଶ ପଦ—ରାମ ଏହା କହି କହି ଯାଉଥାନ୍ତେ, ଜଟାୟୁ ପକ୍ଷୀ ସେ ଶବ୍ଦ ଶୁଣି ଚେତନା ପାଇ ଉଠିଲା ଏବଂ ଉଚ୍ଚ ସ୍ୱରରେ ସମ୍ବାଦ ଦେଇ କହିଲା, "ହେ ରାମ ! କୋଦଣ୍ଡ ଧାରଣ ! ରାବଣ ସୀତାଙ୍କୁ ନେଇ ଲଙ୍କାକୁ ଚାଲିଗଲା ।"

ନବାଦେ ମୁଁ ଲାଗିଲି ଏଡାଙ୍ଗ ମୋତେ ହାଣି ।
ବସାଇ ପୁଷ୍ପକେ ଘେନି ଗଲା ସୀମାମଣି ।
ବସା ମଧ୍ୟରୁ ଲକ୍ଷେ ତୀ ।
ବନ୍ଧୀ କରି କାଲେ ଯଥା ଲବ୍ଧକେ କପନ୍ତ ।୩୯।
ବଳେ କର କ୍ଷିଣେ ଦକ୍ଷିଣ ଭୂମେ ଗ୍ରଣେ ।
ବଂଶକର ପ୍ରାଣ କ୍ଷୀଣ କର ତୀକ୍ଷ୍ଣବାଣେ ।
ବୋଲି ବିସର୍ଜିଲା ଜୀବ ।
ବିହାୟସେ ରହ ଦିବ୍ୟରୂପେ କଲା ସ୍ତବ ।୪୦।
ବିମଳ ହୋଇ ଲଭିଲା ସେ ପରମ ଗତି ।
ବହ୍ନି ଯୋଗ କଲେ ଶବ ସ୍ୱୟଂ ରଘୁପତି ।
ବାସବରେ କନ୍ଦ୍ୟ ଯେହୁ ।
ବିପ୍ର ପୋଷ୍ୟପୃଜ ପ୍ରାୟ ପ୍ରେତକ୍ରିୟା ବହୁ ।୪୧।

---

୪୦ଶ ପଦ— ଦକ୍ଷିଣ—ପ୍ରବଣ । ବିହାୟସେ—ଆକାଶରେ । ଦିବ୍ୟରୂପେ —ଦେବତା ରୂପରେ ।

---

୩୯ଶ ପଦ—"ସେ ସୀତାଙ୍କୁ ନେବାର ଦେଖି ମୁଁ ତା ସହିତ ଯୁଦ୍ଧ କରି ତା ରଥ ଭାଙ୍ଗି ଦେଲି । ସେ ରାବଣ ମୋ ଡେଣା ହାଣି ଦେଇ ଭୂମିରେ ପକାଇ ଦେଇ ପୁଷ୍ପକ ବିମାନରେ ସୀତାଙ୍କୁ ବସାଇ ଘେନିଗଲା । ଯେପରି ବ୍ୟାଧମାନେ ବସା ମଧ୍ୟରୁ କପୋତୀ ପକ୍ଷୀକୁ ଜାଲରେ ବନ୍ଧୀ କରି ନିଅନ୍ତି, ସେହିପରି ରାବଣ ମୋ ଦେହ ଉପରୁ ସୀତାଙ୍କୁ ରଥରେ ବାନ୍ଧିକରି ନେଇଗଲା ।"

୪୦ଶ ପଦ—"ଆପଣ ତ କ୍ଷତ୍ରିୟ କୁଳରେ ପ୍ରବୀଣ ଅଟନ୍ତି । ଏବେ ଦକ୍ଷିଣ ଦିଗକୁ ବଳେ କରି ( ଲଙ୍କାକୁ ଯାଇ ) ତୀକ୍ଷ୍ଣ ବାଣରେ ରାବଣର ପ୍ରାଣକୁ ବିନାଶ କରନ୍ତୁ ।" ଏହା କହି ଜଟାୟୁ ପ୍ରାଣ ଛାଡ଼ିଲା । ଦିବ୍ୟରୂପ ଧରି ଆକାଶରେ ରହି ସ୍ତୁତି କଲା ।

୪୧ଶ ପଦ—ସେ ଜଟାୟୁ ଏହି ପୁଣ୍ୟଦାର୍ଯ୍ୟ କରି ପରମ ଗତି ଲଭିଲା । ନିଜେ ରଘୁପତି ସେ ମୃତ ଦେହକୁ ଅଗ୍ନି ସଂଯୋଗ କଲେ । ଯେଉଁ ରାମଚନ୍ଦ୍ର ଇନ୍ଦ୍ରର ପୂଜ୍ୟ ଅଟନ୍ତି, ସେ ପାଳିତ ବ୍ରାହ୍ମଣପୁତ୍ର ପରି ପ୍ରେତକର୍ମ କଲେ । ( ହିନ୍ଦୁମାନେ ମୃତ୍ୟୁପରେ ପ୍ରେତକ୍ରିୟା କରିବା ପାଇଁ ବ୍ରାହ୍ମଣ ପୁତ୍ରମାନଙ୍କୁ ପୋଷି ରଖିଥାନ୍ତି ) ।

ବହଳ ସ୍ରାବେ କଳିନ୍ଦପର୍ବତୁଁ କାଳିନ୍ଦୀ ।
ବକ୍ଷସ୍ଥଳେ ଗଡ଼େ ଅଶ୍ରୁ ଗଲେ କାନ୍ଦ କାନ୍ଦ ।
ବୟାଳିଶ ପଦେ ଛନ୍ଦ ।
ବିରଚନ ବୀରବର ଶାନ୍ତ ରାମଚନ୍ଦ୍ର ।୪୨।

---

## ପଞ୍ଚବିଂଶ ଛାନ୍ଦ

### ରାଗ ମଙ୍ଗଳବସନ୍ତ

### ମୃଗବର ବାଣୀ

ବନେ ଘନେ ରଘୁମଣି । ବିପଥ ପଥ ନ ମଣି ।
ଘନପୂର୍ଣ୍ଣ ଅନୁସରଣ । ବେଣ ଲକ୍ଷଣ ଯେ ।୧।
ଚଞ୍ଚଳ ମନ ଚକିତ । ବଚନ ଭଣେ ।
ବିଚ୍ଛେଦ ହେଲୁ ଲକ୍ଷିତେ । ବୈଦେହୀ ସୀତେ ଯେ ।୨।

---

୪୨ଶ ପଦ—କାଳିନ୍ଦୀ—ଯମୁନା ନଦୀ

---

## ଷଡ଼ବିଂଶ ଛାନ୍ଦ

୧ମ ପଦ—ଘନ—ନିବିଡ଼ । ବିପଥ—ଅବାଟ । ଘନ—ଜଳ ଅର୍ଥାତ୍ ନୈତବ ଜଳ । ଲକ୍ଷଣ—ଚକ୍ଷୁ ।

---

୪୨ଶ ପଦ— କଳିନ୍ଦ ପର୍ବତରୁ ଯମୁନା ନଦୀ ବାହାରିବାପରି ରାମଙ୍କ ଛାତିରେ ଲୁହ ବହି ପଡ଼େ । ସେ ଏହିପରି କାନ୍ଦି କାନ୍ଦି ସେଠାରୁ ଗଲେ । ଏ ଛାନ୍ଦକୁ ବୀରବର ଉପେନ୍ଦ୍ର ବୀରବର ରାମଚନ୍ଦ୍ରଙ୍କୁ ଭକ୍ତି କରି ବୟାଳିଶ ପଦରେ ରଚନା କଲେ ।

---

## ଷଡ଼ବିଂଶ ଛାନ୍ଦ

୧ମ ପଦ—ରାମଚନ୍ଦ୍ରଙ୍କର ଦୁଇ ଆଖି ସର୍ବଦା ଲୋତକ ପୂର୍ଣ୍ଣ ହୋଇ ଥିବାରୁ, ସେ ନିବିଡ଼ କାନନରେ ବାଟ ଅବାଟ ଜାଣି ନ ପାରି ବୁଲୁଥାନ୍ତି ।

୨ୟ ପଦ—ସୀତାଙ୍କ ବିଚ୍ଛେଦ ହେତୁ, ତାଙ୍କ ମନ ବିଶେଷ ଭାବରେ ଚଞ୍ଚଳ ହୋଇଅଛି । ତେଣୁ ସେ ଉଚ୍ଚ ସ୍ୱରରେ କହିଲେ, "ଗୋ ବୈଦେହି ! ଗୋ ସୀତେ ! ତୁ ଲେଶ ମାତ୍ର ଦୁଃଖିତ ନ ହୋଇ ମୋ ନିକଟରୁ ଅନ୍ତର ହୋଇଗଲୁ ।"

ଘନଦ ତମାଳ ତମ । ଯାଲେ ନୋହେ ତାରତମ ।
ଚକ୍ରେ ଯାଇ ହେଲେ ତମ । ଖଣ୍ଡ ଉଭ୍ରମ ଏ ।୩।
ବାୟୁବାହନ ଚମରୀ । ଉଦଗ୍ରେ ଗର୍ଭକ ସୁମରି ।
ଏଦୁର ସେହୁ ସଭାଶେ । ଏହୁ ପ୍ରକାଶେ କ ।୪।
ବସିବେ ଉଚ୍ଚ ସମାନେ । ଦେଖିରେ ଏଥୁତ ମାନେ ।
ଏଥି ସିଦ୍ଧିକି ଗଣିଛୁ । ବୁଦ୍ଧି କଷିଛୁ ଯେ ।୫।
ବସାଇଲ ଚନ୍ଦନେ । ବ୍ୟାଳ ପାଇଲା ଜୀବନେ ।
ବସାଇ ଚନ୍ଦ୍ରରେ ଶଶ । କଲା ପ୍ରଶଂସା ଏ ।୬।

---

୩ୟ ପଦ—ଘନଦ—ମେଘ । ତମ—ଅନ୍ଧକାର । ତାରତମ୍ୟ—ପ୍ରଭେଦ ତମ—ସ୍ୱଚ୍ଛ ।

୪ର୍ଥ ପଦ—ଉଦଗ୍ରୀ—ଇଚ୍ଛା । ଗର୍ଭ—କେଶ ମଧ୍ୟସ୍ଥ । ବାୟୁବାହନ ଚମରୀ—ମୃଗର ପୁଚ୍ଛ ।

୬ଷ୍ଠ ପଦ—ବ୍ୟାଳ—ସର୍ପ ।

---

୩ୟ ପଦ—"ମେଘ, ତମାଳ ବୃକ୍ଷ, ଅନ୍ଧକାର, ଏମାନେ ତୋ କେଶ ସହିତ ଦେଦୀପ୍ୟମାନ ନୁହନ୍ତି । ସ୍ୱଚ୍ଛ କେଶ ସହିତ ସମାନ ବୋଲି ମନେ କଲ, ମାତ୍ର ସମାନ ନ ହେବାରୁ ଭଗବାନଙ୍କ ଦ୍ୱାରା ସୁଦର୍ଶନ ଚକ୍ରରେ ଖଣ୍ଡିତ ହେଲା ।"

୪ର୍ଥ ପଦ—"ଏପରି ଯେ ସର୍ବୋତ୍କୃଷ୍ଟ କେଶ—ତାକୁ 'ବାୟୁବାହନ' ଚମରୀ ମୃଗର ପୁଚ୍ଛରେ ତାହା ମଧ୍ୟଭାଗରେ ରଖିବାକୁ ମନ କରିବାରୁ ସେଥିପାଇଁ ବିଧାତା ଏ ଯତ୍ନେତ ସାଧିଲେ କି ?"

୫ମ ପଦ—"ନୀଚଲୋକମାନେ ମର୍ଯ୍ୟାଦାରେ ବଡ଼ଲୋକଙ୍କ ସମାନରେ ତାଳେ ସ୍ଥାନ ପାଇବେ, ବିଧାତା ଏହୁ ସିଦ୍ଧାନ୍ତ କରି ଏପରି ବୁଦ୍ଧି କଲେ କି ?" (ଚମରୀ ମୃଗର ପୁଚ୍ଛ ରୂପ ନୀଚ ଲୋକ କେଶ ରୂପ ବଡ଼ ଲୋକଙ୍କ ସଙ୍ଗରେ ଏକାଠି ସ୍ଥାନ ପାଇ ନ ପାରନ୍ତ—ସେଥିପାଇଁ ବିଧାତା ଏ ବିରହ କଲେ କି ] ?"

୬ଷ୍ଠ ପଦ—"ବିଧାତା ଚନ୍ଦନ ବୃକ୍ଷରେ ସର୍ପଙ୍କୁ ବସାଇ ନିନ୍ଦା ପାଇଅଛି, ଚନ୍ଦ୍ର କୋଳରେ ଶଶକୁ ବସାଇ ଅପ୍ରଶଂସ୍ୟ ହୋଇଅଛି । (ସେଥିପାଇଁ ଅଧିକ ନିନ୍ଦା ପାଇବା ଭୟରେ ତୋ କେଶ ସହିତ ଚମରୀ ପୁଚ୍ଛକୁ ସ୍ଥାନ ନ ଦେଇ, ପାଇଁ ଏହା ହେଲା କି ) ?"

ଉପଭୋଗ କାଳ ଉଦ୍ୟମ । କାନ୍ତ କଲି ବନଗାମୀ ।
ବାଞ୍ଛିଲେ ଅକର୍ମବନ୍ତ । ନିଷ୍ଫଳବନ୍ତ ଏ । ୭ ।
ସ୍ୱପନେ କରି ବିଳାସ । ବଢ଼ାଇଥିଲି ଉଲ୍ଲାସ ।
ବିଧ୍ୱଂସ ଯଥା ସ୍ୱପନ । ଭୃଙ୍ଗି କମ୍ପନ ଯେ । ୮ ।
ହୋଇଛ ଅତି ଗୁଣୀକ । ବନିତାଗଣେ ମାଣିକ୍ୟ ।
ଦେଖୁଁ ଦେଖି ସନ୍ନିଧି । ବସୁଁ ସନ୍ନିଧି ଯେ । ୯ ।
ବାହୁରେ କରି ବନ୍ଧନ । ବୋଲୁଥାଇ ଏହା ଧନ ।
ବାଧି ନ ପାରେ ଯାତନା । ବଡ଼ ଉନ୍ନତା ମୁଁ । ୧୦ ।
କଣା ହେଲି ତେଜୁଁ ଦଣ୍ଡେ । ଅଭର୍ତ୍ତି ହେଲି କି ଦଣ୍ଡେ ।
ବାହୁଡ଼ି ଆଉ ପାଇବି । ବୋଧ ହୋଇବ କି । ୧୧ ।

---

୭ମ ପଦ—"ଯୌବନ କାଳ ଭୋଗ କରିବାର ସମୟ,—ଏଣୁ ଉଦ୍ୟମ କରି ପ୍ରିୟାକୁ ସଙ୍ଗତରେ ବନକୁ ଆଣିଲି । କିନ୍ତୁ ଅକର୍ମା ଲୋକ ଯାହା ବାଞ୍ଛା କରେ, ତାହା ନିଷ୍ଫଳ ହୁଏ (ସେହିପରି ମୋର ଏ ଉଦ୍ୟମ ନିଷ୍ଫଳ ହେଲା )।"

୮ମ ପଦ—"ବନରେ ପ୍ରିୟା ସହିତ ବିହାର କରି ଆନନ୍ଦ ବର୍ଦ୍ଧନ କରୁଥିଲି,—ତାହା ଏବେ ସ୍ୱପ୍ନ ପ୍ରାୟ ନାଶ ହୋଇଗଲା ( ନିଦ୍ରା ଭଙ୍ଗରେ ସ୍ୱପ୍ନ କଥା ନାଶ ଗଲା ପ୍ରାୟ ମୋର ଏ ଆନନ୍ଦ ନାଶ ଗଲା )।" ଏହା କହିବା ସାଙ୍ଗେ ସାଙ୍ଗେ ତାଙ୍କର ଦେହ ଥରହର ଧାରେ ବେଶି କମ୍ପିବାକୁ ଲାଗିଲା ।

୯ମ ପଦ—"ହେ ପ୍ରିୟେ ! ତୁ ଅତି ଗୁଣବତୀ ହୋଇଛୁ, ପୁଣି ବନିତାମାନଙ୍କ ମଧ୍ୟରେ ମାଣିକ୍ୟ ପ୍ରାୟ ଅଛୁ । ତୁ ବେଳକୁ ବେଳ ବେଶି ସ୍ନେହ ପ୍ରକାଶ କରି ଆସି ମୋ ପାଖରେ ବସୁଥିଲୁ ।"

୧୦ମ ପଦ—"ମୁଁ ତୋତେ ବାହୁ ଦ୍ୱାରା ଆଲିଙ୍ଗନ କରି କହେ, "ହେ ଧନ ! ତୋ ଯୋଗୁଁ ମୋର କିଛି ଦୁଃଖ ନାହିଁ, ମୁଁ ବଡ଼ ମହତ୍ ହୋଇଛି ।" ( ମାଣିକ୍ୟ ବାହୁରେ ବାନ୍ଧିଲେ ଲୋକକୁ ଦୁଃଖ ବାଧେ ନାହିଁ—ସେ ଉନ୍ନତ ହୋଇ ଥାଏ )।

୧୧ଶ ପଦ—"ମୁଁ ମୃଗ ଲୋଭରେ କଣା ହୋଇ ଦଣ୍ଡେମାତ୍ର ସମୟ ଛାଡ଼ି ଯାଇ ମୋ ଧନ ହରାଇ ଏବେ ଏପରି ଦଣ୍ଡ ଭୋଗ କରୁଅଛି । ଆଉ କଣ ସତେ ମୋର ଧନକୁ ଫେରି ପାଇ ମୁଁ ସ୍ଥିର ଚିତ୍ତ ହେବି ?"

ବିବାଦ ହେଉଛୁ ଉର । ବସିଥିଲ କେ ତସ୍କର ।
ବିଦୂର ମୋର ହେବାକୁ । ବେଗେ ନେବାକୁ ସେ ।୧୨।
ବିଚିତ୍ର ଥିଲ ସେ ବନ । ବିମ୍ବ ଚନ୍ଦ୍ର ଚୁମ୍ବନ ।
ବାଳାରୁଣ ପାନ ସୁଧା । ବଡ଼ ବିଶୁଦ୍ଧା ଯେ ।୧୩।
ବିଚିତ୍ର ଏବେ ସ୍ତବନ । ବଞ୍ଚଇ ଦୂର ଜୀବନ ।
ବିନା ପିଚ୍ଛିଳା ନୟନ । ବ୍ୟକ୍ତ ଅୟନ ଏ ।୧୪।
ବପୁ ନ ମରୁଁ ମୋହଇ । ବେଳ ପ୍ରଭାତୁଁ ବୁଡ଼ଇ ।
ବିଶେଷେ ଅନ୍ଧାର ଦିଶେ । ବ୍ୟୋମାଦି ଦିଶେ ଯେ ।୧୫।
ବୀର ଯେ ଶ୍ରୀରଘୁବର । ବିଦେହ ହୋଏ ତା ଡର ।
ବିଭେଦିବ ଫୁଲଶର । ବଜ୍ରଦେହର ଯେ ।୧୬।

---

୧୨ଶ ପଦ—"ମୋ ସ୍ୱତ୍ୱ ବିବାଦ ହେଉଛି । ଚୋର ପଣ କରି ବସିଥିଲ ? ମୁଁ ଅନ୍ତର ହେବା ମାତ୍ରେ, ତତ୍କ୍ଷଣାତ୍ ମୋ ଧନକୁ ଚୋରାଇ ନେଇଗଲ ?"

୧୩ଶ ପଦ—"ସେ ଦଣ୍ଡକାରଣ୍ୟ ଆଶ୍ଚର୍ଯ୍ୟ ଜନକ ଥିଲା । କାରଣ ସେ ବନରେ ମୁଁ ଏକାବେଳକେ ତୋର ମୁଖ ରୂପ ଚନ୍ଦ୍ରମଣ୍ଡଳକୁ ଏବଂ ଅଧର ରୂପ ବାଳସୂର୍ଯ୍ୟ ମଣ୍ଡଳକୁ ଅତି ବିଶୁଦ୍ଧ ଅମୃତ ପାନ କରୁଥିଲି ।"

୧୪ଶ ପଦ—"ଏବେ ମଧ୍ୟ ମୁଁ ଜାଣୁଛି, ବିଚିତ୍ର ରକମର ଘଟନା ହେଉଅଛି । କାରଣ ମୋ ପ୍ରାଣ ଅନ୍ତର ହେଲା, ଅଥଚ ମୁଁ ବଞ୍ଚି ରହୁଅଛି । ମୋର ଚକ୍ଷୁ ପିଚ୍ଛିଳାଶୂନ୍ୟ ହେଲା, ତଥାପି ବାଟ ମୋତେ ଦେଖା ଯାଉଅଛି ।" [ ତୁ ମୋର ପ୍ରାଣ ଓ ନେତ୍ରର ପିଚ୍ଛିଳା ] ।

୧୫ଶ ପଦ—"ପୁଣି ଆଶ୍ଚର୍ଯ୍ୟ କଥା ଯେ, ମରଣ ନ ହେଉଣୁଁ ଏ ଦେହ ମୋହି ଯାଏ । ସନ୍ଧ୍ୟା ହେଲେ ଦିନ ବେଳ ବୁଡ଼େ, ମାତ୍ର ମୋର ସକାଳେ ବେଳ ବୁଡ଼ି ଯାଉଅଛି । ଆକାଶ ଏବଂ ଦିଗମାନେ ବିଶେଷରେ ଅନ୍ଧକାର ଦେଖା ଯାଉଅଛନ୍ତି ।"

୧୬ଶ ପଦ—ଯେଉଁ ରାମଚନ୍ଦ୍ର ବୀରମାନଙ୍କ ମଧ୍ୟରେ ଶ୍ରେଷ୍ଠ, ତାହାଙ୍କର ମଧ୍ୟ କନ୍ଦର୍ପଠାରେ ଭୟ ଜାତ ହେଉଅଛି, କାରଣ ଫୁଲଶର ତାଙ୍କର ଦେହକୁ ଭେଦ କରିବ । [ ବଜ୍ରସମ ତାଙ୍କ କଠିନ ଦେହରେ କୋମଳ ଫୁଲଶର ମଧ୍ୟ ଭେଦ କରିବ, ଏ ମଧ୍ୟ ଆଶ୍ଚର୍ଯ୍ୟ ଘଟନା ] ।

ବଜ୍ର ଘାତ ସ୍ମରଣେହେଁ । ବାଜିବ ଅସ୍ଥି ହୃଦୟେ ।
ବୁଦ୍ଧି ଅଉ ନ ଦିଶିଲେ । ବୁଝି ବସିଲେ ଯେ । ୧୭।
ବୋଲି ଏମନ୍ତ ଶୁଭିଲା । କବନ୍ଧ କୁଟେ ଲୋଭିଲା ।
ବାହୁ ଯୋଜନ ପ୍ରମାଣ । କଲା ନିର୍ମାଣ ତା । ୧୮ ।
ବଢ଼ାଇ ଜୀବ ଭୁଞ୍ଜିତ । କୁକ୍ଷିରେ ତୁଣ୍ଡ ସଜ୍ଜିତ ।
ବିକଟମୂର୍ତ୍ତି କବନ୍ଧ । ବାନ୍ଧିଲା ବନ୍ଧ ସେ । ୧୯ ।
ବୋଲନ୍ତି ଭ୍ରାତେ ରାଘବ । ବାହୁ ହେଲା କି ଲାଘବ ?
ବାଟରେ ଏକ କମଠ । ବାହୁଛି ମଠ ଏ । ୨୦ ।
ବଦନ ଗୁପ୍ତ ହୋଇଛି । ବନାଶି ଭକ୍ଷିବା ଇଚ୍ଛି ।
ବିପାକଧର୍ମରେ ରୋଧ । ବ୍ୟଙ୍ଗ ନିରୋଧ ଏ । ୨୧ ।

---

୧୭ଶ ପଦ—"ହୋଇଲ ସ୍ମରଣ କରିବା ମାତ୍ରକେ ତାହା ଅସ୍ଥି ସ୍ଥଳରେ ବଜ୍ର ପ୍ରାୟ ଭେଦ କରିବ। ଏ କଥା ଚିନ୍ତା କରିବାକୁ ମୋତେ ଆଉ କିଛି ବୁଦ୍ଧି ଦିଶୁ ନାହିଁ।"

୧୮ଶ ପଦ—ରାମଚନ୍ଦ୍ର, ଏହା କହିବାର ଶୁଣିପାରି କବନ୍ଧ ତାଙ୍କୁ ବାହୁରେ ବନ୍ଧନ କରିବାକୁ ଲୋଭ ପ୍ରକାଶ କରି ଚାରି ପ୍ରହରକୁ ତାହାର ବାହୁଦ୍ୱୟକୁ ଯୋଜନେ ପର୍ଯ୍ୟନ୍ତ ବଢ଼ାଇ ଦେଲା।

୧୯ଶ ପଦ—ସେ ରାକ୍ଷସ ଯୋଜନପ୍ରମାଣ ବାହୁଦ୍ୱୟକୁ ବଢ଼ାଇ ଜୀବମାନଙ୍କୁ ଆଣି ଭୋଜନ କରେ। ତାହାର ଉଦରରେ ମୁଖ ବର୍ତ୍ତମାନ। ଏହିପରି ବିକରାଳ 'କବନ୍ଧ' ଶିରହୀନ ରାକ୍ଷସ ରାମଲକ୍ଷ୍ମଣଙ୍କୁ ଧରି ବନ୍ଧନ କଲା।

୨୦ଶ ପଦ—କବନ୍ଧ ବନ୍ଧନରେ ପଡ଼ି ରାମ ଲକ୍ଷ୍ମଣଙ୍କୁ କହିଲେ, "ଆମ୍ଭର ବାହୁବଳ କ୍ଷୀଣ ହୋଇ ଗଲାଣି କି ? ଦେଖ, ବାଟରେ ଗୋଟାଏ କଇଁଛ ଆମର ପ୍ରତିବନ୍ଧକ ହେଉଅଛି।"

୨୧ଶ ପଦ - "ଏହାର ମୁଖ ଅଦୃଶ୍ୟ ହୋଇଅଛି; ମାତ୍ର ଆମ୍ଭଙ୍କୁ ଭକ୍ଷିବା ଇଚ୍ଛାରେ ମୁଖ ପ୍ରକାଶିତ କରୁଅଛି [ କଇଁଛ ମୁହଁ ଲୁଚାଇ ଥାଏ, ଖାଇବାକୁ ଦରକାର ପଡ଼ିଲେ ମୁହଁ ବାହାର କରେ ]। ତେଣୁ ମୁଁ ବୁଝୁଛି, ଧର୍ମବିପାକ ବେଳେ 'ବ୍ୟଙ୍ଗ' ଅଙ୍ଗହୀନ କବନ୍ଧ ବାଟ ରୋଧ କରୁଅଛି। ( ଅଥବା-ଧର୍ମ ପଡ଼ିଲା ବେଳେ ବେଙ୍ଗ ମଧ୍ୟ ବାଟ ପାଡ଼େ )।"

ବିକୋଷ କୃପାଣ କରେ । ବିଘାତ କଲେ ତା କରେ ।
ବେଶ୍ୟାତେମ ଦିବ୍ୟ ରୂପ ସ୍ଥିତ । ବାଣୀ କଥିତ ସେ ।୨୨।
ବକ୍ତ୍ରମାଳୀ ଲଙ୍କପତି । ବିହିବୁ ଭଳି ବିପତ୍ତି ।
ବସୁମତୀ ସ୍ଥିରତାକୁ । ବିନାଶ ତାକୁ ଯେ ।୨୩।
ବିବୁଧ ସୃଜନ ଯେଣି ତ । ବପୁରେ ଜନେ ଜନିତ ।
ବିଷ୍ଣୁ ମା ତୁମେ ଦମ୍ପତି । ବ୍ରହ୍ମାଣ୍ଡପତି ହେ ।୨୪।
ବିଗ୍ରହାନୁଗ୍ରହେ ସରି । ବଶିଷ୍ଠ ଗତି ପ୍ରସରି ।
ବିତୃଷ୍ଣ୍ୟ ବନ୍ଧ୍ୟ ବହନେ । ବଢେ ଗହନେ ସେ ।୨୫।
ବିକଳ ଶତ୍ରୁ ଶ୍ରୀରାମ । ବିଶ୍ୱଲୋଚନାଭିରାମ ।
ବିଗ୍ରହ କ୍ଷୁଧାରେ ଥରେ । ବନ୍ଧୁ ପଥରେ ଯେ ।୨୬।

---

୨୪ଶ ପଦ—ଦମ୍ପତି—ସ୍ତ୍ରୀ ଓ ପୁରୁଷ । ବିବୁଧ—ଦେବତା । ମା—ଲକ୍ଷ୍ମୀ ।

---

୨୨ଶ ପଦ—ଏହା ଶୁଣି ଲକ୍ଷ୍ମଣ ନିଜ ହସ୍ତରେ ଖଡ୍ଗକୁ ଖାପରୁ ବାହାର କରି ବିରାଧର ହସ୍ତରେ ପ୍ରହାର କଲେ । ହାତ କଟି ଯିବାରୁ ସେ ଏକ ଦେବତା ରୂପ ଧାରଣ କରି ଆକାଶକୁ ଉଠିଯାଇ ସେଠାରେ ରହି ସୀତାଙ୍କ ବାଣୀ କହିଲା;—

୨୩ଶ ପଦ—"ଦଶମୁଖ ରାବଣ ତୁମ୍ଭର ବିରହ ଦୁଃଖକୁ ବିଧାନ କରିଅଛି । ତୁମ୍ଭେ ତାକୁ ବିନାଶ କରି ପୃଥ୍ବୀକୁ ସ୍ଥିର କର ।"

୨୪ଶ ପଦ—"ହେ ବ୍ରହ୍ମାଣ୍ଡର ପାଳନକର୍ତ୍ତା ! ତୁମ୍ଭେ ସ୍ତ୍ରୀ ପୁରୁଷ ରୂପରେ ଲକ୍ଷ୍ମୀ ଓ ନାରାୟଣ ଅଟ । ଦେବତାମାନଙ୍କ ସକାଶେ ରାକ୍ଷସର ବିନାଶ ପାଇଁ ନର ଦେହରେ ଜନ୍ମ ହୋଇଅଛ ।"

୨୫ଶ ପଦ—"ତୁମ୍ଭେ ଶତ୍ରୁ ଓ ମିତ୍ରଙ୍କଠାରେ ସମାନ ବ୍ୟବହାର କର । ତୁମ୍ଭଠାରୁ ମୋକ୍ଷଗତି ପ୍ରାପ୍ତ ହୁଏ । [ଶତ୍ରୁ ଓ ମିତ୍ର ଉଭୟଙ୍କୁ ମୋକ୍ଷଗତି ଦିଅ] ।" ଏହା କହି ବିରାଧ ଶୀଘ୍ର ଅଦୃଶ୍ୟ ହୋଇଗଲା । ରାମ ଲକ୍ଷ୍ମଣ ଦୁହେଁ ବନମଧ୍ୟରେ ବଢେ ଚଳେ ।

୨୬ଶ ପଦ—ସଂସାରସ୍ଥ ପ୍ରାଣୀମାନଙ୍କ ନୟନର ଆନନ୍ଦ ପ୍ରଦାନକାରୀ ଶ୍ରୀରାମ ବିକଳ ମନରେ ପଥ ଚାଲି ଚାଲି କ୍ଷୁଧାରେ ତାଙ୍କ ଦେହ ଥରିଲା ।

ବେଦେ ସ୍ତୁତି ଯାରେ ଶ୍ରୁତି । ବତ୍ସା ଧେନୁସ୍ତନ ଶ୍ରୁତି ।
ବଲ୍ଲବେ କ୍ଷୀର ମାଗନ୍ତି । ବିପ୍ର ଇଙ୍ଗିତ ସେ । ୨୭ ।
ବୋଲନ୍ତେ ହୋଇ ବିରକ୍ତ । ବିଦୁହଁ ନ ପୟଃ ରକ୍ତ ।
ବିନୟ ବ୍ରଜ ସରବ । ବିନା ଗରବ ସେ ।
ବଲ୍ଲବେ କ୍ଷୀର ଦାନକୁ । ବିପ୍ର ତୋଷିଲା ମନକୁ ।
ବିପୁଳ ତୋଷ ଚିତ୍ତରେ । ବରଦ ଡାକେ ସେ । ୨୯ ।
ବାଞ୍ଛା ତୋ ଦେବୁଁ କୁମର । ବର ଏ କେଉଁ ଅମର ।
ବର୍ତ୍ତିବୁ ହୋଇ ତୁ ନନ୍ଦ । ବନ୍ଧୁ ଆନନ୍ଦ ଯେ । ୩୦ ।

---

୨୭ଶ ପଦ—ଶ୍ରୁତି—ବେଦ । ବତ୍ସା—ବାଛୁରୀ । ଧେନୁସ୍ତନ—ଗାଈମାନଙ୍କ ସ୍ତନ । ଶ୍ରୁତି—ଶୁଣି । ବଲ୍ଲବେ—ଗୋପାଳମାନଙ୍କୁ । କ୍ଷୀର—ଦୁଧ ।

୨୮ଶ ପଦ—ବିଦୁହଁ—ବିଶେଷରୂପେ ଦୋହନ କର । ପୟ—ଦୁଧ ।

୨୯ଶ ପଦ—ବଲ୍ଲବେ—ଗୋପାଳକୁ ।

---

୨୭ ଓ ୨୮ଶ ପଦ—ଯେଉଁ ରାମଚନ୍ଦ୍ରଙ୍କୁ ବେଦ ସ୍ତୁତି କରେ, ସେହି ସର୍ବଶ୍ରେଷ୍ଠ ପୁରୁଷ ଗାଈ ବାଛୁରୀଙ୍କ ସ୍ୱର ଶୁଣି ସେଠାକୁ ଯାଇ ଗୋପାଳଙ୍କୁ କ୍ଷୀର ମାଗିଲେ । ଗୋପାଳମାନେ କ୍ଷୀର ନ ଦେଇ ପରିହାସ କରିବାରୁ ରାମଚନ୍ଦ୍ର ବିରକ୍ତ ହୋଇ କହିଲେ "ତୁମ୍ଭେ ଦୁଧ ନ ଦୁହଁ ରକ୍ତକୁ ଦୋହନ କର ।" ଏହା କହିବାକ୍ଷଣି ଗୋପାଳମାନଙ୍କର ଦୁହୁଁଥିବା କ୍ଷୀର ରକ୍ତ ହୋଇଯିବାରୁ, ସେମାନେ ଦର୍ପହୀନ ହୋଇ ବିନୟୀ ହେଲେ । ରାମଚନ୍ଦ୍ର ଆଜ୍ଞା ଦେଲେ,—'ରକ୍ତ ନ ଦୁହଁ' ରକ୍ତ ଦୋହନ ନ କରି କ୍ଷୀର ଦୁହଁ ।

୨୯ଶ ପଦ—ତାଙ୍କ ମଧ୍ୟରୁ ଗୋଟିଏ ଗୋପାଳ କ୍ଷୀର ଦାନ କରି ରାମଚନ୍ଦ୍ରଙ୍କ ମନକୁ ତୋଷ କଲା । ରାମଚନ୍ଦ୍ର କ୍ଷୁଧାଯୁକ୍ତ ହୋଇଥିଲେ ମଧ୍ୟ କ୍ଷୀର ପାନ ଯୋଗେ ସନ୍ତୁଷ୍ଟ ହେବାରୁ ସେ ଗୋପାଳକୁ ବର ପ୍ରଦାନ କଲେ ।

୩୦ଶ ପଦ—ଅନ୍ତର୍ଯାମୀ ହେବାରୁ ସେ ଗୋପାଳର ମନ କଥା ଜାଣି ପାରି କହିଲେ, "ତୁମର ଏହି ଇଚ୍ଛା ଯେ, ଏ କେଉଁ ଦେବତା ଆସିଛନ୍ତି, ମୋତେ ପୁତ୍ରଦାନ ରୂପ ବର ଦେବେ । ତୁମେ ପରଜନ୍ମରେ ନନ୍ଦ ନାମ ବହି ଆନନ୍ଦରେ ରହିବ ।"

| | | |
|---|---|---|
| ବାରେ କ୍ଷୀରଦାନେ ଜୀବ | ବୋଧିଲୁ ଏ ଶୁଝାଯିବ | |
| ବଢ଼ିବୁଁ ସୁତ ଭାବରେ | ବ୍ରଜ ନଗରେ ଯେ | ୩୧ |
| ବାମା ଯଶୋଦା ବୋଲାଇ | ବାଳଖେଳରେ ଭୁଲାଇ | |
| ବନମାଳୀ କୃଷ୍ଣ ହରି | ବୋଲି ବହୁରି ଯେ | ୩୨ |
| ବଳଭଦ୍ର ଅବରଜ | ବୋଲାଇବ ହେ ବରଜ | |
| ବୁଝ ନା ଅଜ ଦ୍ଵାପରେ | ବିଦ୍ୟ ଦ୍ଵାପରେ ଏ | ୩୩ |
| ବାସ ସେ ସ୍ଥାନେ କରିଣ | ବାସରେ ସୂର୍ଯ୍ୟବଂଶଜ | |
| ବନେ ଦକ୍ଷିଣ ମୁଖରେ | ବିହାର ଖରେ ସେ | ୩୪ |
| ବିପିନ ଅଛି ଫୁଲକା | ବକଚ ନବମାଳିକା | |
| ବଳସେ ଅଳିପାଳିକା | ବାଣ ମେଳକା କି | ୩୫ |

୩୩ଶ ପଦ—ବରଜ—ଗୋପାଳ । ଅବରଜ—ସାନଭାଇ । ଦ୍ଵାପରେ—ସନ୍ଦେହରେ, ଦ୍ଵାପର ଯୁଗରେ ।

୩୫ଶ ପଦ—ବିପିନ—ବନ । ନବମାଳିକା—ନଅଳୀଫୁଲ । ବକଚ—ପ୍ରସ୍ଫୁଟିତ । ଅଳିପାଳିକା—ଭ୍ରମରଶ୍ରେଣୀ ।

---

୩୧ଶ ପଦ—"ଥରେ କ୍ଷୀର ଦେଇ ଅମ୍ଭ ପ୍ରାଣ ରଖିଲ । ଏହି ସୁକୃତ ଫଳରୁ ଗୋପପୁରରେ ତୁମ୍ଭ ଘରେ ଅମ୍ଭେ ପୁତ୍ର ରୂପରେ ବଢ଼ିବୁଁ—ସେତେବେଳେ ଏ ଉପକାର ଶୁଝାଯିବ ।"

୩୨ଶ ପଦ—"ତୁମ୍ଭ ଗୃହିଣୀ ଯଶୋଦା ବୋଲାଇ ଅମ୍ଭଙ୍କୁ ବାଲ୍ୟକ୍ରୀଡ଼ାରେ ଭୁଲାଇବ । ପୁଣି ଅମ୍ଭଙ୍କୁ ସେ ବନମାଳୀ, କୃଷ୍ଣ, ହରି, ବୋଲି ଡାକି ଆନନ୍ଦରେ କାଳ ହରଣ କରିବ ।"

୩୩ଶ ପଦ—"ହେ ଗୋପାଳ ! ଅମ୍ଭର ଏ ସାନଭାଇ ଲକ୍ଷ୍ମଣ ବଳଭଦ୍ର ବୋଲାଇବ । ତୁମ୍ଭେ ଆଜ ସଂଶୟ କର ନାହିଁ । ଏହା ଦ୍ଵାପର ଯୁଗରେ ଘଟିବ ।

୩୪ଶ ପଦ—ରାମ ଲକ୍ଷ୍ମଣ ସେ ସ୍ଥାନରେ ସେ ଦିବସ ବାସ କଲେ । ପର ଦିବସ ଦକ୍ଷିଣ ମୁଖରେ ବନ ମଧ୍ୟରେ ଶୀଘ୍ର ଗମନ କଲେ ।

୩୫ଶ ପଦ—ସେ ବନରେ ବିଶେଷ ରୂପେ ଶୋଭା ପାଉଥିବା ପ୍ରସ୍ଫୁଟିତ ନଅଳୀ ଫୁଲରେ ଭ୍ରମରଶ୍ରେଣୀ ଝଙ୍କାର କରୁଥାନ୍ତି । ତାହା ଦେଖି ରାମଚନ୍ଦ୍ର ଭାବିଲେ, ଏ କନ୍ଦର୍ପର ଶର ସମୂହ କି ?"

କୁସୁମ ବିଶିଖ ଗୁଣେ । ବଳାଇ ଷଟ୍ପଦ କି ଗୁଣେ ?
ଚାହୁଁ ଅତସୀ ପ୍ରମାଣ । କିଏ କମାଣ କି ? ।୩୬।
ବସାଇ ମରନ୍ଦ ତନୁ । ବନେ ଚମକିତ ତନୁ ।
ବକ୍ଷଶ୍ରୀମଣି ହା ସୀତା । ବଚଳେ ଖସିତା ସେ ।୩୭।
ବୃଷା ଶରଭଙ୍ଗାଳୟେ । ବସିଥିଲେ କଲେ ଲୟେ ।
କଷ୍ଟୁ ଅମ୍ଭ କଷ୍ଟ ଭଙ୍ଗି । ଷଟପଦଭାଗୀ ସେ ।୩୮।
ବନ୍ଦୀ ଜଗତଜନନୀ । ବିମଳ କମଳାନନୀ ।
ଗୋପ୍ୟ ରହିଲେ ଅନ୍ତରେ । ବଜେ ସତ୍ୱରେ ସେ ।୩୯।

---

୩୬ଶ ପଦ—କୁସୁମବିଶିଖ—କନ୍ଦର୍ପ । କମାଣ—ଧନୁ ।
୩୭ଶ ପଦ—ବସାଇ—ବିଷଯୁକ୍ତ କରି ।
୩୮ଶ ପଦ—ବୃଷା—ଇନ୍ଦ୍ର ।
୩୯ଶ ପଦ—ଶରାସନ-ଧର—ଧନୁର୍ବାଣଧାରୀ ।

---

୩୬ଶ ପଦ—'କନ୍ଦର୍ପ କେଉଁ ଗୁଣରେ ଅତସୀ ପୁଷ୍ପ ରୂପ ପ୍ରଧାନ ଧନୁରେ ଭ୍ରମର ରୂପ ଗୁଣ ଚଢ଼ାଇ ଅଛି ? (କନ୍ଦର୍ପ ଅର୍ଦ୍ଧ ଚନ୍ଦ୍ରାକାର ଅତସୀ ଫୁଲ ଧନୁରେ ଭ୍ରମର ଶ୍ରେଣୀ ରୂପ ଗୁଣ ଚଢ଼ାଇ କିଅଳୀ ଫୁଲ ଶର ବାନ୍ଧୁଛି କି ? ) ଅଥବା—କନ୍ଦର୍ପ କି ଅବଗୁଣ ହେତୁ କିଅଳୀ ରୂପ ଫୁଲରେ ଭ୍ରମର ରୂପ ଗୁଣ ଯୋଗ କରିଅଛି ? ( କିନା ଗୁଣରେ କି ସେ ଫୁଲ ବିରହୀଙ୍କ ହୃଦୟ ଭେଦ କରିବ ) । ଅତସୀ ଫୁଲକୁ ଦେଖି ମନେ କଲେ, 'ଏ କନ୍ଦର୍ପର ଧନୁ କି ?'

୩୭ଶ ପଦ—ଏହି ସମୟରେ ଫୁଲ ଝୁଣ୍ଡ ରାମଚନ୍ଦ୍ରଙ୍କ ଦେହରେ ପଡ଼ିବାରୁ ସେ ଭାବିଲେ, 'ମକରନ୍ଦ ରୂପ ବିଷରେ ବିଷ ଯୁକ୍ତ କରି କନ୍ଦର୍ପ ଏ ଫୁଲ ଶରକୁ ମୋତେ ମାରିଲା କି ?' ଏହା ଭାବି ସେହି ବନରେ ତାଙ୍କ ଦେହ ଥରି ଉଠିଲା । ସେତେବେଳେ ସେ କହି ଉଠିଲେ, "ହେ ପ୍ରିୟାମଣି ! ହେ ସୀତା ! ( ତୋ ସକାଶେ ଏନା ମୋର ଏ ଦୁଃଖ ) ।"

୩୮ଶ ପଦ—ଇନ୍ଦ୍ର ସେ ସମୟରେ ଶରଭଙ୍ଗ ଋଷିଙ୍କ ଆଶ୍ରମରେ ବସି ଥିଲେ । ସେ ଚିନ୍ତା କଲେ,—କଷ୍ଟ ଆମ କଷ୍ଟ ଦୂର କରିବାପାଇଁ ରାମ ରୂପରେ ଏ ବିପଦର ଭାଗୀ ହୋଇଅଛନ୍ତି ସିନା !

୩୯ଶ ପଦ—ନିର୍ମଳ ପଦ୍ମମୁଖୀ ଜଗତଜନନୀ ସୀତାରୂପେ ବନ୍ଦୀ ହୋଇ ଅଛନ୍ତି । ଏହା ଭାବି ଇନ୍ଦ୍ର ଗୁପ୍ତ ହୋଇ ରହିଲେ । ରାମ ଶୀଘ୍ର ସେଠାରେ ବିଜେ କଲେ ।

ବାଣ ଶରାସନଧର । ବେନି ମୁନି ସନ୍ନିଧିର ।
ବିବୁଧାଳୟକୁ ଗଲେ । ବନ୍ଦି ନିଗମେ ସେ । ୪୦ ।
ବହୁ ସୁକୃତ ଶବରୀ । ବୃକ୍ଷଣ ଦିବା ଶର୍ବରୀ ।
ବୃକ୍ଷେ ରସାଳ ଅସ୍ୱାଦୁ । ବାଛିଲ ସ୍ୱାଦୁ ସେ । ୪୧ ।
ବିଜୟ ରାମ କରିବେ । ବିଭୁକ୍ତେ ମୋତେ ତାରିବେ ।
ବିଲୋକି ସନ୍ତାପ ଚ୍ୟୁତ । ବଢ଼ାଇ ଚୂତ ସେ । ୪୨ ।
ବିଶ୍ୱବ୍ୟାପୀ ତା ଭାବରେ । ବିଭୋଗୀ ହେଲେ ଜବରେ ।
ବିଦ୍ୟା ଭବତ୍ରାହୀ ପଦ । ବେଗେ ଅସ୍ୱାଦ ସେ । ୪୩ ।

---

୪୦ଶ ପଦ—ବିବୁଧାଳୟ—ସ୍ୱର୍ଗ । ବନ୍ଦି ନିଗମେ—ବେଦବାକ୍ୟରେ ସ୍ତୁତି କରି ।

୪୧ଶ ପଦ—ଦିବା ଶର୍ବରୀ— ଦିନ ରାତି ।

୪୨ଶ ପଦ—ଅସ୍ୱାଦୁ—ଚାଖିବା ସ୍ୱାଦ । ରସାଳ—ଅମ୍ବ । ବିଭୁକ୍ତେ—ବିଶେଷ ରୂପରେ ବା ସନ୍ତୋଷରେ ଭୋଜନ କରି । ଚୂତ—ଅମ୍ବ । ଚ୍ୟୁତ—ଦୂର ।

---

୪୦ଶ ପଦ—ଶରଭଙ୍ଗ ମୁନି କାଣ୍ଡ କୋଦଣ୍ଡଧାରୀ ରାମ, ଲକ୍ଷ୍ମଣ ଦୁହିଁଙ୍କୁ ନିଜ ଆଶ୍ରମରେ ଦେଖି ବେଦବାକ୍ୟରେ ସ୍ତୁତି କରି ସ୍ୱର୍ଗକୁ ଗମନ କଲେ ।

୪୧ଶ ପଦ—ଅତି ପୁଣ୍ୟବତୀ ଶବରୀ ଦିନ ରାତି ବୁଲି ବୁଲି ପାଚିଲା ଅମ୍ବ ସବୁ ଚାଖି ତନ୍ମଧ୍ୟରୁ ସ୍ୱାଦୁ ଅମ୍ବକୁ ବାଛି ରଖିଥିଲା ।

୪୨ଶ ପଦ—'ରାମଚନ୍ଦ୍ର ଏଠାକୁ ବିଜେ କରିବେ ଏବଂ ଏ ସୁସ୍ୱାଦୁ ପାଚିଲା ଆମ୍ବକୁ ଭୋଜନ କରି ମୋତେ ଏ ଜନ୍ମରୁ ଉଦ୍ଧାର କରିବେ'—ଏହା ଭାବି ସେ ଅମ୍ବ ଚାଖି ରଖି ଥାଏ । ରାମଚନ୍ଦ୍ର ସେଠାକୁ ଯିବାରୁ ସେ ତାଙ୍କୁ ଦେଖି ଦୁଃଖ ଦୂର କଲା ଓ ଚାଖି ରଖିଥିବା ସ୍ୱାଦୁ ଆମ୍ବ ଭୋଜନ ପାଇଁ ରାମଙ୍କ ହାତକୁ ବଢ଼ାଇ ଦେଲା ।

୪୩ଶ ପଦ—ଚରାଚରବ୍ୟାପୀ ରାମଚନ୍ଦ୍ର ଶବରୀର ଭକ୍ତି ଭାବରେ ବଶ ହୋଇ ଶୀଘ୍ର ସେ ଅମ୍ବ ଭକ୍ଷଣ କଲେ । ଭବତ୍ରାହୀ ଏହି ନାମ ବିଦ୍ୟମାନ ଥିବାରୁ ସେ ଅତି ଶୀଘ୍ର ଉତ୍ତର ପାଦ ଦେଲେ ( ଅର୍ଥାତ୍ 'ଭବତ୍ରାହୀ' ଏହି ନାମକୁ ସାର୍ଥକ କଲେ ) ।

ବିଦନ୍ତମୁଦ୍ରା ରସାଳ । ବିଯୋଗ କଲେ କଙ୍କାଳ ।
ବନଜାକ୍ଷ ଛଡ଼ପର । ବସୁଧାଉପର ଯେ ।୪୪।
ଦରିଦ୍ର ଏ ଅଶନରେ । ନ ରୋଚି ମୋ ଭକ୍ଷଣରେ ।
ବୋଲି ଶୁଣି ପ୍ରସନ୍ନରେ । ରହ୍ୟମାନଠର ସେ ।୪୫।
ବ୍ୟାଖ୍ୟାନ ଶବରୀ କରେ । ବସନ୍ତ ଋଷ୍ୟମୂକରେ ।
ବନ୍ଧୁ ସୁଗ୍ରୀବ କୋଟରେ । ବାଳିର ଡରେ ଯେ ।୪୬।
ବିକର ଏ ଦଶା ସେ । ବିବାଦ କରି ଦଶାସ୍ୟ ।
ବନ୍ଧୋସ୍ତ୍ରୀଙ୍କୁ ଦେବ ଆଣି । ଜାଣିବ ଅଣି ସେ ।୪୭।
ବାହୁଡ଼ା କହୁ ଭବଛ । ସେମାନେ ଲେ ନଭଗତ ।
ତାହାର ସେହୁ ଆଦେଶେ । ବନପ୍ରଦେଶେ ସେ ।୪୮।

---

୪୪ଶ ପଦ—କଙ୍କାଳ ବନଜାକ୍ଷ—ବୃହତ୍ ନେତ୍ରପଦ୍ମ । ବିଦନ୍ତ-ମୁଦ୍ରା—ଦନ୍ତଚିହ୍ନ ରହିତ ।

୪୫ଶ ପଦ—ଅଶନ—ଭୋଜନ ।

---

୪୪ଶ ପଦ—ବୃହତ୍ ପଦ୍ମନେତ୍ର ରାମଚନ୍ଦ୍ର ଦନ୍ତଚିହ୍ନ ନ ଥିବା ତାହାର ଅସ୍ଥି ଟୋକିକୁ ପୃଥିବୀ ଉପରେ ଥୋଇ ଦେଲେ ।

୪୫ଶ ପଦ—'ଏ ଅସ୍ଥିରେ ଦନ୍ତ ଚିହ୍ନ ନାହିଁ, ତେଣୁ ଏ ମୋର ଭକ୍ଷଣର ଉପଯୁକ୍ତ ନୁହେଁ'—ଏହା କହି ରାମଚନ୍ଦ୍ର ପ୍ରସନ୍ନ ଚିତ୍ତରେ ସେ ଶବରୀକୁ ଚାହିଁ ରହିଲେ ।

୪୬ଶ ପଦ—ରାମଙ୍କ ଚାହିଁବା ଭଙ୍ଗୀରୁ ଜାଣି ପାରି ଶବରୀ କହିଲା, "କିଷ୍କିନ୍ଧ୍ୟାରାଜ ବାଳିର ଭୟରେ ସୁଗ୍ରୀବ ଋଷ୍ୟମୂକ ପର୍ବତ ଗୁହାରେ ବାସ କରୁଅଛି ।"

୪୭ଶ ପଦ—"ସେ ସୁଗ୍ରୀବ ତୁମର ଏ ଅବସ୍ଥାରେ ବନ୍ଧୁ ହେବ । ସେ ତାହାର ବୀରତ୍ୱ ପ୍ରକାଶ କରି ରାବଣ ସଙ୍ଗେ ବିବାଦ ଲଗାଇ ତୁମ୍ଭ ସ୍ତ୍ରୀକୁ ଆଣି ଦେବ ।"

୪୮ଶ ପଦ—ସେ କେତେ ଭକ୍ତିର ସହିତ ଏ ବାର୍ତ୍ତା କହି ଦେବ ବିମାନରେ ଆରୋହଣ କରି ଆକାଶମାର୍ଗରେ ଗମନ କଲା । ଶବରୀର କଥା ଅନୁସାରେ ରାମ ଲକ୍ଷ୍ମଣ ଅରଣ୍ୟ ମଧ୍ୟରେ ଚାଲି ଚାଲିଲେ ।

ତାଟେ ପମ୍ପା ସାରସର । ବିସ୍ଵଜିତ ସାରସର ।
ବିସ୍ଵଜିତ ସାରସର । ବୃଷାର ସର ସେ ।୪୯।
ବିଧୁରେ ହୀନ ଭ୍ରମର । ବିଳସୁଛନ୍ତି ଭ୍ରମର ।
ବିଳାସ ଯହିଁ ଭ୍ରମର । ବାଞ୍ଛେ ଅମର ସେ ।୫୦।
ବାରିରେ ଅଦର ସରେ । ଵିମଳ ଅଦରଣରେ ।
ବିବେକ ହଂସ ମାନସ । ଵଳି ମାନସ ଯେ ।୫୧।
ବିଧ୍ଵଂସ ତାପ ସ୍ମରଣ । ବିଭ୍ର ଅତଳ ସ୍ମରଣ ।
ବିନାଦ୍ର ନୀଳ ସାରସ । ବିହଇ ରସ ସେ ।୫୨।

୪୯ଶତ୍ ପଦ—ସାରସର—ଉତ୍ତମ ସରୋବର । ବିସ୍ଵ—ପକ୍ଷିଗଣ । ସାରସ—ଜଳଚର ପକ୍ଷୀବିଶେଷ । ବିସ୍ଵଜିତ—ପକ୍ଷୀଙ୍କ ଦ୍ଵାରା ମଣ୍ଡିତ, ଶୋଭିତ । ସାରସର—ପଦ୍ମମାନଙ୍କର । ବୃଷା—ଇନ୍ଦ୍ର । ସର—ପୁଷ୍କରିଣୀ ।

୫୦ଶତ୍ ପଦ—ଭ୍ରମର—ଉଣ୍ଡିଆ । ଭ୍ରମର—ଭ୍ରମରଗଣଙ୍କ । ଅମର—ଦେବତା ।

୫୧ଶତ୍ ପଦ—ଅଦର୍ଶ—ଦର୍ପଣ ।

୫୨ଶତ [illegible]—ସ୍ମରଣ—ବୁଡ଼ିବା । ଅତଳସ୍ମରଣ—ଅତିଗଭୀର । ବିନଦ୍ର—ପ୍ରସ୍ଫୁଟିତ । ନୀଳସାରସ—ନୀଳପଦ୍ମ ।

୪୯ଶତ୍ର ପଦ—ସମ ଲକ୍ଷ୍ମଣ ଯାଉଁ ଯାଉଁ କାଟରେ ପମ୍ପା ନାମକ ଏକ ସରୋବର ଦେଖିଲେ । ସେ ସରୋବର ପ [illegible] ମାନଙ୍କରେ ଶୋଭିତ, ପୁଣି ହଂସ ଓ ପକ୍ଷୀମାନଙ୍କ ଦ୍ଵାରା ମଣ୍ଡିତ ହୋଇଅଛି । ସେ ଇନ୍ଦ୍ରଙ୍କ ସରୋବର ଅଟେ ।

୫୦ଶତ୍ର ପଦ—ଦୈବଯୋଗରେ ସେ ସରୋବରରେ ଜଳ ଉଣ୍ଡିଆ ନାହିଁ, ଭ୍ରମରମାନେ ତହିଁରେ ଫୁଟିଥିବା ପଦ୍ମମାନଙ୍କରେ ବିହାର କରୁଅଛନ୍ତି । ସେହି ସରୋବରରେ ଦେବତାମାନେ ସ୍ଵର୍ଗ ଗଙ୍ଗା ଭ୍ରମରେ ଜଳ କ୍ରୀଡ଼ା କରିବାକୁ ବାଞ୍ଛା କରନ୍ତି ।

୫୧ଶତ୍ର ପଦ—ସେ ସରୋବରର ଜଳ ଏପରି ସ୍ଵଚ୍ଛ ଯେ, ତାକୁ ଦେଖିଲେ ନିର୍ମଳ ଦର୍ପଣର ଗୌରବ ରହିବ ନାହିଁ, (ନିର୍ମଳ ଦର୍ପଣଠାରୁ ସେ ଜଳର ନିର୍ମଳତା ଖୁବ ବେଶି) । ହଂସମାନେ ସେ ସରୋବରରେ କ୍ରୀଡ଼ା କରି ମନେ କରନ୍ତି, ମାନ ସରୋବରଠାରୁ ଏହା ଉତ୍କୃଷ୍ଟତର ।

୫୨ଶତ୍ର ପଦ—ସେ ସରୋବରର ଜଳ ଏପରି ଶୀତଳ ଯେ, ତାହା ସ୍ପର୍ଶ କଲେ ଶୀଘ୍ର ତାପ ଦୂର ହେବ, ପୁଣି ସେ ଅତି ଗଭୀର ଅଟେ । ତହିଁରେ ବିକଶିତ ଓ ମଧୁପୂର୍ଣ୍ଣ ନୀଳପଦ୍ମ ଶୋଭା ପାଉଅଛି ।

ବାଞ୍ଛି ତୃଷାର୍ତ୍ତି କମଳ । ବିପିନ ତୀରେ କମଳ ।
ବିକଚେ ଭୃଙ୍ଗ କୁମୁଦ । ଦିଅନ୍ତି କୁମୁଦ ଏ ।୫୩।
ବୁଡ଼ି ଉଠେ ଚକ୍ରଚକ୍ର । ବନ୍ଦେ ଗତି ଯଥା ଚକ୍ର ।
ବିନୋଦରେ ଚକ୍ରବାକୀ । ବିଚକ୍ରବାକୀ ସେ ।୫୪।
ବୀକ୍ଷଣେ ହୋଇ ବିରହୀ । ବୋଲେ ରଘୁବୀର ରହି ।
ବିଷ୍କିର କହ ମଧୁର । ବାଣୀ ବଧୁର ମୋ ।୫୫।
ବାଲା ମୋ ରସସରସୀ । ବିହରେ ମୁଁ ମୀନ ରସି ।
ବିଧୂରେ କେମନ୍ତ ଜୀବ । ବୁଝ ନ ଯିବ ଯେ ।୫୬।

---

୫୩ଶତ ପଦ—କମଳ—ମୃଗ । ବିପିନ—ପୂର୍ଣ୍ଣ । କମଳ - ଜଳ । ଭୃଙ୍ଗ—ଭ୍ରମର । କୁମୁଦ—କଇଁ ଫୁଲ । କୁମୁଦ—ଆନନ୍ଦ ।

୫୪ଶତ ପଦ—ଚକ୍ର—ଚକ୍ରବାକପକ୍ଷୀ । ଚକ୍ର—ସମୂହ । ବିନୋଦରେ—ଆନନ୍ଦରେ । ବିଚକ୍ରବାକ—ଖଣ୍ଡିଅଭ୍ର ।

୫୫ଶତ ପଦ—ବୀକ୍ଷଣେ—ଦେଖିବାରେ । ବିଷ୍କିର—ପକ୍ଷୀର ।

---

୫୩ଶତ ପଦ—ତୃଷାତୁର ମୃଗଯୂଥ ଜଳପାନ କରିବା ଇଚ୍ଛାରେ ସେହି ସରୋବର ତଟଦେଶରେ ବିଶେଷରୂପେ ପୂର୍ଣ୍ଣ ହୋଇଅଛନ୍ତି । ଜଳରେ ଫୁଟିଥିବା କଇଁ ଫୁଲ ଭ୍ରମରମାନଙ୍କୁ ବହୁତ ଆନନ୍ଦ ପ୍ରଦାନ କରୁଅଛି । ( କଇଁ ସବୁ ଫୁଟିଥିବାରୁ ଭ୍ରମରମାନେ ଆନନ୍ଦମନରେ ସେଠାରେ ବିହାର କରୁଅଛନ୍ତି )।

୫୪ଶତ ପଦ—ଚକ୍ରବାକ ପକ୍ଷୀସମୂହ ସେ ସରୋବର ଜଳରେ ବୁଡ଼ି ଉଠନ୍ତି । ସେମାନେ ଚକ୍ରବାକୀ ସହିତ କ୍ରୀଡ଼ାରେ ରତହୋଇ ଜଳରେ ବିହାର କଲାବେଳେ ଏପରିଭାବରେ ଗତି କରୁଅଛନ୍ତି ଯେ, ତାଙ୍କୁ ଦେଖି ଖଣ୍ଡିଅଭ୍ର ଗତି କଲାପରି ବୋଧ ହେଉଅଛି ( ଖରାଦିନେ ପ୍ରାନ୍ତର ସ୍ଥାନରେ ପବନ ଚକ୍ରାକାରରେ ଖୁବ ଜୋରରେ ବୁଲି ବୁଲି ଉପରକୁ ଉଠିଯାଏ, ତାକୁ ଖଣ୍ଡିଅଭ୍ର କହନ୍ତି ]।

୫୫ଶତ ପଦ—ସେ ଚକ୍ରବାକ ଓ ଚକ୍ରବାକୀଙ୍କ କେଳି ଦେଖିବାରୁ ରାମଙ୍କର ବିରହଯନ୍ତ୍ରଣା ବର୍ଦ୍ଧିତ ହୁଅନ୍ତେ, ସେ କହିଲେ, "ହେ ପକ୍ଷି ! ମୋ ମନୋହର କାନ୍ତାକୁ କହ ।"

୫୬ଶତ ପଦ—"ମୋ ଜିହ୍ୱା ରସବତୀ ହେତୁ ଜଳପୂର୍ଣ୍ଣ ସରୋବର ପରି ଅଟେ । ତେଣୁ ମୁଁ ମୀନ ପ୍ରାୟ ବିହାରରେ ରସିଥିଲି । ଜଳ ବିହୁନରେ ମୀନ ନାଶ ହେଲାପରି ତାର ବିଚ୍ଛେଦରେ ମୋ ପ୍ରାଣ କା ନ ଯିବ କପରି ? [ମୁଁ ନିଶ୍ଚୟ ନାଶ ଯିବ ।" ]

ବଢ଼ଶଣରେ ମଦନ । ବର୍ଷୁଅଛି ବେଦନ ।
ବହୁଛି ସେ କେଉଁ ଦେଶ । ବୁଝି ସନ୍ଦେଶ ଏ ।୫୭।
ବଦନ ସଦା କମଳ । ବିକାଶି ଥିଲା ବିମଳ ।
ବିଲୋଳ ନେତ୍ର ଖଞ୍ଜନ । ବସି ରଞ୍ଜନ ସେ ।୫୮।
ବିଲୋକି ମୋ ସୁରପତି । ବିଭୂତି ଥିଲା ପ୍ରାପତି ।
ବିଚ୍ଛେଦୁ ଦୀନ ହୋଇଛି । ବାହୁଡ଼ି ଇଚ୍ଛି ଏ ।୫୯।
ବକ୍ଷୋଜେ ତବ ଦ୍ୱିଗୁଣ । ବହନ୍ତି ଭବ ଯେ ଗୁଣ ।
ବଦ ଅଛି ସୋଦରତା । ବନ୍ଧୁ ବାରତା ତୁ ।୬୦।
ବୋଲି କୋପି ଚକ୍ରବାକ । ବୋଇଲା ଏମନ୍ତ ବାକ ।
ବେନିନାବେ ଦେଇ ପଦ । ବ୍ୟର୍ଥ ସମ୍ପଦ ଏ ।୬୧।

---

*୫୭ଶତ ପଦ—ମଦନ—କନ୍ଦର୍ପ । ବଢ଼ଶ-ଶର—ବଳିଶକଣ୍ଟା ରୂପ ଶରେ ।

*୫୮ଶତ୍ ପଦ—ବଦନ—ମୁଖ । କମଳ—ପଦ୍ମ । ବିଲୋଳ—ଚଞ୍ଚଳ ।

*୫୯ତମ ପଦ—ସୁରପତି—ଇନ୍ଦ୍ର । ବିଭୂତି—ଐଶ୍ୱର୍ଯ୍ୟ ବା ସମ୍ପତ୍ତି ।

*୬୦ତମ ପଦ—ବକ୍ଷୋଜ—ସ୍ତନ ବା କୁଚ । ସୋଦରତା—ବନ୍ଧୁତା ।

---

*୫୭ଶତ୍ ପଦ—"କନ୍ଦର୍ପ ବଳିଶ କଣ୍ଟାରୂପ ଶରରେ ମୋତେ ବିଦ୍ଧ କରିବାକୁ ବର୍ଷୁଅଛି । ମୋ ପ୍ରିୟା କେଉଁ ଦେଶରେ ରହୁଛି; ଏ ବାର୍ତ୍ତା ମୋତେ ବୁଝାଇ କହ ।"

*୫୮ଶତ୍ ପଦ—"ମୋର ପ୍ରିୟାର ମୁଖ ସର୍ବଦା ଫୁଟିଥିବା ପଦ୍ମପ୍ରାୟ ନିର୍ମଳ ଦିଶେ । ତହିଁରେ ଚଞ୍ଚଳ ହେଉଥିବା ନେତ୍ରଯୁଗଳ ଖଞ୍ଜନ ପକ୍ଷୀ ପ୍ରାୟ ଖେଳି କରି ଶୋଭା ପାଉଥିଲା ।"

*୫୯ତମ ପଦ—"ତା ମୁଖ ପଦ୍ମରେ ନେତ୍ର ଖଞ୍ଜନର ଖେଳା ଦେଖି ମୁଁ ଇନ୍ଦ୍ର ସମ୍ପତ୍ତି ପ୍ରାପ୍ତ ହୋଇଥିଲି । ମାତ୍ର ବର୍ତ୍ତମାନ ତାହାର ବିଚ୍ଛେଦରୁ ଦୀନ ଦୁଃଖୀ ହୋଇଅଛି । ସେ ଫେରି ଆସୁ—ମୁଁ ଏହା ଭାବନା କରୁଅଛି ।"

*୬୦ତମ ପଦ—"ମୋ ପ୍ରିୟାର ସ୍ତନଯୁଗଳ ସହିତ ତୁମ୍ଭ ଦୁହିଁଙ୍କର ମିଳନକୁ କବିମାନେ ଉପମା ଦେଇଥାନ୍ତି । ସୁତରାଂ ତା ସହିତ ତୁମ୍ଭର ବନ୍ଧୁତା ଅଛି । ଅତଏବ ମୋ ପ୍ରିୟାର ବାର୍ତ୍ତା କହ ।"

*୬୧ତମ ପଦ—ରାମଚନ୍ଦ୍ର ଏହା କହନ୍ତେ ଚକ୍ରବାକ ପକ୍ଷୀ କୋପ କରି କହିଲା, "ଦୁଇ ନାବରେ ଗୋଡ ଥୋଇଲେ ସମସ୍ତ ସମ୍ପତ୍ତି ବ୍ୟର୍ଥ ହୁଏ । ( ଦୁଇ ନାବରେ ଗୋଡ ଦେଲେ ମଣିଷ ବୁଡ଼ି ମରେ ) ।"

ତନୁ କଷ୍ଟା ସ୍ତ୍ରିୟାହୃତ । ବୁଢ଼ାମରଦା ଶବ୍ଦିତ ।
ବିହଗ ରତ ବିଲୋକ । ବଳକ୍ଷ ଲୋକ ତୁ ।୭୨।
ବୋଲନ୍ତି ବୋଇଲେ ଲକ୍ଷଣ । ବିଚକ୍ଷଣ ସୁଲକ୍ଷଣ ।
ହଂସ ହେଉଛୁ ଇଚ୍ଛାର । ବିହଗ ସାର ତୁ ।୭୩।
ବଶ୍ୟ ତୁ ତପ ହେତୁ ହୁ । ଗୋଲାକ ଲୁଚ୍ଛୁମ୍ପୀ ଭୁହ ।
ବଶିଷ୍ଠାଦି ଏ ଅଜାଣ । ବଡ଼ ସୁଜାଣ ତୁ ।୭୪।
ବିଯୋଗରେ କାମ ଚାଳ । ବିହୁ ଏ ଶାପ ଚଳୁ ଲ ।
ବେନି ସୋଦର ବହନେ । ବନେ ଗହନେ ସେ ।୭୫।
ବ୍ୟାକୁଳରେ ହୋଇ କ୍ଷୀଣୀ । ବକ୍ଷେ ଭପେ ଓଷିଣୀ ।
ବିହୋଗରେ ରତ ସାର । ବଦ୍ୟ ସଂସାର ଏ ।୭୬।

---

୭୨ତମ ପଦ – ବିହଗ—ପକ୍ଷୀ । ବଳକ୍ଷ—ଲଜ୍ୟାଶୂନ୍ୟ ।
୭୪ତମ ପଦ – ବଶ୍ୟାତୁ—ବଶ୍ୟାତ କରୁ ।

---

୭୨ତମ ପଦ— 'ତୁମ୍ଭେ ଶରୀରରେ ଛୋଟ ହୋଇଅଛ, ପୁଣି ସ୍ତ୍ରୀ ଲମ୍ପଟ ଅଟ; [ ତୁଇ ନାକରେ ଗୋଡ ଦେଇଛ ] ତେଣୁ ବୁଢ଼ା ମରଦ ତୁମ୍ଭ ପକ୍ଷରେ କଥିତ ଅଟେ । ପୁଣି ଏତେ ନିର୍ଲଜ ଯେ ପକ୍ଷୀଙ୍କ ରତ କ୍ରୀଡ଼ା ଦେଖୁଅଛ ।"

୭୩ତମ ପଦ—ଚକ୍ରବାକଠାରୁ ଏହା ଶୁଣି ଲକ୍ଷ୍ମଣଚନ୍ଦ୍ର ଓ ପଣ୍ଡିତ ଲକ୍ଷ୍ମଣ ତତ୍କ୍ଷଣାତ୍ କହିଲେ, "ତୁ ଛାର ପକ୍ଷୀ ହୋଇ ମନେ ମନେ ବଡ଼ ହଂସ ବୋଲି ଜଣାଇ ହେଉଛୁ ।"

୭୪ତମ ପଦ—"ତୁ ସାମାନ୍ୟ ପକ୍ଷୀ ମାତ୍ର ପୁଣି ତୁ ଗୃହୀ, ଅଥଚ ତପସ୍ୟାର ଲକ୍ଷଣ କହୁଅଛୁ । ବଶିଷ୍ଠାଦି ଋଷିମାନେ କଣ ବଡ଼ ଅଜ୍ଞ ?—ସେ ଜଟାଜୁଟ ବାନ୍ଧି, ତପସ୍ୟା କରି ମଧ୍ୟ ଗୃହୀ ହୋଇଅଛନ୍ତି । ତୁ ତାଙ୍କଠାରୁ ବଡ଼ ପଣ୍ଡିତ ହେଲୁ !

୭୫ତମ ପଦ—ଆଜିଠାରୁ ବିଚ୍ଛେଦରେ ସମସ୍ତ କଟାଅ ।" ଏହି ଶାପ ଦେଇ ରାମ ଲକ୍ଷ୍ମଣ ଦୁଇ ଭାଇ ତତ୍କ୍ଷଣାତ ସେଠାରୁ ଗହନ ବନ ମଧ୍ୟକୁ ଚାଲି ଗଲେ ।

୭୬ତମ ପଦ—ଶାପ ପାଇବାରୁ ଚକ୍ରବାକୀ ବ୍ୟାକୁଳରେ କ୍ଷୀଣବସ୍ଥା ପ୍ରାପ୍ତ ହୋଇ ନିଜ ବାକ୍ୟକୁ କହିଲା, "ଏ ସଂସାର ଭିତରେ ସମସ୍ତ ଭୋଗ ମଧ୍ୟରେ ରତ ସମ୍ଭୋଗ ଶ୍ରେଷ୍ଠ ବୋଲି କଥିତ ହୋଇଅଛି ।"

ବିପଦ କି ଶିରଚ୍ଛେଦ । ବଡ଼ ବିପଦ ବିଚ୍ଛେଦ ।
ବଂଶ ବଢ଼ିବା ଅର୍ଜନ । ବ୍ୟର୍ଥ ସର୍ଜନ ଏ ।୬୭।
ବିଗୃର ସେ ଶୋଭାଇଲେ । ବିନୟ ରାମେ ହୋଇଲେ ।
ବିଭୋ ଦକ୍ଷିଣ ଗମନ । ବାମ ସୁମନ ହେ ।୬୮।
ବହୁ ମଟୁକ ମୂରତ । ବହୁଲେ କଟୁ ଭାରତୀ ।
ବି-ଜାତି ଚେତେ ମନକେ । ଚେଲେ ବିଚର୍କ ଯେ ।୬୯।
ବଦନ ଦଶ ବିଂଶତି । ବାହୁ ତା ଅଟେ ବସତି ।
ବିମାନେ ଶୋକ କଳିତା । ବରବର୍ଣ୍ଣିତା ଯେ ।୭୦।
ବିଲେକ ଏତେ ମାତର । ବିବେକ କର ଶଙ୍କର ।
ବିଭୁ ଖାପକୁ ସୁଗତ । ବିହୁଁ ଭଗତ ସେ ।୭୧।

---

୬୭ତମ ପଦ—"ଶିରଚ୍ଛେଦ ହେବା କା କି ବିପଦ ? ତା ଅପେକ୍ଷା ବିରହ ବିପଦ ବେଶୀ କଷ୍ଟଦାୟକ । ବଂଶ ବୃଦ୍ଧି ପ୍ରାପ୍ତ ନ ହେଲେ ଆମ୍ଭ ଜୀବନ ବୃଥା ଥିଲା ! [ ସମ୍ଭୋଗ ନ ହେଲେ ବଂଶ ବୃଦ୍ଧି ହେବ ନାହିଁ । ତେଣୁ ଆମ କୁଳ ଏହିଠାରୁ ଲୋପ ପାଇବ ] ।"

୬୮ତମ ପଦ—ସେ ଚକ୍ରବାକ ଓ ଚକ୍ରବାକୀ ଏମନ୍ତ ବିଗୃର କରି ରାମଙ୍କ ପଛରେ ଶୋଭାଇଲେ ଓ ବିନୟ ପ୍ରକାଶ କରି କହିଲେ, "ହେ ବିଭୋ ! ତୁମ୍ଭେ ଦକ୍ଷିଣ ଦିଗକୁ ଗମନ କରିବାରେ ଅଗ୍ରହୀ ହୋଇଅଛ (ଅଥବା—ତୁମ୍ଭେ ଦେବତା ବା ବନ୍ଧୁ ପରି ସମଦର୍ଶୀ ହୋଇଅଛ ) ଅଥଚ ଆମ୍ଭଠାରେ ପ୍ରତିକୂଳ ଆଚରଣ କରୁଅଛ ।"

୬୯ତମ ପଦ—"ତୁମ୍ଭେ ସୁନ୍ଦର ମୂର୍ତ୍ତି ଧାରଣ କରିଅଛ । ଅଥଚ ଏପରି କଟୁ କଥା କହିଲ [ମଟୁରଠାରେ କଟୁ ରହିବା ଅସମ୍ଭବ] । ଆମ୍ଭେ ଛାର ପକ୍ଷୀ ଜାତି—ଆମର ଜ୍ଞାନ ଅଛି କେତେ ? ଅଭିଶାପ ଦେଲାବେଳେ ଏହା ଟିକିଏ ମାତ୍ର ବିଗୃର କଲ ନାହିଁ ?"

୭୦ତମ ପଦ—"ଦଶମୁଖ ବିଂଶବାହୁ ବିଶିଷ୍ଟ କେହି ବିମାନରେ ବସି ଯାଉଥିଲାବେଳେ, ତା ଅଗରେ ଏକ ଶ୍ରେଷ୍ଠ ମହିଳା ବସି ଶୋକ କରୁଥିଲା ।"

୭୧ତମ ପଦ—"ଆମ୍ଭେ ଏତିକି ମାତ୍ର ଦେଖି ଅଛୁଁ,—ତୁମ୍ଭେ ହୃଦୟ ମଧ୍ୟରେ ବିଚାର କର । ଆମ୍ଭଙ୍କୁ ଦେଇଥିବା ଶାପରୁ ମୁକ୍ତ ପାଇବାର ଉପାୟ କହ ।" ଏହା କହି ସେମାନେ ବିଶେଷ ଭକ୍ତିରେ ଭକ୍ତ ହେଲେ ।

ବାସରେ ମାତର ତର । ଉଗ୍ରବସ୍ତେ ଅନ୍ତର
ଦେଖିକୂଳେ ନଦେ ରହ । ବାଟୁ ଫିରନ୍ତୁ ଏ ।
ଭରଦ ସଙ୍ଗ ହେଲେ ବାହୁଡ଼ିଲେ ପକ୍ଷୀ ହେଲେ ।
ବୋଲେ ଉପେନ୍ଦ୍ର ଅସ୍ପଦ । ବାସ୍ତବ ପଦ ଏ ।୨୨।

---

୨୨ତମ ପଦ—ବାସର—ଜନ । ବର—ରକ୍ଷାପାଅ । ଅସ୍ପଦ—ସ୍ଥାନ ।

---

୨୨ତମ ପଦ—ତାଙ୍କର ଭକ୍ତି ଦେଖି ରାମଚନ୍ଦ୍ର ତାଙ୍କୁ ବର ପ୍ରଦାନ କଲେ, "ତୁମ୍ଭେ ଜବସରେ କେବଳ ଏକଣ ହେବ । ସନ୍ଧିରେ ନଦୀର କୂଳ କୂଳରେ ଅନ୍ତର ହୋଇ ରହିବ । ତେଣୁ ବଂଶଚ୍ଛେଦ ଘଟିବ ।" ରାମଚନ୍ଦ୍ର ଏହି ବର ଦେବାରୁ ପକ୍ଷୀଦୁହେଁ ତତ୍‌କ୍ଷଣାତ୍ ଫେରିଗଲେ । ଉପେନ୍ଦ୍ର ବାସ୍ତବପଦର ସ୍ଥାନ ଏହି ଛାନ୍ଦରୁ କହିଲେ । [ ଶେଷ ପଦ ବାସ୍ତବ ପଦ ସହିତ ମିଶିଅଛି ] ।



---

କଟକ ନବଜୀବନପ୍ରେସରେ ଶ୍ରୀ ବନମାଳୀ ମିଶ୍ରଙ୍କ ଦ୍ୱାରା
ମେସିନ୍‌ଯନ୍ତ୍ରେ ମୁଦ୍ରିତ । ୧୯୪୯

